# ଭଞ୍ଜୀୟ ଅଳଙ୍କାର୍ ମାନସ

ଲେଖକ :
**ଡକ୍ଟର ପ୍ରେମାନନ୍ଦ ମହାପାତ୍ର, ଓ.ଇ.ଏସ୍(୧)**
ପ୍ରାଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ-୩

ପ୍ରକାଶକ :
**କାବ୍ୟଲୋକ**
୨୯୭୪,ଗ୍ୟାରେଜ୍ ଛକ,ଲୁଇସ୍ ରୋଡ୍
(କେନାଲ ପାଖ),ଭୁବନେଶ୍ୱର-୨
ନିଜିଗଡ କୁରୁଖି,ହରିରାଜପୁର
ଜଟଣୀ, ପୁରୀ-୭୫୨୦୫୦
ମୋ:୯୪୩୭୨୮୩୯୦୭
ପ୍ରଚ୍ଛଦ :
**ଶଶିକାନ୍ତ ରାଉତ**
ମୁଦ୍ରଣ :
**ଜଗନ୍ନାଥ ଗ୍ରାଫିକ୍ସ,ଭୁବନେଶ୍ୱର-୨୨**
ପ୍ରଥମ ପ୍ରକାଶନ :
ଦୋଳପୂର୍ଣ୍ଣିମା-୨୦୧୫
ମୂଲ୍ୟ: ୨୦୦/-

**BHANJIYA ALANKARA MANASA**
**BY**

**Dr. Premananda Mohapatra, O.E.S (1)**
Reader in Odia, P.G. Deptt.
Ravenshaw University,Cuttack-3

Publisher :
**Kavyaloka**
2974, Garage Chhak, Lewis Road
(Canal Side), Bhubaneswar-2
Nizigarh Kurikhi, Harirajpur
Jatni, Puri-752050
M-9437283907

Cover Design:
**Sashikanta Rout**

Printed at :
**Jagannath Graphics**
Bhubaneswar-22

First Edition :
Dolapurnima- **2015**

**Price : 200/-**

**ISBN 978-93-85316-01-2**

# ମୁଖବନ୍ଧ

ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ଶ୍ରେଷ୍ଠ ପ୍ରତିଭାଧର କବି । ଯେଉଁ ସମୟରେ ଓଡ଼ିଶାରେ କାବ୍ୟଯୁଗର ପ୍ରବାହ ବଳବତ୍ତର ଥିଲା, ସେହି ସମୟରେ ଉପେନ୍ଦ୍ର ଭଞ୍ଜ ବାଣୀ ସାଧନାରେ ଆପଣାକୁ ନିୟୋଜିତ କରିଥିଲେ । ଭଞ୍ଜ ସାହିତ୍ୟ ଓଡ଼ିଆ ସାହିତ୍ୟର ପରମ ସମ୍ପଦ । ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଉପେନ୍ଦ୍ର ସାହିତ୍ୟର ସ୍ଥାନ ଅଦ୍ୱିତୀୟ । ଓଡ଼ିଶାର କାବ୍ୟାମୋଦୀ ବିଜ୍ଞଜନଙ୍କର ସେ ହେଉଛନ୍ତି ପ୍ରିୟ କବି । ଭଞ୍ଜ ସାହିତ୍ୟର ଲୋକପ୍ରିୟତା ବାସ୍ତବିକ ସୁଦୂରପ୍ରସାରୀ ।

ଭଞ୍ଜ ସାହିତ୍ୟ ପ୍ରତି ମୋର ଆଗ୍ରହ ଓ ଆନ୍ତରିକତା ସ୍କୁଲ ଜୀବନରୁ ହିଁ ରହିଆସିଛି । ନୟାଗଡ଼ ବ୍ରଜେନ୍ଦ୍ର ହାଇସ୍କୁଲର ନବମ ଶ୍ରେଣୀର ଛାତ୍ର ଥିଲାବେଳେ ମୁଁ 'ବୈଦେହୀଶ ବିଳାସ' କାବ୍ୟର ଋରୋଟିଯାକ ଖଣ୍ଡ ସଂଗ୍ରହ କରି ପାଠ କରିବାର ସୌଭାଗ୍ୟ ଲାଭ କରିଥିଲି । ଉପେନ୍ଦ୍ର ଭଞ୍ଜ ତ ଥିଲେ ଘୁମୁସର ରାଜବଂଶଜ । ଘୁମୁସର ରାଜଦରବାରର ସାହିତ୍ୟିକ ପରିବେଶ ଉପେନ୍ଦ୍ରଙ୍କୁ ବେଶ ପ୍ରଭାବିତ କରିଥିଲା । କିନ୍ତୁ ତାଙ୍କ ସାହିତ୍ୟ ସାଧନାର କ୍ଷେତ୍ର ଥିଲା ନୟାଗଡ଼ । ଦୈବ ଯୋଗରେ ସେ ଥିଲେ ନୟାଗଡ଼ ରାଜାଙ୍କର ଜାମାତା । ପରେ ହେଲେ ନୟାଗଡ ରାଜ ଦରବାରର ଶ୍ରେଷ୍ଠ କବି । ଉପେନ୍ଦ୍ରଙ୍କ ଯୋଗୁଁ ନୟାଗଡ଼ ରାଜଦରବାର ସାହିତ୍ୟ ଚର୍ଚ୍ଚାର କେନ୍ଦ୍ରସ୍ଥଳ ପାଲଟିଥିଲା ।

ଉପେନ୍ଦ୍ର ଭଞ୍ଜ ଯେଉଁ ମାଳିସାହି ଗ୍ରାମ (ମୃତ୍ୟୁଞ୍ଜୟପୁର ଶାସନ)ରେ ଅବସ୍ଥାନ କରୁଥିଲେ, ସେହି ଗ୍ରାମରେ ମୋର ଜନ୍ମ । ଏହି ଗ୍ରାମଟି ଏକ ଐତିହାସିକ ଗ୍ରାମ । ବୌଦ୍ଧର ରାଜା ରଣଭଞ୍ଜ ନବମ ଶତାବ୍ଦୀରେ ଏହି ଗ୍ରାମକୁ ପ୍ରତିଷ୍ଠା କରିଥିଲେ ଓ ଏଠାରେ ପ୍ରସିଦ୍ଧ ଗଡୀଶ୍ୱର ମହାଦେବଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ପିଲାବେଳୁ ଏହି ଗ୍ରାମରେ ପ୍ରତ୍ୟେକ

ବର୍ଷ ଭଞ୍ଜ ଜୟନ୍ତୀ ଉତ୍ସବ ଦେଖି ଦେଖି ଉପେନ୍ଦ୍ର ଭଞ୍ଜଙ୍କ ପ୍ରତି ମୋର ଗଭୀର ଆଗ୍ରହ ଓ ଶ୍ରଦ୍ଧା ସୃଷ୍ଟି ହୋଇଥିଲା । ଉପେନ୍ଦ୍ର ଭଞ୍ଜ ମୋର ପ୍ରିୟ କବି ।

ଉପେନ୍ଦ୍ରଙ୍କ ପ୍ରତିଭାର ପଟାନ୍ତର ନାହିଁ । ସେ ନବନବ ଉନ୍ମେଷଶାଳିନୀ ପ୍ରଜ୍ଞାର ଅଧିକାରୀ ନିଶ୍ଚୟ । ସେ ଥିଲେ ଶ୍ରେଷ୍ଠ ରୀତି କବି, ରସକବି, ଶବ୍ଦ କବି, ଅର୍ଥକବି ଏବଂ ଆଳଙ୍କାରିକ କବି । ସେ ଥିଲେ ଜୀବନ ଓ ଯୌବନର କବି, ଶୃଙ୍ଗାରୀକବି । ଉପେନ୍ଦ୍ର ଥିଲେ ବହୁ ଶାସ୍ତ୍ରଦର୍ଶୀ ବିଦ୍ୱାନ । ସେ ପାଣ୍ଡିତ୍ୟର ତୁଙ୍ଗିମାକୁ ସ୍ପର୍ଶ କରିଥିଲେ । ତାଙ୍କ ପରି ଆଳଙ୍କାରିକ କବି ନିଶ୍ଚିତ ଭାବରେ ଭାରତରେ ବିରଳ । ମାତ୍ର ଦୁଃଖର କଥା ଏହି ଯେ ଉପେନ୍ଦ୍ର ଭଞ୍ଜ ପ୍ରାନ୍ତୀୟ ଭାଷାରେ ସାହିତ୍ୟ ସର୍ଜନା କରିଥିବାରୁ ଯେତିକି ସମ୍ମାନ ପାଇବାର କଥା, ସେତିକି ସମ୍ମାନ ପାଇପାରି ନାହାନ୍ତି ।

ଉପେନ୍ଦ୍ର ଭଞ୍ଜ ସପ୍ତଦଶ ଶତାବ୍ଦୀରେ ଆବିର୍ଭୂତ ହୋଇଥିଲେ । କିନ୍ତୁ ତାଙ୍କର ସାହିତ୍ୟ ସର୍ବକାଳୀକ ହୋଇପାରିଛି । ଆଜିର ଏକବିଂଶ ଶତାବ୍ଦୀରେ ମଧ୍ୟ ଭଞ୍ଜ ସାହିତ୍ୟ ଚର୍ଚ୍ଚା ଅବ୍ୟାହତ ରହିଛି । ଭଞ୍ଜ ସାହିତ୍ୟର ସବିଶେଷ ଆଲୋଚନା ଆହୁରି ଅପେକ୍ଷା ରଖେ ।

ଅଳଙ୍କାର ପ୍ରୟୋଗ ଦୃଷ୍ଟିରୁ ଉପେନ୍ଦ୍ର ଥିଲେ ବିଚିତ୍ର ପ୍ରତିଭାର ଅଧିକାରୀ । ଉପେନ୍ଦ୍ର ତ ସ୍ୱୟଂ ବିଚିତ୍ର କବିତ୍ୱର କଥା କହିଛନ୍ତି । ଉପେନ୍ଦ୍ରଙ୍କର ସର୍ଜନଶୀଳ ମାନସ କାବ୍ୟରେ ଅଳଙ୍କାର ବିନ୍ୟାସ ପ୍ରତି ବିଶେଷ ଯତ୍ନବାନ ଥିଲା । ଉପେନ୍ଦ୍ର ଆହ୍ୱାନ ଦେଇଛନ୍ତି ।

'ନାନା ଶବ୍ଦରେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଛାନ୍ଦ ବିବେଚନା ।'

ମୁଁ ଉପେନ୍ଦ୍ରଙ୍କର ପ୍ରମୁଖ କାବ୍ୟଗୁଡ଼ିକୁ ଅଧ୍ୟୟନ କରି ଏହି ପୁସ୍ତକଟି ପ୍ରସ୍ତୁତ କରିଅଛି ।

ଏହି ପୁସ୍ତକଟି ପ୍ରକାଶ କରିବାପାଇଁ ବହୁଦିନରୁ ଆଶା ଥିଲା । ଇତି ମଧ୍ୟରେ 'ଉପେନ୍ଦ୍ର ଭଞ୍ଜ ଓ ସାରସ୍ୱତ ପୀଠ : ମାଳିସାହି' ଏବଂ 'କାଳଜୟୀ ପ୍ରତିଭା : କବିସମ୍ରାଟ ଉପେନ୍ଦ୍ର ଭଞ୍ଜ' ଗ୍ରନ୍ଥଦ୍ୱୟ ମୋର ପ୍ରକାଶ ପାଇଛି । ଭଞ୍ଜଙ୍କ ସମ୍ପର୍କିତ ଏହା ହେଉଛି ମୋର ତୃତୀୟ ପୁସ୍ତକ । ଏହି ପୁସ୍ତକଟି ରଚନା କରିବା ଅବସରରେ ଯାହାଙ୍କର କରୁଣା ରାଶି ଝରି ପଡିଛି ସେ ହେଉଛନ୍ତି ମାଳିସାହି ଗ୍ରାମର ବିଜେ ଠାକୁର ଆଶୁତୋଷ ଶିବ ଶ୍ରୀ ଶ୍ରୀ ଗତୀଶ୍ୱର ମହାଦେବ । ସେହିପରି ଉପେନ୍ଦ୍ର ଭଞ୍ଜଙ୍କ ଉପାସ୍ୟ ଠାକୁର ଉଭୟ ଢେଙ୍କେଣା ଓ ଓଡ଼ଗାଁର ଶ୍ରୀ ରଘୁନାଥଜୀଉଙ୍କ ଚରଣ କମଳରେ ପ୍ରଣିପାତ ଜଣାଉଛି ।

ଓଡ଼ିଆ ସାହିତ୍ୟ ପ୍ରତି ଯିଏ ମୋ ମନରେ ପ୍ରବଳ ଆଗ୍ରହ ସୃଷ୍ଟି କରାଇଥିଲେ, ସେ ହେଉଛନ୍ତି ମୋର ନନା ଶ୍ରୀଯୁକ୍ତ ତ୍ରିନାଥ ମହାପାତ୍ର । ସେ ମୋର ପ୍ରେରଣାର ଉତ୍ସ । ମୁଁ ପିଲାବେଳେ ଦେଖିଛି ସେ ଆମ ଘରେ ବହୁ ଗ୍ରନ୍ଥାବଳୀ ଏବଂ କାବ୍ୟଗ୍ରନ୍ଥ କିଣି ସଜ୍ଜିତ

କରି ରଖୁଥିଲେ । ବିଶେଷ କରି ସେ ଆମ ଗାଁରେ ଆୟୋଜିତ ହେଉଥିବା 'ଭଞ୍ଜ ଜୟନ୍ତୀ'ର ସମ୍ପାଦକ ଭାବରେ କାର୍ଯ୍ୟ କରୁଥିଲେ । ମୁଁ ଧନ୍ୟବାଦ ଦେବି ଆମଗାଁର ଗ୍ରାମବାସୀଙ୍କୁ ଯେଉଁମାନେ କି ଭଞ୍ଜସାହିତ୍ୟ ବିଷୟରେ ମୋଠାରୁ ଏବେ ବି ଘଣ୍ଟାଘଣ୍ଟା ଧରି ଶୁଣିବାପାଇଁ ପ୍ରସ୍ତୁତ ହୋଇ ରହନ୍ତି ।

ସର୍ବୋପରି ଏହି ପୁସ୍ତକଟିକୁ ସାକାର କରିବାପାଇଁ ଯେଉଁ ଗୁରୁଜନମାନେ ଆଶିଷ ପ୍ରଦାନ କରିଛନ୍ତି, ଏହି ଅବସରରେ ମୁଁ ସେମାନଙ୍କୁ ଯଥାମାନ୍ୟ ଅର୍ପଣ କରୁଛି । ପୁସ୍ତକଟିର ପ୍ରକାଶନ ଦାୟିତ୍ୱ କାବ୍ୟଲୋକର ସ୍ୱତ୍ୱାଧିକାରୀ ଅଗ୍ରଜକଳ୍ପ ତଥା କବି ଶ୍ରୀଯୁକ୍ତ ଭିକାରୀ ଧଳ ବହନ କରିଥିବାରୁ ତାଙ୍କୁ ସାଧୁବାଦ ଜଣାଉଛି । ମୋର ଶୁଭାକାଂକ୍ଷୀ ବନ୍ଧୁମାନଙ୍କୁ ଏହି ଅବସରରେ ସ୍ମରଣ କରୁଛି ।

ପୁସ୍ତକଟି ବିଜ୍ଞ ଭଞ୍ଜପ୍ରେମୀ ମାନଙ୍କ ଦ୍ୱାରା ଆଦରଲାଭ କରିବ ବୋଲି ଆଶା କରେ ।

*କଟକ, ଦୋଳପୂର୍ଣ୍ଣିମା-୨୦୧୫* — *ପ୍ରେମାନନ୍ଦ ମହାପାତ୍ର*

# ସୂଚୀପତ୍ର



❑❑❑




କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

ମୂର୍ତ୍ତିମନ୍ତ କରି ମୃଦୁଗୀତ ବିରଚଇ
ଏଣୁ କରିଥିବ ଅଳଙ୍କାରଯୁକ୍ତ ହୋଇ ।
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରକୁ ଆନନ୍ଦ କରିବ ହେ ।

# ପ୍ରଥମ ପରିଚ୍ଛେଦ :

## କାବ୍ୟ ଯୁଗର ମହୀୟାନ କବି : ଉପେନ୍ଦ୍ର ଭଞ୍ଜ

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟଯୁଗ ବହୁ ପ୍ରତିଭାଧର କବିମାନଙ୍କର ସାରସ୍ୱତ ସାଧନା ଯୋଗୁଁ ଏକ ଗୌରବୋଜ୍ୱଳ ଅଧ୍ୟାୟ ସୃଷ୍ଟିକରେ । ଉପେନ୍ଦ୍ର ଭଞ୍ଜ ଏହି ଓଡ଼ିଆ କାବ୍ୟଯୁଗର ଅନନ୍ୟ ଓ ଅସାଧାରଣ କାବ୍ୟସ୍ରଷ୍ଟା । ବାଣୀ-ବୀଣା-ବାଦକ କବି ଉପେନ୍ଦ୍ର ଓଡ଼ିଆ ରୀତିଯୁଗର ଶ୍ରେଷ୍ଠ କବି । ସେ କବିଗୁରୁ ଓ ମହାକବି । ରୀତିଯୁଗୀୟ କବିମାନଙ୍କ ମଧ୍ୟରେ ସେ ସର୍ବୋତ୍ତମ, ସର୍ବପ୍ରଧାନ ଓ ଶୀର୍ଷ ସ୍ଥାନୀୟ ଅଟନ୍ତି । ତାଙ୍କର କାବ୍ୟ ସର୍ଜନାର ପଟାନ୍ତର ନାହିଁ । ଅପାର କାବ୍ୟ ସଂସାର ସୃଷ୍ଟିକରି ସେ ସତରେ ପ୍ରଜାପତି ଅସନରେ ଆସୀନ । ଉପେନ୍ଦ୍ର ଥିଲେ ସମର୍ପିତ ପ୍ରାଣ । ସାହିତ୍ୟ ଓ ସଙ୍ଗୀତ ପ୍ରତି ଅତି ପ୍ରଗାଢ଼ ଅନୁରାଗ ରହିଥିବା ଯୋଗୁଁ ସେ ଏଡ଼େ ବିରାଟ କବି ଗୌରବର ଅଧିକାରୀ ହୋଇପାରିଛନ୍ତି, ଯାହା କି ଚିନ୍ତାକଲେ ବିସ୍ମିତ ହେବାକୁ ପଡ଼େ ।

ଅଗ୍ନି ପୁରାଣରେ ଉଲ୍ଲେଖ ଅଛି-

'ନରତ୍ୱଂ ଦୁର୍ଲ୍ଲଭଂ ଲୋକେ ବିଦ୍ୟାତତ୍ର ସୁଦୁର୍ଲ୍ଲଭା
କବିତ୍ୱ ଦୁର୍ଲ୍ଲଭ ତତ୍ର ଶକ୍ତି ସ୍ତତ୍ର ସୁଦୁର୍ଲ୍ଲଭା ।' (୧)

ଅର୍ଥାତ୍ ଏ ଜଗତରେ ନରଜନ୍ମ ଦୁର୍ଲଭ । ନରମାନଙ୍କ ମଧ୍ୟରେ ବିଦ୍ୱାନ ଦୁର୍ଲଭ । ବିଦ୍ୱାନମାନଙ୍କ ମଧ୍ୟରେ କବି ଦୁର୍ଲଭ । କବିମାନଙ୍କ ମଧ୍ୟରେ ପ୍ରତିଭା ଦୁର୍ଲଭ । ଉପେନ୍ଦ୍ର ଥିଲେ ପ୍ରତିଭାଧର କବି ।

ଉପେନ୍ଦ୍ର ଭଞ୍ଜ ରୀତି କବି, ଆଳଙ୍କାରିକ କବି ଓ ଶୃଙ୍ଗାରୀ କବି । ସେ ତ ରସିକ କବି ନିଶ୍ଚୟ । ତଥାପି ତାଙ୍କର ଅସଲ ପରିଚିତି ହେଉଛି ଯେ ସେ ଜୀବନ ଓ ଯୌବନର କବି । କେହି କେହି ସମାଲୋଚକ ତାଙ୍କୁ ଓଡ଼ିଆ ସାହିତ୍ୟର ଶ୍ରୀହର୍ଷ କବି ଭାବରେ

ବର୍ଣ୍ଣନା କରିଛନ୍ତି । କିନ୍ତୁ ଏସବୁର ଉର୍ଦ୍ଧ୍ୱରେ ଉପେନ୍ଦ୍ର । ସେ ହେଉଛନ୍ତି କବିସମ୍ରାଟ । କବି ଉପେନ୍ଦ୍ର ବାଣୀ ଆରାଧନାରେ ନିମଗ୍ନ ରହି ସଂସ୍କୃତ କାବ୍ୟାଦର୍ଶକୁ ଗ୍ରହଣ କରି ସ୍ୱୀୟ ସର୍ଜନା ଶକ୍ତି ବଳରେ ଅମୂଲ୍ୟ କାବ୍ୟରତ୍ନମାନ ସୃଷ୍ଟି କରି ଉତ୍କଳ ଭାରତୀଙ୍କୁ ମଣିମାଣିକ୍ୟରେ ମଣ୍ଡନ କରିଛନ୍ତି । ମନୋମୁଗ୍ଧକର, ରସାଳ ଭଞ୍ଜୀୟ କାବ୍ୟ ଜଗତ ସୃଷ୍ଟି କରି ତାହାକୁ ଆସ୍ୱାଦନ କରିବା ପାଇଁ ସେ କାବ୍ୟାମୋଦୀ, ବିଦଗ୍ଧ, ରସଗ୍ରାହୀ ପାଠକମାନଙ୍କୁ ଦେଇଛନ୍ତି ଦିବ୍ୟ ପ୍ରେରଣା । ତେଣୁ ତ କବି ଉପେନ୍ଦ୍ର କହିଛନ୍ତି-

'ଦେଶେ ଦେଶେ ହେଉ ଖ୍ୟାତ ମୋହୁ ଏ ରସିକ ଚିତ୍ତ
ହରିହର କରନ୍ତୁ ଏମନ୍ତ ଯେ । (୨)

କାବ୍ୟଗୁଡ଼ିକରେ ଚମତ୍କାରିତା ସୃଷ୍ଟି କରି ଏବଂ କାବ୍ୟରେ ବହୁ ପରୀକ୍ଷା ନିରୀକ୍ଷା କରି ଉପେନ୍ଦ୍ର ସମଯୁଗୀୟ୍ ପ୍ରମୁଖ କବି ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତ ସିଂହାର, ଲୋକନାଥ ବିଦ୍ୟାଧର, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ବ୍ରଜନାଥ ବଡ଼ଜେନା, କବିସୂର୍ଯ୍ୟ ବଳଦେବ ରଥ ଓ ଉତ୍କଳଘଣ୍ଟ ଯଦୁମଣି ମହାପାତ୍ର ପ୍ରଭୃତିଙ୍କୁ ଅତିକ୍ରମ କରିଯାଇଛନ୍ତି । ଉତ୍କଳୀୟ ସାରସ୍ୱତ ଜଗତରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଅମ୍ଳାନ ପ୍ରତିଭା ।

ଉପେନ୍ଦ୍ର ଭଞ୍ଜ ଘୁମୁସର ରାଜବଂଶଜ । ଘୁମୁସରାଧିପ ପ୍ରତାପ ଧନଞ୍ଜୟ ଭଞ୍ଜଙ୍କର ସେ ପୌତ୍ର ଏବଂ ତାଙ୍କ ପୁତ୍ର ନରେଶ ନୀଳକଣ୍ଠ ଭଞ୍ଜଙ୍କର ସେ ଜ୍ୟେଷ୍ଠପୁତ୍ର ଥିଲେ । ଉପେନ୍ଦ୍ର ନିଜର ବଂଶ ପରିଚୟ ଦେଇ ଲେଖିଛନ୍ତି-

'ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ । ବରହି କୋଷରୁ ସମ୍ଭବି ।
ମନୁଷ୍ୟ ଏହି ଅଦଭୁତ । ଭଞ୍ଜାନୁଭଞ୍ଜ ନାମ ସତ ।
ବିଶିଷ୍ଟ ବଶିଷ୍ଟ ପାଳକା । ଶ୍ରୀରାଜଦତ୍ତ ରାଜଟୀକା ।
ସେ କୁଳେ ରାଜା ଧନଞ୍ଜୟ । ସମସ୍ତ ଗୁଣର ନିଳୟ ।
ଘୁମୁସର ଅଧିପ ପଣେ । ଲୋକେ ବିଖ୍ୟାତ କବି ଗୁଣେ ।
ତଦ୍‌ବତ ତାହାଙ୍କ ତନୁଜ । ନରେଶ ନୀଳକଣ୍ଠ ଭଞ୍ଜ ।
ତାହାଙ୍କ ଜ୍ୟେଷ୍ଠ ସୁତ ମୁହିଁ । ଉପେନ୍ଦ୍ର ଭଞ୍ଜ ନାମ ବହି । (୩)

ଅନ୍ୟତ୍ର କବି ମଧ୍ୟ ଲେଖିଛନ୍ତି-

'ବରହି ବଂଶେ ଉଦ୍ଭବ ନୃପ ଧନଞ୍ଜୟ
ବିଶିଷ୍ଟେ ଘୁମୁସର ଅଧିପ ଗୁଣାଳୟ ଯେ
ବେନି ଅର୍ଥେ ସେ କବି ଗଣେଶ ବୋଲି ଜାଣ
ବନ୍ଦନ ତଦବତ ତାଙ୍କ ନନ୍ଦନ ପ୍ରମାଣ ଯେ ।
ବସୁଧା ପତି ସେ ନୀଳକଣ୍ଠ ନାମେ ଖ୍ୟାତ
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠ ସୁତ ଯେ । (୪)

ପୁନଶ୍ଚ କବି କହିଛନ୍ତି-

'ନୀଳକଣ୍ଠ ନୃପ ସୁତ ଭାବି ହରିହର
ମାନସ ବଳାଇ କରିବାକୁ ଗୀତସାର । (୫) (ରସଲେଖା-ପ୍ରଥମ ଛାନ୍ଦ)

'ଚିତ୍ରଲେଖା' କାବ୍ୟରେ ଉପେନ୍ଦ୍ର ଲେଖିଛନ୍ତି-

''ହଂସ ବଂଶ ଅବତଂସ ଧନଞ୍ଜୟ
ଭଞ୍ଜ ନୃପତି ଚୂଡ଼ାମଣି
ତାଙ୍କ ସୁତ ନୀଳକଣ୍ଠ ଭଞ୍ଜ ଭୂପ
କୁଳକମଳ ଦିନମଣି ।

ତାହାଙ୍କ ନନ୍ଦନ କବି ସିନ୍ଧୁଚନ୍ଦ୍ର
କହେ ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜ
ମାନସେ ଚିନ୍ତି ରାମଚନ୍ଦ୍ର ।'' (ଚିତ୍ରଲେଖା-ଏକବିଂଶତି ଛାନ୍ଦ)

'ରସପଞ୍ଚକ' ରେ କବି ସ୍ୱୟଂ ବଂଶ ପରିଚୟ ଦେଇ ଲେଖିଛନ୍ତି-

''କଞ୍ଜେଶ ବଂଶ ହୋଇ ପ୍ରକାଶ
କ୍ରମେ ଗୁମୁସରେ ହେଲେ ନରେଶ ।

କୁନ୍ଦେନ୍ଦୁ କୀର୍ତ୍ତିଗଣ ରଣ କାନ୍ତି
ରଣେଶ୍ୱର ରଣଭଞ୍ଜ ନୃପତି ।

କୃଶାନୁତେଜ ତାଙ୍କ ତନୁଜ
କୃତରୁ ପ୍ରାପତ ପ୍ରତାପ ଭଞ୍ଜ ।

କନିଷ୍ଠ ସୁତ ତାଙ୍କ ଭୂଭୁତ
କବି ଗୋପୀନାଥ ନାମ ବିଦିତ ।

କବି ନୃପବର ତାଙ୍କ କୁମର
କବି ଧନଞ୍ଜୟ ନାମ ତାଙ୍କର ।

କାଶ୍ୟପୀକାନ୍ତ ତାହାଙ୍କ ସୁତ
କୃତଜ୍ଞ ନୀଳକଣ୍ଠ ଭଞ୍ଜ ସୁତ ।

କୁମର ଜ୍ୟେଷ୍ଠ ତାଙ୍କର ଶ୍ରେଷ୍ଠ
କବିପଣରେ ଅତି ପରିନିଷ୍ଠ ।'' (ରସପଞ୍ଚକ)

'ରସପଞ୍ଚକ' ଗ୍ରନ୍ଥ ଅନୁସାରେ କବିଙ୍କର ବଂଶଲତା ହେଉଛି-

ରଣଭଞ୍ଜ
|
ପ୍ରତାପଭଞ୍ଜ
|
ଗୋପୀନାଥ ଭଞ୍ଜ
|
ଧନଞ୍ଜୟ ଭଞ୍ଜ
|
ନୀଳକଣ୍ଠ ଭଞ୍ଜ
|
ଉପେନ୍ଦ୍ର ଭଞ୍ଜ

କବି ଉପେନ୍ଦ୍ରଭଞ୍ଜ ପୁରୀର ଭୋଇ ବଂଶର ରାଜା ଦିବ୍ୟସିଂହ ଦେବ ଗଜପତିଙ୍କର ସମସାମୟିକ ଥିଲେ । କବିଙ୍କର ଆଦ୍ୟ ସମୟର ରଚନା 'ରସଲେଖା' କାବ୍ୟରୁ ଏହା ଅବଧାରଣା କରିହୁଏ । ଉପେନ୍ଦ୍ର ଲେଖିଛନ୍ତି-

'ଦିବ୍ୟସିଂହ ଗଜପତି ଅଙ୍କ ସପତ ବିଂଶତି
ଶେଷଦିନେ ଶେଷ ଏହୁ ଗୀତ
ଦେଶେ ଦେଶେ ହେଉ ଖ୍ୟାତ ମୋହୁ ଏ ରସିକ ଚିତ୍ତ
ହରିହର କରନ୍ତୁ ଏମନ୍ତ ଯେ ।' (୬)

ଏଠାରେ ସୂଚନାଯୋଗ୍ୟ ଯେ ଦିବ୍ୟସିଂହ ଦେବଙ୍କ ୨୭ ଅଙ୍କର ଶେଷ ଦିନ ଖ୍ରୀଷ୍ଟାବ୍ଦ ୧୭୧୦ ଭାଦ୍ରମାସ ଶୁକ୍ଳପକ୍ଷ ଏକାଦଶୀ ଭାବେ ନିର୍ଣ୍ଣୀତ ହୋଇଛି । ଜୟପୁରର ମହାରାଜା ବିକ୍ରମଦେବ ବର୍ମା ଯେପରି 'ସାହିତ୍ୟ ସମ୍ରାଟ', ଅନୁରୂପ ଭାବରେ ଉପେନ୍ଦ୍ର ଭଞ୍ଜ କବି ସମ୍ରାଟ ପଦବୀର ଅଧିକାରୀ । କିନ୍ତୁ ଦୁଃଖର କଥା, ଉପେନ୍ଦ୍ରଙ୍କୁ ଓଡ଼ିଆ ସାହିତ୍ୟର 'କବିସମ୍ରାଟ' ସିଂହାସନରେ ଉପବିଷ୍ଟ କରାଯାଇଥିଲେ ସୁଦ୍ଧା ତାଙ୍କ ଜୀବନ କାଳ ନିରୂପଣରେ ଗବେଷକ ତଥା ଭଞ୍ଜ ସାହିତ୍ୟ ବିଶାରଦ ମାନଙ୍କର ମତାମତରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଯେପରି-

କ) ଅନନ୍ତ ପଦ୍ମନାଭ ପଟ୍ଟନାୟକ କହନ୍ତି- ''ଉପେନ୍ଦ୍ର ଭଞ୍ଜ ୧୬୭୦ ଖ୍ରୀଷ୍ଟାବ୍ଦରେ କୁଳାଡ଼ଗଡ଼ରେ ଜନ୍ମଗ୍ରହଣ କରିଥିଲେ । ସେ ୫୦ ବର୍ଷ ବୟସରେ ୧୭୨୦ ସାଲରେ ମାନବ ଲୀଳା ସମ୍ବରଣ କଲେ ।''

ଖ) **ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି** କହନ୍ତି- "ଉପେନ୍ଦ୍ର ସମ୍ଭବତଃ ୧୬୭୦ ଖ୍ରୀଷ୍ଟାବ୍ଦରୁ ୧୭୨୦ ପର୍ଯ୍ୟନ୍ତ ଜୀବିତ ଥିଲେ ।"

ଗ) **ତାରିଣୀ ଚରଣ ରଥ** କହନ୍ତି- "ସମ୍ଭବତଃ ଉପେନ୍ଦ୍ରଭଞ୍ଜ ୧୬୮୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ।"

ଘ) **ପଣ୍ଡିତ ଶ୍ରୀଧର ଶତପଥୀ** କହନ୍ତି- "ରତ୍ନାବତୀଙ୍କ ଗର୍ଭରୁ ପ୍ରଥମ ପୁତ୍ର ରୂପେ ଉପେନ୍ଦ୍ର ୧୫୯୮ ଶକାବ୍ଦ ଅର୍ଥାତ୍ ୧୬୭୪ ଖ୍ରୀଷ୍ଟାବ୍ଦ ମାଘ ଶୁକ୍ଳପଞ୍ଚମୀ ତିଥିରେ ଜନ୍ମଗ୍ରହଣ କରିଥିଲେ ।

(ଙ) **ଡକ୍ଟର ହରେକୃଷ୍ଣ ମହତାବ** କହନ୍ତି- "ଉପେନ୍ଦ୍ରଙ୍କ ଆନୁମାନିକ ସମୟ ୧୬୮୫-୧୭୨୦ ଖ୍ରୀଷ୍ଟାବ୍ଦ ।"

(ଚ) **ଗୌରୀକୁମାର ବ୍ରହ୍ମା** କହନ୍ତି- "ବିଭିନ୍ନ ଯୁକ୍ତିର ବହୁ ଆଲୋଚନା କରି ମୁଁ ଉପଲବ୍ଧି କରିଛି ଯେ ୧୬୭୫/୭୬ ପାଖାପାଖି ଭଞ୍ଜେ ଜନ୍ମଗ୍ରହଣ କରିଥିଲେ । ମୋର ବିଶ୍ୱାସ, ଏହି ଅବ୍ଦ ଅତିବେଶୀ ହେଲେ ଦୁଇବର୍ଷ ଆଗକୁ କିମ୍ବା ଦୁଇ ବର୍ଷ ପଛକୁ ନିଆଯାଇପାରେ ।"

(ଛ) **ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି**- "ତାଙ୍କର ଜୀବନକାଳ ଖ୍ରୀ. ୧୬୮୫-ଖ୍ରୀ. ୧୭୫୦ ମଧ୍ୟରେ ବୋଲି ଧରାଯାଇପାରେ ।"

(ଜ) **ଦୁଃଖୀଶ୍ୟାମ ପଟ୍ଟନାୟକଙ୍କ** ମତରେ- "ମହାକବି ଉପେନ୍ଦ୍ର ଭଞ୍ଜ ଜନ୍ମଗ୍ରହଣ କରିଥିଲେ ଖ୍ରୀ. ୧୬୭୭ ରେ x x x ଏବଂ ପରଲୋକ ହୋଇଥିଲେ ଖ୍ରୀ. ୧୭୫୦ ରେ ।"

(ଝ) **ପ୍ରଫେସର ଡକ୍ଟର କୃଷ୍ଣଚରଣ ସାହୁଙ୍କ** ମତରେ- "ଉପେନ୍ଦ୍ରଙ୍କ ଆନୁମାନିକ ସମୟ ଖ୍ରୀ.୧୬୭୦-ଖ୍ରୀ.୧୭୪୦ ଖ୍ରୀଷ୍ଟାବ୍ଦ ।"

(ଞ) **ଡକ୍ଟର ଦଣ୍ଡପାଣି ବେହେରା** କହନ୍ତି- "ଉପେନ୍ଦ୍ରଭଞ୍ଜ ୧୭୦୩ରେ ଧରାକୋଟ ଠାରେ ଜନ୍ମଲାଭ କରିଥିଲେ । ପଚାଶ ବର୍ଷ ବଞ୍ଚିବା ପରେ ୧୭୫୩ ସାଲରେ ଇହଧାମ ତ୍ୟାଗ କରିଥିଲେ ।

ଉପର୍ଯ୍ୟୁକ୍ତ ମତାମତ ଏବଂ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟର ସୂଚନାରୁ ଜଣାଯାଏ ଯେ ସେ ୧୭୫୦ ସାଲ ପାଖାପାଖି ବଞ୍ଚିଥିଲେ । କାରଣ ନୂତନ ଭାବରେ ସଂଗୃହୀତ ଲାବଣ୍ୟବତୀ ପୋଥିରେ ଏହାର ରଚନା କାଳ ସମ୍ପର୍କରେ ସୂଚନା ଅଛି-

"ଶ୍ରୀ ବୀରକେଶରୀଦେବଙ୍କ ପଞ୍ଚମ ଅଙ୍କେ । ଏ ଗୀତ ହେଲା ପୂର୍ଣ୍ଣ ନିଃଶଙ୍କେ ।
ନୀଳକଣ୍ଠ ଭଞ୍ଜ ଜ୍ୟେଷ୍ଠ ତନୁଜ । ନାମ ମୋହର ଉପଇନ୍ଦ୍ର ଭଞ୍ଜ ।" (୭)

ବୀର କେଶରୀଦେବଙ୍କ ପଞ୍ଚମ ଅଙ୍କ ୧୭୩୯/୪୦ ଖ୍ରୀଷ୍ଟାବ୍ଦରେ ପ୍ରଚଳିତ ଥିଲା । ତେଣୁ 'ଲାବଣ୍ୟବତୀ'ର ରଚନାକାଳ ୧୭୪୦ ଖ୍ରୀଷ୍ଟାବ୍ଦ ରୂପେ ଗ୍ରହଣ କରାଗଲେ ତାଙ୍କର ମୃତ୍ୟୁ ସମୟ ୧୭୫୦ ଖ୍ରୀଷ୍ଟାବ୍ଦ କିମ୍ବା ଏହାର ନିକଟବର୍ତ୍ତୀ ବୋଲି ଧରାଯାଇପାରେ । ପୁନଶ୍ଚ ଉପେନ୍ଦ୍ର ବାର୍ଦ୍ଧକ୍ୟରେ ଉପନୀତ ହୋଇଥିବା ଜଣାଯାଏ । 'ନୀଳାଦ୍ରୀଶ ଚଉତିଶା'ରେ ଉପେନ୍ଦ୍ର ଭଞ୍ଜ ସୂଚାଇଛନ୍ତି-

''କ୍ଷୟ ତ ହେଲାଣି ଏ ପିଣ୍ଡ
କ୍ଷାଳ ଏ ଇଞ୍ଚାଳର ଦଣ୍ଡ
ଖ୍ୟାତି ଏ ଉପେନ୍ଦ୍ରର ଭଞ୍ଜକୁଳ ବେଭାର
କ୍ଷେମ ଚରଣେ ହେଉ ରୁଣ୍ଡ ହେ, ନୀଳାଦ୍ରୀଶ ।'' (୮)

ଏହି ସମସ୍ତ ପ୍ରମାଣଗୁଡ଼ିକରୁ ଏକମତ ହେବାକୁ ପଡ଼େ ଯେ- ଉପେନ୍ଦ୍ରଭଞ୍ଜ ଦୀର୍ଘଜୀବୀ ଥିଲେ ।

ଧନଞ୍ଜୟ ଭଞ୍ଜଙ୍କ ରାଜତ୍ୱକାଳ (ଖ୍ରୀ. ୧୬୩୬- ଖ୍ରୀ. ୧୭୦୧) ମଧ୍ୟରେ ଉପେନ୍ଦ୍ର ଜନ୍ମଗ୍ରହଣ କରିଥିଲେ । ସେ ରତ୍ନାବତୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ ଏବଂ ନଳିନୀ ରଞ୍ଜନ ଓ କୁମୁଦ ଭଞ୍ଜନ ତାଙ୍କର ଦୁଇଗୋଟି ସାନଭାଇ ଥିଲେ । (୯)ସେହି ସମୟରେ ଘୁମୁସର ରାଜଦରବାର ସାହିତ୍ୟ ଚର୍ଚ୍ଚାର ଅନ୍ୟତମ ପ୍ରଧାନ ପୀଠ ଥିଲା । ରାଜକବି ଧନଞ୍ଜୟ ଭଞ୍ଜଙ୍କର ଏକ ସମୃଦ୍ଧ ପଣ୍ଡିତ ସଭା ଥିଲା । ଧନଞ୍ଜୟ ଭଞ୍ଜ ପାଞ୍ଚଗୋଟି କାବ୍ୟ ରଚନା କରିଥିଲେ । ସେଗୁଡ଼ିକ ହେଉଛି- 'ଇଚ୍ଛାବତୀ', 'ଅନଙ୍ଗରେଖା', 'ତ୍ରିପୁରମୋହିନୀ', 'ମଦନ ମଞ୍ଜରୀ' ଓ 'ଶ୍ରୀରାମ ବିଳାସ' ।

ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠ ଭଞ୍ଜ ଘୁମୁସର ରାଜସିଂହାସନରେ (ଖ୍ରୀ.୧୭୦୧- ଖ୍ରୀ.୧୭୦୪) ମାତ୍ର ତିନିବର୍ଷ ପାଇଁ ରାଜତ୍ୱ କରିଥିଲେ । ସେ ମଧ୍ୟ କବି ଥିଲେ । ସେ କେତୋଟି ଗୀତି କବିତା ରଚନା କରିଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ଗୋଟିଏ କବିତାକୁ ଏଠାରେ ଉଲ୍ଲେଖ କରାଗଲା-

''ପ୍ରାଣବାନ୍ଧବୀ ଦିନେ ପ୍ରାଙ୍ଗଣ ପରେ
କର ଦେଇଣ ଥିଲା ଥୋର ହସ୍ତରେ ।
ସେ ମୋ ଚମ୍ପକଗୋରୀ
ଧନ୍ୟ ଧନ୍ୟ ତାହାର ଶୋଭା ଚାତୁରୀ ।
ଜୁଡ଼ାରେ ଥିଲା ତା'ର କିଆ ପାଖୁଡ଼ା
ତା'ଦେଖି ଅଙ୍ଗେ ହେଲା ମଦନପୀଡ଼ା ।
ଲଲାଟେ ଥିଲା ତା'ର ସିନ୍ଦୂର ବିନ୍ଦୁ
ତା'ଦେଖି ବଢ଼ିଲା ଯେ ଆନନ୍ଦ ସିନ୍ଧୁ ।

ଗଇରିକର ଚିତା ଅଙ୍ଗେ ଶୋଭିତ
ତା'ଦେଖି ଧୈର୍ଯ୍ୟ ମୋର ହୋଇଲା ହତ ।
ପିନ୍ଧିଣ ଥିଲା ନୀଳ ଝୀନ ବସନ
ଫୁଟିଣ ଦିଶୁଥିଲା ଘନ ଜଘନ ।
ଭଲା ଭାଗ୍ୟରେ ଶୋଭା ଦେଖିଲି ମୁହିଁ
ଦେଖି ମୋତେ ଲୁଚିଲା ବନଜ ମୁହିଁ ।
ଭଣିଲେ ନୀଳକଣ୍ଠ ନୃପତିବର
ରମଣୀକି ପାଇଲେ କରନ୍ତି ହାର ।''

ଏହିପରି ଏକ ସାହିତ୍ୟିକ ବାତାବରଣ ଭିତରେ ଉପେନ୍ଦ୍ରଙ୍କ ବାଲ୍ୟଜୀବନ ଅତିବାହିତ ହୋଇଥିଲା । ଘୁମୁସର ରାଜଦରବାରର ସାହିତ୍ୟ ସଙ୍ଗୀତ ଚର୍ଚ୍ଚା ତାଙ୍କ ମନରେ ସାହିତ୍ୟପ୍ରତି ପ୍ରବଣତା ସୃଷ୍ଟିକରି କରିଥିବା ଅମୂଳକ ନୁହେଁ । ରାମଚନ୍ଦ୍ର ରାଜଗୁରୁ ତାଙ୍କର ଶିକ୍ଷାଗୁରୁ ଥିଲେ ବୋଲି ଗବେଷକମାନେ ମତ ରଖିଛନ୍ତି ।

ଉପେନ୍ଦ୍ରଙ୍କର ବ୍ୟକ୍ତିଗତ ଜୀବନ ଦୁଃଖମୟ ଥିଲା । ସେ ନିଜ ରାଜ୍ୟରୁ ବିତାଡ଼ିତ ହୋଇ ଅନ୍ୟତ୍ର ଆଶ୍ରୟ ନେଇଥିଲେ । ପୁନଶ୍ଚ ଯୁବାକାଳରେ ସେ ସ୍ତ୍ରୀହରା ହୋଇ ଦାମ୍ପତ୍ୟସୁଖରୁ ବଞ୍ଚିତ ହୋଇ ବିରହୀ ଜୀବନ ଯାପନ କରୁଥିଲେ । ସ୍ତ୍ରୀ ବିୟୋଗ ଯୋଗୁଁ ସେ ଦଗ୍ଧ ଅନୁଭୂତି ପାଇଥିଲେ । ତେଣୁ ତାଙ୍କର ସ୍ପର୍ଶ କାତର କବି ପ୍ରାଣ ବିଳାପ କରିଛି-

''ରାଜାଙ୍କୁ ହେବାର ରାଜ୍ୟ ଭ୍ରଷ୍ଟ । ଯୁବାଙ୍କୁ ହେବାର ପତ୍ନୀ କଷ୍ଟ ।
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଏଥୁ ବଳି ନାହିଁ ଆନ କଷ୍ଟ ।'' (୧୦)

ଉପେନ୍ଦ୍ର ଥିଲେ ବିଶିଷ୍ଟ ସାଧକ ଓ ରାମୋପାସକ । ରାମତାରକ ମନ୍ତ୍ର ସିଦ୍ଧ କରି ସେ ବିଚିତ୍ର କବିତ୍ୱ ଶକ୍ତିର ଅଧିକାରୀ ହେଲେ । ତେଣୁ ଉପେନ୍ଦ୍ର ଏହା ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି-

''ତାରକମନ୍ତ୍ର ପରସାଦେ
ମୋହର କବି ପଣ ଉଦେ ।'' (୧୧)

କବିଙ୍କର ଅନ୍ୟାନ୍ୟ କାବ୍ୟ ଗୁଡ଼ିକରେ ଏ ସମ୍ପର୍କରେ ସ୍ୱୀକାରୋକ୍ତି ମଧ୍ୟ ରହିଛି । (୧୨)

ଉପେନ୍ଦ୍ର ଭଞ୍ଜ ଥିଲେ ଉଚ୍ଚକୋଟୀର ସର୍ଜନଶୀଳ କବି । ତାଙ୍କ ସର୍ଜନଶୀଳତା ଅନନ୍ୟ ଓ ଅସାଧାରଣ । ସୃଜନଶୀଳତା ଦିବ୍ୟ ଅଭିପ୍ରେରଣାରୁ ସୃଷ୍ଟିହୁଏ । ସୃଜନାତ୍ମକ ରଚନା ମୁଖ୍ୟତଃ ଅସୀମ ଚେତନା ମଧ୍ୟରୁ ପ୍ରେରଣା ପାଏ । ସ୍ରଷ୍ଟା ଏକ ଅବତରଣ । ସୃଜନକର୍ମ ସ୍ରଷ୍ଟା ପୁରୁଷର ଅପୂର୍ବ ରସାନୁଭୂତିର ପରିପ୍ରକାଶ । ପ୍ରତ୍ୟେକ ସୃଷ୍ଟିକର୍ମର ଦୁଇଗୋଟି କାରଣ ରହିଛି; ଯଥା-ଉପାଦାନ କାରଣ ଓ ନିମିତ୍ତ କାରଣ । ସର୍ଜନଶୀଳ ସ୍ରଷ୍ଟା ଜଣେ ଅଭିପ୍ରେରିତ ବ୍ୟକ୍ତି (Inspired person) । ସ୍ରଷ୍ଟାର ମନୋଭୂମି ହେଉଛି ସୃଜନଶୀଳତାର ମୂଳାଧାର ।

ମନୋବିଜ୍ଞାନୀ ଉଇଲିୟମ୍ ଜେମ୍‌ସ (୧୮୪୨-୧୯୧୦) ମନୁଷ୍ୟର ମନକୁ ଚେତନ (consciousness), ଅବଚେତନ (sub-consciousness) ଏବଂ ଅବଚେତନ (un-consciousness)-ଏହି ତିନିସ୍ତରରେ ବିଭକ୍ତ କରିଥିଲେ । ପରବର୍ତ୍ତୀକାଳରେ ବିଶିଷ୍ଟ ମନୋବିଜ୍ଞାନୀ ସିଗମଣ୍ଡ ଫ୍ରଏଡ୍ (୧୮୫୬-୧୯୩୯) ମନୁଷ୍ୟ ମନର ଅବଚେତନସ୍ତର ଉପରେ ଗଭୀର ଅଧ୍ୟୟନ କରିଥିଲେ । ମନୁଷ୍ୟ ଜୀବନରେ ଅବଚେତନ ସ୍ତରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହି ଅବଚେତନ ସ୍ତରରେ ମନୁଷ୍ୟର ସକଳ କାମନା, ବାସନା, ଇଚ୍ଛା, ଅଭିଳାଷ ପ୍ରଭୃତି ନିହିତ ଥାଏ । ସୃଜନ ପ୍ରକ୍ରିୟା ଅସୀମ । ସୃଜନ ପ୍ରକ୍ରିୟାର ମୂଳଉତ୍ସ ହେଉଛି ଅଭିପ୍ରେରଣା (motivation) । ସୃଜନପ୍ରକ୍ରିୟାରେ କଳ୍ପନା (imagination), ପ୍ରେରଣା (inspiration), ସଂବୋଧି (intitution)ଏବଂ ସୌନ୍ଦର୍ଯ୍ୟବୋଧ (aesthetic sensibility) ର ଭୂମିକା ରହିଛି । ମନୁଷ୍ୟର ମଗ୍ନ ଅବଚେତନ ସର୍ଜନାତ୍ମକ ରଚନାର ପ୍ରାଣକେନ୍ଦ୍ର । ସୃଜନର ପ୍ରକ୍ରିୟା ହେଉଛି ପ୍ରତିଭା । ଏହା ନୈସର୍ଗିକ । ପ୍ରତିଭା ହେଉଛି ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞା । ତେଣୁ ସଂସ୍କୃତରେ କଥିତ ଅଛି-

''ବୁଦ୍ଧିସ୍ତାତ୍ କାଳିନୀ ଜ୍ଞେୟା ପ୍ରଜ୍ଞା ତ୍ରୈକାଲ୍ୟ
ନବନବୋନ୍ମେଷଶାଳିନୀଂ ପ୍ରଜ୍ଞା ପ୍ରତିଭାଂ ବିଦୁଃ ।''

ଏହାର ମର୍ମାର୍ଥ ବୁଝାଇବାକୁ ଯାଇ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି- ''ଯେଉଁ ଶକ୍ତିଦ୍ୱାରା ଦର୍ଶନମାତ୍ରେ ପଦାର୍ଥ ବିଶେଷର ଜ୍ଞାନ ଜନ୍ମେ, ତାହା ବୁଦ୍ଧି (intelligence), ଯେଉଁ ଶକ୍ତିଦ୍ୱାରା ପଦାର୍ଥ ବିଷୟର ତ୍ରିକାଳଗତ ଜ୍ଞାନ ହୁଏ, ତାହା ପ୍ରଜ୍ଞା (wisdom) , କଳ୍ପନା ପ୍ରଜ୍ଞାର ଅନ୍ତର୍ଗତ । ଯେଉଁ ପ୍ରଜ୍ଞା ପଦାର୍ଥ ବିଶେଷର ପ୍ରଚ୍ଛନ୍ନ ଅର୍ଥାତ୍ ଏଯାବତ୍ ଅଜ୍ଞାତ ଥିବା ବିଶେଷତ୍ୱ ବା ବିଶେଷ ଧର୍ମକୁ ନୂତନ ନୂତନ ଭାବେ ପ୍ରକାଶ କରେ, ତାହା ପ୍ରତିଭା ନାମରେ ଜ୍ଞାତ ।''

ନୈସର୍ଗିକ ପ୍ରତିଭା ସର୍ଜନାତ୍ମକ ରଚନାର ଜନନୀ । ସୃଜନର ଉପାଦାନ ଗୁଡ଼ିକ ହେଉଛି- ମେଧା ବା ବୁଦ୍ଧି, ପୂର୍ବାନୁଭୂତି, ବ୍ୟକ୍ତିତ୍ୱ, ଚିନ୍ତାରଶୈଳୀ, ସାହାଯ୍ୟକାରୀ ବାତାବରଣ, ଶ୍ରମ, ଆଗ୍ରହ, ଧୈର୍ଯ୍ୟ ଓ ସାମର୍ଥ୍ୟ ।

ଆତ୍ମପ୍ରକାଶ କରିବା ସ୍ୱଭାବକ ପ୍ରବୃତ୍ତି । ଅତଳ ପଙ୍କ ଭିତରେ ବୀଜଟିଏ ଥିଲେ ସେ ଯେପରି ପଙ୍କ ଓ ପାଣିକୁ ଅତିକ୍ରମ କରି ଆତ୍ମପ୍ରକାଶ କରେ, ସେହିପରି ସ୍ରଷ୍ଟାପୁରୁଷର ମନଗହନର ଶକ୍ତିଶାଳୀ ଆବେଗଟି ମଧ୍ୟ ସମସ୍ତ ଆବରଣକୁ ଭେଦ କରି ଆତ୍ମପ୍ରକାଶ କରେ ।

ସୃଜନଶୀଳ ଲେଖକ ଜଣେ ଏକେଲା ମନୁଷ୍ୟ । ଶୁଦ୍ଧ, ସାର ଓ ଦିବ୍ୟ ଏକେଲା ମଣିଷର ପ୍ରାଣ । ଐଶ୍ୱର୍ଯ୍ୟମୟ ଓ ଆଲୋକମୟ ହେଉଛି ଏକେଲା ମଣିଷର ହୃଦୟ । କାବ୍ୟ ରଚନା ଏକ ସର୍ଜନ । ସର୍ଜନାତ୍ମକ ସାହିତ୍ୟ ନିରାଲମ୍ବ ସାହିତ୍ୟ ଏହା ସ୍ୱୟଂକ୍ରିୟ, ସ୍ୱୟଂପ୍ରଭ ଓ ସ୍ୱୟଂସମ୍ପୂର୍ଣ୍ଣ । ସୃଜନାତ୍ମକ ସାହିତ୍ୟରେ ବ୍ୟକ୍ତିନିଷ୍ଠତା, ବସ୍ତୁନିଷ୍ଠତା ଓ

ସତ୍ୟନିଷ୍ଠତା- ଏହି ତ୍ରିଧାରା ଲକ୍ଷଣୀୟ । କବିର ଗଭୀର ଜୀବନାନୁଭୂତି ଯେତେବେଳେ କଳ୍ପନାରେ ରସାଣିତ ହୁଏ, ତାହା ଅପୂର୍ବ ସୃଜନଶୀଳତାର ସ୍ୱାକ୍ଷର ବହନ କରେ । ଉପେନ୍ଦ୍ର ଭଞ୍ଜ ବିଭୁଦତ୍ତ କବିତ୍ୱ ସହିତ ଗଭୀର ସାଧନା ଓ ଶାସ୍ତ୍ରାନୁଶୀଳନ ଯୋଗୁଁ ଅଦ୍ଭୁତ କବିତ୍ୱ ଶକ୍ତିର ଅଧିକାରୀ ହୋଇଥିଲେ । ଉପେନ୍ଦ୍ରଭଞ୍ଜ ଯେଉଁ ଦୁଃଖାନୁଭୂତି ପାଇଥିଲେ, ତାହାକୁ ସେ ମନୋରାଜ୍ୟରେ ସୁରୁଚିପୂର୍ଣ୍ଣ ରୂପାନ୍ତରୀକରଣ (sublimation) କରିପାରିଥିଲେ । ଏହି ରୂପାନ୍ତରୀକରଣ ପ୍ରକ୍ରିୟାରୁ ସେ ଉଚ୍ଚକୋଟୀର କବିତ୍ୱ ଶକ୍ତି ଲାଭ କରିଥିଲେ ।

ଉପେନ୍ଦ୍ରଙ୍କ କବିତ୍ୱ ଦିବ୍ୟ ଓ ନୈସର୍ଗିକ । ଏହା ଥିଲା ବିଭୁଦତ୍ତ । ଉପେନ୍ଦ୍ର ଜଣେ ବିଦଗ୍ଧ ପଣ୍ଡିତ କବି ଥିଲେ । ତାଙ୍କର ପାଣ୍ଡିତ୍ୟର ପଟାନ୍ତର ନାହିଁ । ସେ ଥିଲେ ବହୁ ଶାସ୍ତ୍ରଦର୍ଶୀ । ଉପେନ୍ଦ୍ର ଦୁର୍ଲ୍ଲଭ କବିତ୍ୱର ଅଧିକାରୀ ଥିଲେ । ଉପେନ୍ଦ୍ର ସ୍ୱୟଂ, କହିଛନ୍ତି-

'କହେ ଉପଇନ୍ଦ୍ର ଉତ୍ତମ କବିପୁଞ୍ଜ ଦୁର୍ଲଭ ମାର୍ଗେ ମୋ ସଞ୍ଚାର ।' (୧୩)

ତାଙ୍କର ଦେବଦୁର୍ଲ୍ଲଭ କାବ୍ୟ ସମ୍ଭାର ଏହି ଅସାଧାରଣ ପାଣ୍ଡିତ୍ୟ, ବହୁ ଶାସ୍ତ୍ର ଦର୍ଶିତା ଓ ବୁଦ୍ଧିମତ୍ତାର ଅମୃତମୟ ଫଳ । ସେ ଅମର ସିଂହଙ୍କର 'ଅମରକୋଷ', ଶାଶ୍ୱତଙ୍କର 'ଅନେକାର୍ଥ ସମୁଚ୍ଚୟ', ଯାଦବ ପ୍ରକାଶଙ୍କର 'ବୈଜୟନ୍ତୀ', ମହେଶ୍ୱର ଆଚାର୍ଯ୍ୟଙ୍କର 'ବିଶ୍ୱପ୍ରକାଶ' ମେଦିନୀ କରଙ୍କର 'ମେଦିନୀ କୋଷ', ପୁରୁଷୋତ୍ତମଙ୍କର 'ତ୍ରିକାଣ୍ଡ କୋଷ'- ଏହି ଷଟକୋଷ ଅଧ୍ୟୟନ କରିଥିଲେ । ସେ ସଂସ୍କୃତ ଷଟ୍‌କାବ୍ୟ ରଘୁବଂଶ, କୁମାର ସମ୍ଭବ, ମେଘଦୂତ (ଲଘୁତ୍ରୟୀ) ଏବଂ କିରାତାର୍ଜ୍ଜୁନୀୟ, ଶିଶୁପାଳ ବଧ, ନୈଷଧୀୟ ଚରିତ (ଗୁରୁତ୍ରୟୀ), ଷଟଦର୍ଶନ (ନ୍ୟାୟ, ସାଂଖ୍ୟ, ବୈଶେଷିକ, ଯୋଗ, ପୂର୍ବମୀମାଂସା, ଉତ୍ତର-ମୀମାଂସା) ପୁରାଣ, ଇତିହାସ, ଜ୍ୟୋତିଷ, ଆୟୁର୍ବେଦ, ଧନୁର୍ବେଦ, ତନ୍ତ୍ର, ଅଭିଧାନ, ଛାନ୍ଦ, ଅଳଙ୍କାର, ବ୍ୟାକରଣ, କାମସୂତ୍ର, କଳାବିଦ୍ୟା, ଦଣ୍ଡନୀତି, ରାଜନୀତି, ସ୍ମୃତି, ଦର୍ଶନ, ଭୂଗୋଳ, ସାହିତ୍ୟଦର୍ପଣ, ଗୀତଗୋବିନ୍ଦ ପ୍ରଭୃତି ଅଧ୍ୟୟନ କରିଥିଲେ । ଏତଦ୍ ବ୍ୟତୀତ ଭାମହଙ୍କର 'କାବ୍ୟାଳଙ୍କାର ସୂତ୍ରବୃତ୍ତି', ରୁଦ୍ରଟଙ୍କର 'କାବ୍ୟାଳଙ୍କାର', ରାଜଶେଖରଙ୍କ 'କାବ୍ୟମୀମାଂସା', ଭୋଜଙ୍କର 'ସରସ୍ୱତୀ କଣ୍ଠାଭରଣ', କୁନ୍ତକଙ୍କର 'ବକ୍ରୋକ୍ତି ଜୀବିତମ୍', ପଣ୍ଡିତ ଜଗନ୍ନାଥଙ୍କର 'ରସଗଙ୍ଗାଧର', ମମ୍ମଟଙ୍କର 'କାବ୍ୟପ୍ରକାଶ', ହେମଚନ୍ଦ୍ରଙ୍କର 'କାବ୍ୟାନୁଶାସନ', କ୍ଷେମେନ୍ଦ୍ରଙ୍କର 'କବି କଣ୍ଠାଭରଣ', ଆନନ୍ଦବର୍ଦ୍ଧନଙ୍କର 'ଧ୍ୱନ୍ୟାଲୋକ', ଭାନୁଦତ୍ତଙ୍କର 'ରସ ତରଙ୍ଗିଣୀ' ପ୍ରଭୃତି ତାଙ୍କର କାବ୍ୟପ୍ରେରଣାର ଉତ୍ସ ଥିଲା ।

ଉପେନ୍ଦ୍ର ଅସାଧାରଣ ଶବ୍ଦପାଣ୍ଡିତ୍ୟର ଅଧିକାରୀ ଥିଲେ । ତେଣୁ ତାଙ୍କୁ ଯଥାର୍ଥରେ ଶବ୍ଦ ସମ୍ରାଟ କୁହାଯାଏ । ଉପେନ୍ଦ୍ର ସାହିତ୍ୟରେ ଶବ୍ଦ ଭଣ୍ଡାରର ବୈଚିତ୍ର୍ୟ ପାଠକଙ୍କୁ ବିମୋହିତ କରେ । ଓଡ଼ିଆ ସାହିତ୍ୟକୁ ସଂସ୍କୃତ ସାହିତ୍ୟର ସମକକ୍ଷ କରାଇବା ପାଇଁ ଉପେନ୍ଦ୍ର ଶବ୍ଦର ବୈଚିତ୍ର୍ୟ ସୃଷ୍ଟିକରିବାରେ କମ୍ ଶ୍ରମ ସ୍ୱୀକାର କରି ନାହାନ୍ତି । ତେଣୁ କବି ଉପେନ୍ଦ୍ର ଘୋଷଣା କରିଛନ୍ତି-

''କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସାଗର ପାର ।''

ବାସ୍ତବିକ ଉପେନ୍ଦ୍ର ସାହିତ୍ୟ ଓଡ଼ିଆ ଶବ୍ଦଭଣ୍ଡାରର ଗନ୍ତାଘର । ତାଙ୍କ କାବ୍ୟରାଜିରେ ତତ୍ସମ, ଅର୍ଦ୍ଧତତ୍ସମ, ତଦ୍ଭବ ଓ ଦେଶଜ ଶବ୍ଦର ବ୍ୟବହାର ଦେଖିବାକୁ ମିଳେ । ତାଙ୍କର ଶବ୍ଦଗୁଡ଼ିକ ଅନେକାର୍ଥ ବିଶିଷ୍ଟ । ଶବ୍ଦ କସରତ ତାଙ୍କ କାବ୍ୟ ସାହିତ୍ୟର ବିଶିଷ୍ଟ ଦିଗ । ତେଣୁ ବିଜୟଚନ୍ଦ୍ର ମଜୁମଦାର ତାଙ୍କୁ 'ଶବ୍ଦର ଯାଦୁକର' ନାମରେ ଅଭିହିତ କରିଛନ୍ତି ।

ବହୁ କାବ୍ୟର କବି ଭାବରେ ଉପେନ୍ଦ୍ର ଭଞ୍ଜ ବିଶେଷ ଗୌରବର ଅଧିକାରୀ । କବି ସ୍ୱକୃତ 'ଚିତ୍ରକାବ୍ୟ ବନ୍ଧୋଦୟ' କାବ୍ୟରେ ତାଙ୍କଦ୍ୱାରା ଲିଖିତ କାବ୍ୟ କବିତାର ବିବରଣୀ ପ୍ରଦାନ କରିଛନ୍ତି-

''କଲି ମୁଁ ଅନେକ ପ୍ରକାଶ ଗୀତେ ।
ଅଶେଷ ଚଉତିଶା ଚଉପଦୀ । ତାହା କେତେ ଯେ କହିବି ସମ୍ପାଦି ।
ଗାହା ଦୋହା ଷୋଡଶେନ୍ଦୁ, ଛପୋଇ । ଇତ୍ୟାଦି କବିତା ଗଣନା ନାହିଁ ।
ରସକୃଷ୍ଣ ବିଷୟ ଯେତେ ଗ୍ରନ୍ଥ । ଚିତ୍ତୋଇ ତହୁଁ କିଛି ଲେଖେ ଏଥ ।
ପୁରାଣ ଛାଇ କଳ୍ପନା ମାଧୁରୀ । ଋରୁଚିତ୍ର ଲେଖା ହେମମଞ୍ଜରୀ ।
ରସଲେଖା କାମକଳା ଚରିତ । ମନୋରମା ପ୍ରେମଲତା ସୁଗୀତ ।
ଭାବବତୀ ମୁକ୍ତାବତୀ ପ୍ରମାଣ । ବରଜଲୀଳା ଯେ ଛାନ୍ଦ ଭୂଷଣ ।
ଷଡରତୁ କଳା କଉତୁକର । କ ନିୟମ, ସାଦ୍ୟ ସୁଭଦ୍ରାସାର ।
ବୈଦେହୀଶ ବିଳାସ ସେହି କାବ୍ୟ । ପ୍ରସିଦ୍ଧ ଅବନା ଦ୍ୱାଦଶ ଛାନ୍ଦ ।
ରାମଲୀଳାମୃତ ଶେଷ ଚରିତ । ପ୍ରେମସୁଧାନିଧି ଯମକେ ସ୍ଥିତ ।
ରସିକ ହାରାବଳୀ ନାମେ ଗୀତ । କୁଞ୍ଜ ବିହାରାଦି ଶ୍ୟାମ ଚରିତ ।
ଅଳଙ୍କାର ରୀତି ରସପଞ୍ଚକ । ଲାବଣ୍ୟବତୀ ରସିକ ତୋଷକ ।
ପୁରୁଷୋତ୍ତମ ମାହାତ୍ମ୍ୟ ରଚନ । ନାନା ଶବ୍ଦକୋଷେ ଗୀତାଭିଧାନ ।
ଛାନ୍ଦଗୋଟି ତାରା ଚନ୍ଦ୍ରମା ପରି । ଯା' ନାମ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
ତ୍ରୈଲୋକ୍ୟମୋହିନୀ ଆଦି ଯେ ଗୀତ । ନିର୍ମିତ ଛାନ୍ଦ ପୋଥି ପାଞ୍ଚ ସାତ ।'' (୧୪)

ଉପେନ୍ଦ୍ରଭଞ୍ଜଙ୍କ କାବ୍ୟସଂଖ୍ୟା ସମ୍ପର୍କରେ ମଧ୍ୟ ମତଭେଦ ରହିଛି । ୧୮୭୨ ମସିହାରେ ହଣ୍ଟର ସାହେବ ଭଞ୍ଜଙ୍କର ୪୩ଖଣ୍ଡ କାବ୍ୟର ନାମ ପ୍ରକାଶ କରିଛନ୍ତି । ୧୯୧୪ ମସିହାରେ ତାରିଣୀ ଚରଣ ରଥ 'ଉତ୍କଳ ସାହିତ୍ୟ ଇତିହାସ' ରେ ଉପେନ୍ଦ୍ରଙ୍କର ୪୨ ଖଣ୍ଡ କାବ୍ୟର ନାମୋଲ୍ଲେଖ କରିଛନ୍ତି । ୧୯୨୩ ମସିହାରେ ବିଜୟ ଚନ୍ଦ୍ର ମଜୁମଦାର 'Selection from Oriya Literature, Vol-I', ରେ ୪୨ ଗୋଟି କାବ୍ୟର ନାମୋଲ୍ଲେଖ କରିଛନ୍ତି । ୧୯୨୮ ମସିହାରେ ପଣ୍ଡିତ ବିନାୟକ ମିଶ୍ର 'ଓଡ଼ିଆ ସାହିତ୍ୟ ଇତିହାସ'ରେ ଭଞ୍ଜଙ୍କର ୪୧ ଗୋଟି ପୁସ୍ତକର ନାମ ପ୍ରକାଶ କରିଛନ୍ତି । ଡକ୍ଟର ହରେକୃଷ୍ଣ ମହତାବ ୧୯୪୮ ମସିହାରେ 'ଓଡ଼ିଶା ଇତିହାସ'ରେ ଭଞ୍ଜଙ୍କର କାବ୍ୟ ସଂଖ୍ୟା ୬୮ ବୋଲି ଉଲ୍ଲେଖ କରିଛନ୍ତି । ଗୌରୀକୁମାର ବ୍ରହ୍ମା ଭଞ୍ଜଙ୍କର କାବ୍ୟସଂଖ୍ୟା ୬୫ ବୋଲି ନିର୍ଣ୍ଣୟ

କରିଛନ୍ତି । ସେ ଭଞ୍ଜଙ୍କର ୨୭ ଖଣ୍ଡ ପ୍ରକାଶିତ କାବ୍ୟର ତାଲିକା ଓ ୩୮ ଗୋଟି ଅପ୍ରକାଶିତ କାବ୍ୟର ତାଲିକା ପ୍ରଦାନ କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କର ରଚନା ସମ୍ଭାରକୁ ପଣ୍ଡିତ ବିନାୟକ ମିଶ୍ର ପାଞ୍ଚଭାଗରେ ବିଭକ୍ତ କରିଛନ୍ତି । (୧୫)

ଉପେନ୍ଦ୍ର ଭଞ୍ଜଙ୍କର ଏକ ସ୍ୱତନ୍ତ୍ର କୃତି ହେଉଛି 'ଚିତ୍ରକାବ୍ୟ ବନ୍ଧୋଦୟ' । ଏହା କବିଙ୍କର ପରିଣତ ବୟସର ରଚନା । ତାଙ୍କର ପ୍ରସିଦ୍ଧ କାବ୍ୟ ଗୁଡ଼ିକ ରଚିତ ହେଲାପରେ ସେ ଏଥିରେ ମନ ବଳାଇଥିଲେ । ଏହି କାବ୍ୟରେ ପଦଗୁଡ଼ିକର ଅକ୍ଷର ଗୁଡ଼ିକୁ କବି ଚିତ୍ର ମାଧ୍ୟମରେ ଦର୍ଶାଇଛନ୍ତି । ଏହି କାବ୍ୟ ସମ୍ପର୍କରେ କବି ଲେଖିଛନ୍ତି-

''ଏଥୁ ଅନନ୍ତେ ମେଧାବୀ ସୁବୁଦ୍ଧି
ବୁଝ ଚିତ୍ର ପ୍ରବନ୍ଧ ବନ୍ଧ ବିଧି ।
ଛନ୍ଦ ମଞ୍ଜରୀ ଛାନ୍ଦ ରତ୍ନାକର
ଯେତେ ବିଦଗ୍ଧ ମଣ୍ଡନ ବିଗ୍ରର
ଶିକ୍ଷାଥିଲା ଜନ ଦେଖ ଏ ପୋଥି
ହେବ ନୋହିଲେ ସିନା ଏଥି ମଡ୍ଡି ।''

ଏଥିରେ ପଦବନ୍ଧ, ଚିତ୍ରବନ୍ଧ, ନାଗ ବନ୍ଧ, କାବ୍ୟ ବନ୍ଧ ଗୁଡ଼ିକୁ କବି ଅଙ୍କନ କରିଛନ୍ତି । ସେହିପରି ଏଥିରେ ବନା, ଅବନା, ଏକାକ୍ଷର, ଓଷ୍ଠ୍ୟ, ନିରୋଷ୍ଠକ, ଅନ୍ତର୍ଲପି, ବହିର୍ଲପି, ଲୋମ, ବିଲୋମ ଇତ୍ୟାଦିର ଉଦାହରଣ ଦେଇଛନ୍ତି । ସିଂହାବଲୋକନ, ଶୃଙ୍ଖଳା, ଚ୍ୟୁତାକ୍ଷର ପ୍ରଭୃତିର ବର୍ଣ୍ଣନା ରହିଛି । ବନ୍ଧ ଗୁଡ଼ିକ ମଧ୍ୟରେ ଅଟାଳି, ପ୍ରାସାଦ, ବିମାନ, ମଣ୍ଡପ, ରଥ, ଚକ୍ର, ଯୁଗଳ ନାଗ, ସୂର୍ଯ୍ୟରଥ, ଶୂଳ, ଖଡ୍‌ଗ, ପରଶୁ, ଗଦା, ଶଙ୍ଖ ମତ୍ସ୍ୟ, ଡମ୍ବରୁ, ନାଗଫାଶ, ହଳ-ଲଙ୍ଗଳ ପ୍ରଭୃତି ୮୪ ବନ୍ଧର ଉଦାହରଣ ଦେଇଛନ୍ତି ।

କବି ଉପେନ୍ଦ୍ର ତାଙ୍କର ବିଚିତ୍ର କବିତ୍ୱ ଓ ସାରସ୍ୱତ ସାଧନାର ସ୍ୱୀକୃତି ସ୍ୱରୂପ ନବଦୁର୍ଗ (ନୟାଗଡ଼) ରାଜଦରବାରରୁ 'ବୀରବର' ଉପାଧି ଲାଭ କରିଥିଲେ । ଏହି ଉପାଧିଟିକୁ ସେ ବହୁଳ ବ୍ୟବହାର କରିଛନ୍ତି । ଏହି ଉପାଧିଟିକୁ ଉପେନ୍ଦ୍ର ତାଙ୍କର 'ଲାବଣ୍ୟବତୀ', 'କୋଟିବ୍ରହ୍ମାଣ୍ଡସୁନ୍ଦରୀ', 'ବୈଦେହୀଶବିଳାସ', 'ପ୍ରେମସୁଧାନିଧି', 'ଲାବଣ୍ୟନିଧି', 'ରସିକହାରାବଳୀ', 'ରସପଞ୍ଚକ', 'ଚଉପଦୀ ଚନ୍ଦ୍ର', 'ସୁବର୍ଣ୍ଣରେଖା', 'ରାମଲୀଳାମୃତ', 'ଗୀତାଭିଧାନ' ପ୍ରଭୃତି ଗ୍ରନ୍ଥରେ ବ୍ୟବହାର କରିଛନ୍ତି ।

ଏହାବ୍ୟତୀତ କବି ଉପେନ୍ଦ୍ର ଭଞ୍ଜ ପୁରୀ ଗଜପତିଙ୍କଠାରୁ 'ମଙ୍ଗରାଜ' ଉପାଧି ଲାଭ କରିଥିଲେ ବୋଲି ପଣ୍ଡିତମାନେ ମତ ରଖିଛନ୍ତି । ତେବେ ଉପେନ୍ଦ୍ର ଏହି ଉପାଧିଟିକୁ ଭାବବତୀ, ରସପଞ୍ଚକ, ଯମକରାଜ ଚଉତିଶା, କୁଞ୍ଜବିହାର, ଚଉପଦୀ ଭୂଷଣ, ଚିତ୍ରକାବ୍ୟ ବନ୍ଧୋଦୟ ପ୍ରଭୃତି ଗ୍ରନ୍ଥରେ ବ୍ୟବହାର କରିଥିବାର ଦେଖାଯାଏ ।

କବିଗୁରୁ ଉପେନ୍ଦ୍ର ଭଞ୍ଜ ବିପୁଳ କାବ୍ୟ ସାହିତ୍ୟର ସ୍ରଷ୍ଟା । ସେ ତାଙ୍କର କାବ୍ୟାଦର୍ଶ ସମ୍ପର୍କରେ କେତେକ ସୂଚନା ପ୍ରଦାନ କରିଛନ୍ତି-

''କଳଙ୍କ ବିହୀନ ମୋ ଗୀତ । ଖଳ ରାହୁରେ ଅଦୂଷିତ ।
ବିଚିତ୍ର ସୁଧାକର ଏହି । ସୁମନା ବୃନ୍ଦ ସୁଖଦାୟୀ ।
ନାରିକେଳ ଯେ ରସପୁର । ଭକ୍ଷି ନ ପାରଇ ବାନର ।
ତାର କି ସ୍ୱାଦ ନାଶ ହୋଇ । ପ୍ରସଙ୍ଗୁ ଗଲି ମଧ୍ୟ କହି । (୧୭)

ପୁନଶ୍ଚ-

'ଘେନ ନୈଷଧ ପରାୟେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।' (୧୮)

କବି ଉପେନ୍ଦ୍ର ମଧ୍ୟ ତାଙ୍କ କାବ୍ୟ ସଂପର୍କରେ ଅଜସ୍ର ସୂଚନା ଦେଇଛନ୍ତି । (୧୯)

ଉପେନ୍ଦ୍ର ସାହିତ୍ୟ ମୁଖ୍ୟତଃ ବିବୁଧରଞ୍ଜକ । ଏହା କାବ୍ୟାମୋଦୀ ବିଦଗ୍ଧ ରସିକ ବ୍ୟକ୍ତି ମାନଙ୍କ ଉଦ୍ଦେଶ୍ୟରେ ସମର୍ପିତ । ଓଡ଼ିଆ କାବ୍ୟଯୁଗରେ ନୂତନ ପରୀକ୍ଷା ନିରୀକ୍ଷା କରିଛନ୍ତି କବି ଉପେନ୍ଦ୍ର । ଓଡ଼ିଆ ସାହିତ୍ୟକୁ ସଂସ୍କୃତ ସାହିତ୍ୟର ସମକକ୍ଷ କରିବା ପାଇଁ ସେ ଯେଉଁ ପ୍ରଯତ୍ନପ୍ରୟାସ କରିଛନ୍ତି, ତାହାର ପଟାନ୍ତର ନାହିଁ । ତାଙ୍କର ପ୍ରତ୍ୟେକ କୃତି କାବ୍ୟର ସମସ୍ତ ବିଭୂତିରେ ଐଶ୍ୱର୍ଯ୍ୟମୟ । କାବ୍ୟର ଚତୁର୍ବିଧ ପାକ ମଧ୍ୟରୁ ସେ ନାରିକେଳ ପାକ (ଅର୍ଥାତ୍ ଆଦ୍ୟରେ କର୍କଶ, ପରିଣାମରେ ମଧୁର) କୁ ମୁଖ୍ୟ ପାକରୂପେ ତାଙ୍କ କାବ୍ୟ ଜଗତରେ ଗ୍ରହଣ କରିଛନ୍ତି ।

ଭଞ୍ଜ ସାହିତ୍ୟର ବିଶିଷ୍ଟ ଆଙ୍ଗିକ ବିଭବ ହେଉଛି ଉପମା ପ୍ରୟୋଗରେ ଆଧିକ୍ୟ ଏବଂ ଅର୍ଥ ଗୌରବର ପ୍ରାଚୁର୍ଯ୍ୟ । ତେଣୁ ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଯଥାର୍ଥରେ ଲେଖଛନ୍ତି-

''ଉପମା ଭଞ୍ଜ ବୀରସ୍ୟ ତସ୍ୟୈ ବଚାର୍ଥ ଗୌରବମ୍
କଲ୍ଲୋଳେ ପଦ ଲାଳିତ୍ୟଂ ସନ୍ତି ଚିନ୍ତମଣୌତ୍ରୟଃ ।''

'ଉପମା ପ୍ରୟୋଗରେ ଉପେନ୍ଦ୍ରଙ୍କର ସମଗ୍ର ଭାରତୀୟ ସାହିତ୍ୟରେ ସ୍ୱାତନ୍ତ୍ର୍ୟ ପ୍ରତିପାଦିତ ହୋଇଛି । ଭଞ୍ଜ ସାହିତ୍ୟ ଉପମା ଓ ଅର୍ଥ ଗୌରବରେ ଭରପୂର । ଉପମା ପ୍ରୟୋଗରେ ଉପେନ୍ଦ୍ରଙ୍କର ସଫଳତା ନିମ୍ନ ପଂକ୍ତିମାନଙ୍କରୁ ଅନୁଭବ କରିହୁଏ । ଯଥା-

(୧) ଅଣିମାଦି ସୁଖଦାୟୀ ଶୋଇଅଛି ଅଣି ହୋଇ
ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା
ରସାଣ ରଜତବାଡ଼େ କନକଲତା କି ଜଡ଼େ
ବିଷଦ ଘନରେ କି ସେ ଚପଳା ପ୍ରଭା
ବାମକର କପୋଳତଳ, କେନ୍ଦୁପଲ୍ଲବେ ଥୁଆ କି ଫୁଲ କମଳ ।

(ଲାବଣ୍ୟବତୀ-ଏକାଦଶ ଛାନ୍ଦ)

(୨) "କବି ବିଚାରିଲା ବିଚିତ୍ରହେଲା ତୁମ୍ବୀ ବୁଡ଼ିଲା
ନବୁଡ଼ି ଶଇଳ ସଲୀଳ ଉପରରେ ରହିଲା ।
କିସ ପୁଣି ଦେଖା ନଯାଇ ଯେବେ ଥାଇ ଜୀବରେ
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ ।
ଅପୂର୍ବ ଅମ୍ବୁଜ ମୁଖକୁ ଚାହିଁ ଭୃଙ୍ଗ ଚକୋର
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଚାହିଁ କାତର ।
କେଶ ଦରଶନେ ରଥାଙ୍ଗ ଧାଇଁ ଆହାର ବଶେ
ବିଚ୍ଛେଦ ଭୟରୁ ପଳାଇଗଲେ ନରହି ପାଶେ ।
ନୟନ ଉଜ୍ଜ୍ୱଳ କଜ୍ଜ୍ୱଳ ଲାଞ୍ଛ ଅନାଇ ଦେଇ
ଗଭୀର ଜଳରେ ପଶିଲେ ମୀନ ଭୟକୁ ପାଇ ।"(ଲାବଣ୍ୟବତୀ-୬ଷ୍ଠ ଛାନ୍ଦ)

(୩) ସୁନ୍ଦରୀ ସଂସାରେ ସେ ହେବାରୁ ଚକ୍ରବର୍ତ୍ତୀ
ଦେଲା କି ପ୍ରତି ଅଙ୍ଗରେ ଭୂପତି ସମ୍ପତ୍ତି ଯେ ।
କୁନ୍ତଳ ଦେଶରେ ଚୂଡ଼ା ଶୋଭା କରାଇଲା
ବିଦର୍ଭରେ ହାସକୁ ପ୍ରଭୁତ୍ୱପଣ ଦେଲା ଯେ ।
ମାଳବରେ କଣ୍ଠକୁ ମଣ୍ଡିତ କଲା ନେଇ
ଚୋଳରେ ଶୋଭିତ କଲା ଉରଜକୁ ଯହିଁ ଯେ ।
କାଞ୍ଚିରେ ରଞ୍ଜନ କଲା ମଧ୍ୟକୁ ନିରତ
କନକ କଟକେ କଲା ପାଦକୁ ପୂଜିତ ଯେ ।
ମଣି ରମଣୀମଣିକି ଶାଣ ଯଉବନ
ବହୁମୂଲ୍ୟ ପ୍ରଭାକୁ ବଢ଼ାଇ ଦିନୁ ଦିନ ଯେ ।
ଉପମା ଆଣିମ କାହୁଁ ମହାକବି ହେଲେ
ସୁନ୍ଦର ଯାହା ଅଙ୍ଗରେ ସୁନ୍ଦର ହୋଇଲେ ଯେ । (ଲାବଣ୍ୟବତୀ-୨ୟ ଛାନ୍ଦ)

(୪) ଦର୍ପଣରୁ ଝଳି କମଳୁ ବାସ ବଳେ ହରି
ଚନ୍ଦ୍ରରୁ ଆହ୍ଲାଦ ନେଇ ଲପନରେ ଭରି ଯେ ।
ନୀଳୋତ୍ପଳାକୁ ନୀଳ ଖଞ୍ଜନରୁ ଚଞ୍ଚଳତା
ବିଶିଖୁଁ ତୀକ୍ଷ୍ଣ ଆଣି ଆଖି କଲା ଧାତା ଯେ ।
କାଳିନ୍ଦୀଜଳ ଜଳଦଠାରୁ ହରି କଳା
ଚାମର ନୀଳ ରୁଚିରୁ କୁଟିଳ ହରିଲା ଯେ ।
ଲବଣୀ ଶିରିଷରୁ କୋମଳ ନେଇ ଦେହେ
ବିଦ୍ୟୁ ହେମ ଚମ୍ପା କାନ୍ତି ହରି କାନ୍ତି ବହେ ।

ଯେଉଁ ଅଙ୍ଗକୁ ଉପମା ଯେଉଁ ଦ୍ରବ୍ୟ ହୋଇ
ତହୁଁ ସାର ନେଇଟି ସେ ତନୁ କଲା ବିହି । (ରସିକହାରାବଳୀ)

(୫) ଏଥୁ ଅନ୍ତେ ଶୁଣ ରସ ଗ୍ରୀଷମେ ନିଶିପ୍ରବେଶ
ଉଦୟ ତାରା ଜୀବେଶ ହେଲେ ଆକାଶେ
ଚକ୍ରସୁଖ ଚକ୍ର ନକ୍ର ଛେଦନେ ହୀରକ ଚକ୍ର
ଫିଙ୍ଗିଛି ତାତ ସିଦ୍ଧିରେ କାମ କି ରୋଷେ ।
ବେଶ ହେବ କି ରାତ୍ରିବାଳୀ
ସ୍ଫଟିକ ପେଟୀରେ କିବା କସ୍ତୁରୀ ଦଳି ।
ଆଜିକି ବିଭାବରୀକି ହୋଇବ ବିଭାବରିକି
ମଲ୍ଲୀମଳା ଦେଇ ବିଧୁ କିରଣେ ମଣି
ଏ ବିଚିତ୍ର ସ୍ୱୟମ୍ବର ନାରୀକି ବରିଲା ବର
ଏତେ କାଳେ ଦେଖାଗଲା ଏକଥା ପୁଣି ।
ରବିକରେ ମହୀ ମହିଳା
ତାପି ହୋଇଥିଲା କି ଚନ୍ଦନ ଲେପିଲା ।'' (ଲାବଣ୍ୟବତୀ-ଏକାଦଶ ଛନ୍ଦ)

(୬) 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କବି ସ୍ନାନଯାତ୍ରା ପ୍ରସଙ୍ଗରେ ଯେଉଁ ଉପମାର ପ୍ରୟୋଗ କରିଛନ୍ତି, ତାହା ବେଶ୍ ଚିତ୍ତାକର୍ଷକ । ଯେପରି -

ଇନ୍ଦ୍ରପଦ ଦାତା ଯେ ରାଜାଧିରାଜେଶ୍ୱର
''ବିଜେ କଲେ ଦ୍ୱିଜେ ଦେଇ ନିଜ କରଭର ଯେ ।
ଢାଳନ୍ତି ଚାମର ଶ୍ୱେତଛତ୍ର ଟେକା ତହିଁ
କ୍ଷୀର ସାଗର ଲହରୀ ଭ୍ରମ ଉପୁଜାଇ ଯେ ।
ଗହଳ ହୋଇଣ କଳାଛତ୍ର ଶୋଭା ଦିଶି
ତୁଙ୍ଗ ଶିଖରୀ ପରେ କି ଜଳଦ ଆକର୍ଷି ଯେ ।
ପତାକା ବ୍ୟାଜଟି ଯେବେ ଶୂନ୍ୟେ ନୀରଧାର
ସ୍ୱେଦଛଳେ କରେ ନରତନୁ ଜରଜର ଯେ ।
ଚଞ୍ଚଳା ଖେଳା କରିବା ଖଦି ପୀତବାସ
ତୃଷିତ ଦ୍ୱିଜ ଚାତକ ଜଳପାନେ ତୋଷ ଯେ ।
ଏ ପ୍ରମାଣ ବରହିଣ ପୁଚ୍ଛ ତେଣୁ ଚଳି
ନିଶାଣ ମଣ୍ଡୁକେ ନାଦେ ଦିଗନ୍ତ ଉଚ୍ଛୁଳି ଯେ ।
ପ୍ରଭୁ ଚଳନ ଶବଦ ଜନିତ ସ୍ତନିତ
ପୁଷ୍ପାଞ୍ଜଳି ବକାବଳୀ ଉଡ଼ି ଖସେ ସେତ ଯେ ।

ଏମନ୍ତେ ସ୍ନାନ ମଣ୍ଡପେ ସିଂହାସନ ପର
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ଯେ ।
ନାଗ ନର କିନ୍ନର ଗନ୍ଧର୍ବ ଛନ୍ତି ରହିଁ
ଅନେକ କନକ ଘଟେ ପୂର୍ଣ୍ଣକରି ତହିଁ ଯେ ।
ଢାଳିଲେ ଭୂସୁରେ ନୀର ଶ୍ରୀମୁଖ ମଣ୍ଡଳେ
ଧାରାମାନ ପତିତ ହୋଇଲା ମହୋତ୍ପଳେ ଯେ ।
କି ମେରୁ ହୀରା ମାରାଗ ହେମଶୃଙ୍ଗୁ ଖସି
ଜାହ୍ନବୀ ଯମୁନା ହରିତାଳ ଧାରା ଆସି ଯେ ।
ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ
ସେ ତିନି ଶୃଙ୍ଗୁ କି ଜାତ ତରଳ ରଜତ ଯେ ।'' (କୋ.ବ୍ର.ସ୍ତୁ)

ଅନ୍ୟାନ୍ୟ ଉପମାର ଉଦାହରଣ-

(୭) କେଉଁ ପ୍ରବୀଣା ବୀଣାକୁ ବଜାଉଛି ଯାଉଛି ପ୍ରତୀତ ହେଉଛି
ବନ୍ଧୁରେ ବନ୍ଧୁର ବିଥୀଟି ଏଥିରେ ସାବଧାନ ହୁଅ କହୁଛି
ଗମନେ । ଜେମାର ମୋ ମନେ କରଇଁ
ମନମଥ ରଥ ଯାତ୍ରା କି କରୁଛି ପଥ ମନୋରମ ପୂରେଇ
ଲଲାଟ ଲପନ ଚନ୍ଦ ଦରପଣ ଚିକୁର ଚାମର ଯହିଁରେ
ତରଙ୍ଗ କୁରଙ୍ଗ ନୟନ ତୁରଙ୍ଗ କି ରଙ୍ଗ କରଇ ତହିଁରେ ।
କଳଶ । କୁଚଚକ୍ରଶ୍ରେଣୀ ଚଟୁଳ
କଟିମେଖଳା ଘଣ୍ଟି ଯହିଁ ପ୍ରକଟି ଅଞ୍ଚଳ ପତାକା ଚଞ୍ଚଳ ।

(ଲାବଣ୍ୟବତୀ-୫ମ ଛାନ୍ଦ)

(୮) ମୁଠାରୁ ଫିଟିଯିବାରେ ଏ ପ୍ରତୀତ ଫଗୁ ଫିଙ୍ଗିବାରେ ଲଳନା
ବସନ୍ତ ରାଜା ବଶକୁ କି କରନ୍ତି ରଙ୍ଗପାଟଚେଳ ଚାଳନା ।
ସେ ରଜ । ଯାଇ ଶୂନ୍ୟେ ରୁଣ୍ଡ ହୋଇଲା
ଅତ୍ୟନ୍ତ ଗୁଣିକ ଦିଗ ପରିବାର ମାଣିକ୍ୟ ଛତ୍ରକି ଧଇଲା ।

(ଲାବଣ୍ୟବତୀ, ୫ମ ଛାନ୍ଦ)

(୯) କଙ୍କଣ କ୍ୱଣିତ ଧ୍ୱନିରୁ ମଣ୍ଡିତ ଭୁଜ ଡିଣ୍ଡିମ କି ବାଇଲା
ଉଚ୍ଚବାଚବାଣୀ ମଙ୍ଗଳଗୀତ କି ଅଭିଷେକ ବେଳେ ହୋଇଲା ।
ସ୍ୱଭାବେ । କୁଚପୂର୍ଣ୍ଣ କୁମ୍ଭ ରାଜିଛି
ଚାରୁଚେଳ ଚୂତ ପଲ୍ଲବ ସଂଯୁତ ହାର ଉପହାର ସାଜିଛି ।

(ଲାବଣ୍ୟବତୀ, ୫ମ ଛାନ୍ଦ)

(୧୦) ରମଣୀ ରମଣୀୟ କଲେ ଅବିର ଗୁଣ୍ଡିରେ ସେ ବନସରଣୀ
ମହୀମହିଳା ଋତୁକାଳ ଲଭିଲା ଏସନ ମାନସକୁ ଆଣି
ସେ ଧୂଳି । କାହିଁ ପବନ ଯୋଗେ ଉଡ଼ି
ଶୁଭ ସୂଚକ କହି ଜଉତିଷ କି ଯାଉଛି ଶିରେ ବାନ୍ଧି ଶାଢ଼ୀ ।
(ଲାବଣ୍ୟବତୀ, ୫ମ ଛାନ୍ଦ)

(୧୧) କୁଙ୍କୁମ ପିଚିକା ବାଜି ଜର ଜର ସୁନ୍ଦର ଉରଜ କାହାର
କନକାଚଳରୁ କିବା ହରିତାଳ ପ୍ରବାହ ହେଉଛି ବାହାର
କର୍ପୂର । ଗୁଣ୍ଡି ମଣ୍ଡିତ କାହା ସ୍ତନ
ସୁବର୍ଣ୍ଣ ସ୍ୱୟମ୍ଭୁ ଶମ୍ଭୁ ଯୁଗଳ କି ହୋଇଲେ ଭସ୍ମ ବିଲେପନ ।
(ଲାବଣ୍ୟବତୀ, ୫ମ ଛାନ୍ଦ)

(୧୨) କାହା କୁଚ ଫଗୁ ସଙ୍ଗରୁ ସୁସଞ୍ଚ ଏହି ପାଞ୍ଚ ହୋଏ ମାନସେ
ହୃଦୟ ସରୋବର ମଧ୍ୟେ ଉଦୟ କୋକନଦ କଢ଼ି ଯୁଗ୍ମ ସେ
କାହାର । ଛିଡ଼ି ହାର ଖସେ ମୁକୁତା
ପୟୋଧର ଛଳେ କ୍ଷୀରବିନ୍ଦୁ ବୃଷ୍ଟି କରିବାରେ କି ସେ ଶୋଭିତା ।
(ଲାବଣ୍ୟବତୀ, ୫ମ ଛାନ୍ଦ)

(୧୩) କାହା ଲଲାଟୁଁ ସିନ୍ଦୂର ବହିପଡ଼େ ସ୍ୱେଦ ହୋଇବାରୁ ଜନିତ
କେଶରାହୁ ଦନ୍ତଘାତରୁ ବ୍ୟକତ ଇନ୍ଦୁ ଦେହରୁ କି ରକତ
ସେ କାଳେ । ଅତି ଚଞ୍ଚଳ ନେତ୍ର ଗତି
ଦିଗଧରାକୁ କି ଶ୍ୟାମଳ କୋମଳ କମଳେ ମଣ୍ଡନ୍ତି ଯୁବତୀ ।
(ଲାବଣ୍ୟବତୀ, ୫ମ ଛାନ୍ଦ)

(୧୪) ରତ୍ନ କିରଣେ ଭାନୁପ୍ରଭା ପ୍ରକାଶି ଶ୍ରବଣେ ତାଟଙ୍କ ଚଳନ୍ତି
ପ୍ରମଦା ପ୍ରମୋଦ ଭରେ କି କରନ୍ତି ଅନଙ୍ଗ ମଙ୍ଗଳ ଆଳତୀ
ଚଳିତ । ନାସିକା ମୋତି ଉପହାର
ବାଜେ ନୂପୁର ନାଦେ କି ନାଚୁଛନ୍ତି ନର୍ତ୍ତକୀ ଗୁଣେ ଅହଂକାର ।
(ଲାବଣ୍ୟବତୀ, ୫ମ ଛାନ୍ଦ)

ଉପେନ୍ଦ୍ର ଭଞ୍ଜ ଥିଲେ ଶ୍ରେଷ୍ଠ ଉପମା କାରକ କବି । ସଂସ୍କୃତ ସାହିତ୍ୟରେ ଶ୍ରେଷ୍ଠ ଉପମାକାରକ କବି ରୂପେ କାଳିଦାସ ସ୍ୱୀକୃତ । ତେବେ କବି ଉପେନ୍ଦ୍ର ଉପମା ବର୍ଣ୍ଣନା ଯୋଗୁଁ ନିଜକୁ ଅହୋଭାଗ୍ୟ ବୋଲି ମନେ କରିଛନ୍ତି । କବି ସ୍ୱୟଂ ଲେଖିଛନ୍ତି-

ଭାଗ୍ୟରୁ ଏ ଉପମାକାରକ ମୁଁ ଯେ ହେଲି
ପୁଲକିତ ଶରୀରେ ହରିରେ ସ୍ତୁତି କଲି ।

ମହିମା ଅନନ୍ତ ପ୍ରଭୋ ମହିମା ଅନନ୍ତ
ମନୋହାରୀ ସହୋଦର ହୋଇ ଯାର ଖ୍ୟାତ ହେ ।
ଅରିଦରକର ବିଭୋ ଅରି ଦରକର
ଯୁଗେ ଯୁଗେ ଧରି ନାନାବିଧ ଅବତାର ହେ ।
ବିଭୀଷଣ ଅଘ ବିଭୀଷଣ ଅଘହର
ସ୍ଥାନ କରି ଦେଲେ ଲଙ୍କା ନିଜ କଳେବର ହେ ।
ଭବ ବିରଞ୍ଚି ପୂଜିତ ହେ ଭବ ବିରଞ୍ଚି
ଶୁଚି କବଳକ ସଦାନନ୍ଦ ସଦା ଶୁଚି ହେ । (କୋ.ବ୍ର.ସୁ)

ଉପେନ୍ଦ୍ର ଭାରତୀୟ ସାଂସ୍କୃତିକ ପରମ୍ପରାର ସୁଯୋଗ୍ୟ ଦାୟାଦ । ଜୀବନରେ କାବ୍ୟ ପଠନର ଉପଯୋଗିତାକୁ ଉପଲବ୍ଧି କରି ଉପେନ୍ଦ୍ର ଜନକଲ୍ୟାଣ ପାଇଁ ତାଙ୍କର ଦୁର୍ଲଭ କାବ୍ୟ ସମ୍ପଦ ସୃଷ୍ଟି କରିଯାଇଛନ୍ତି । 'କାବ୍ୟପ୍ରକାଶ' ଗ୍ରନ୍ଥରେ ଉଲ୍ଲେଖ ରହିଛି-

''କାବ୍ୟଂ ଯଶସେଽର୍ଥକୃତେ ବ୍ୟବହାର ବିଦେ ଶିବେତର କ୍ଷତୟେ
ସଦ୍ୟଃ ପର ନିର୍ବୃତ୍ତୟେ କାନ୍ତା ସମ୍ମିତ ତୟୋପଦେଶ ଯୁଜେ ।''(କାବ୍ୟପ୍ରକାଶ ୧/୨)

ଅର୍ଥାତ୍ ଯଶ, ଅର୍ଥ, ଲୋକ, ବ୍ୟବହାର, ପରିଜ୍ଞାନ, ଅମଙ୍ଗଳ ବିନାଶ, ପରମ ଆନନ୍ଦ ଲାଭ ତଥା କାନ୍ତା ସମ୍ମିତ ଉପଦେଶର ଉପଯୋଗୀ ନିମନ୍ତେ କାବ୍ୟ ରଚନା କରାଯାଇଥାଏ । ଉପେନ୍ଦ୍ର କାବ୍ୟ-ଭାରତୀ ଏହି ଚେତନାର ଅନୁବ୍ରତୀ ।

ପୌରାଣିକତା, ସାଙ୍ଗୀତିକତା, ଆଳଙ୍କାରିକତା, ଶୃଙ୍ଗାରିକତା, ପ୍ରକୃତିପ୍ରାଣତା, ସୌନ୍ଦର୍ଯ୍ୟଚେତନା, ରସବୋଧ, ବିଭୁଚେତନା, କଳ୍ପନାବିଳାସିତା ପ୍ରଭୃତି ଭଞ୍ଜୀୟ କାବ୍ୟଚେତନାର ଏକ ଏକ ବିଶିଷ୍ଟ ଦିଗ । କବିଙ୍କର ବୈଦେହୀଶବିଳାସ, ସୁଭଦ୍ରା ପରିଣୟ, କଳା କଉତୁକ, ରାମଲୀଳାମୃତ, କୁଞ୍ଜବିହାର, ଅବନାରସତରଙ୍ଗ ଇତ୍ୟାଦିରୁ ତାଙ୍କର ଅସୀମ ପୌରାଣିକ ଜ୍ଞାନ ସ୍ପଷ୍ଟ ଅନୁଭବ କରିହୁଏ । ଏହା ବ୍ୟତୀତ ସେ ଅନ୍ୟାନ୍ୟ କାଞ୍ଚନିକ ଓ ଆଳଙ୍କାରିକ ଗ୍ରନ୍ଥଗୁଡ଼ିକରେ ସ୍ଥାନେ ସ୍ଥାନେ ପୌରାଣିକ ଆଖ୍ୟାନ ଯୋଡ଼ି କାବ୍ୟଗୁଡ଼ିକର ମର୍ଯ୍ୟାଦା ରକ୍ଷା କରିଛନ୍ତି ।

ଭଞ୍ଜ ସାହିତ୍ୟ ତ ନାନା ରାଗରାଗିଣୀଯୁକ୍ତ । ସାଙ୍ଗୀତିକ ବିଭବରେ ପରିପୂର୍ଣ୍ଣ । ଭଞ୍ଜଙ୍କୁ ସଙ୍ଗୀତ ସମ୍ରାଟ କୁହାଯାଏ । ସେ ତାଙ୍କ କାବ୍ୟ କବିତାରେ ଅନେକ ରାଗରାଗିଣୀର ବ୍ୟବହାର କରିଛନ୍ତି । ମଙ୍ଗଳଗୁଜ୍ଜରୀ, କେଦାର, ଚକ୍ରକେଳି, ମାଳବ, ମଙ୍ଗଳବରାଡ଼ି, ମୁନିବର ବାଣୀ, ଗୁଜ୍ଜରୀ, ବସନ୍ତ, ଦେଶାକ୍ଷ, ମଙ୍ଗଳ, କଉଶିକ, ଶଙ୍କରାଭରଣ, ଆଷାଢ ଶୁକ୍ଳ, କାମୋଦୀ, ଘଣ୍ଟାରବ, ନଳିନୀଗୌଡ଼ା, ଚିନ୍ତାକୌଶିକ, କାଳୀ, ରାମକେରୀ, କଳହଂସକେଦାର, ଭୂପାଳ, କନ୍ନଡ଼ା, କଲ୍ୟାଣଆହାରୀ, ଚିନ୍ତାଭୈରବ, କାଫିକାମୋଦୀ, ମାଳବରାଡ଼ି, କୁମ୍ଭକାମୋଦୀ, ବସନ୍ତବରାଡ଼ି, ପାହାଡ଼ିଆକେଦାର, ବିଚିତ୍ର ଦେଶାକ୍ଷ, ଚିନ୍ତାବରାଡ଼ି

ପଞ୍ଚମବରାଡ଼ି, କଳସାବାଣୀ, ଭାଟିଆରୀ ଇତ୍ୟାଦି ବହୁ ରାଗରାଗିଣୀରେ ଯୁକ୍ତ ହୋଇ ଭଞ୍ଜ କାବ୍ୟ-ଭାରତୀ ସଙ୍ଗୀତମୟ ହୋଇ ପାରିଛି । ସତରେ ଭଞ୍ଜ ସାହିତ୍ୟର ଅପୂର୍ବ ସାଙ୍ଗୀତିକ ବିଭବ ଯୁଗଯୁଗ ଧରି ଓଡ଼ିଶାର ଜନମାନସକୁ ହରଣ କରୁଅଛି । ଶବ୍ଦ ବିଭବ ଓ ଭାଷାର ଦୁର୍ବୋଧ୍ୟତା ସତ୍ତ୍ୱେ ଏହା ଶାଳିକ୍ଷେତ୍ରର କୃଷକ, ନୃତ୍ୟପୁରର ବାରାଙ୍ଗନା, ପଥର ପଥିକ ଓ ସଭାର ପଣ୍ଡିତ ସମସ୍ତଙ୍କ ଦ୍ୱାରା ଆଦୃତି ଲାଭ କରିଛି । (୨୦)

ଉପେନ୍ଦ୍ର ଥିଲେ ଶ୍ରେଷ୍ଠ ଆଳଂକାରିକ କବି । ତାଙ୍କର ସମସ୍ତ କାବ୍ୟରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ପ୍ରୟୋଗରେ ନୈପୁଣ୍ୟ ପ୍ରକଟିତ । ଅର୍ଥୀଜନ ପ୍ରକରଙ୍କୁ ଆନନ୍ଦ ଦେବାପାଇଁ ଉପେନ୍ଦ୍ର ବହୁ ଅଳଂକାରର ବିନ୍ୟାସ କରିଛନ୍ତି । ବୋଧହୁଏ ଭାତବର୍ଷରେ କାବ୍ୟରେ ଅଳଙ୍କାର ପ୍ରୟୋଗରେ ସେ ଥିଲେ ଅଦ୍ୱିତୀୟ କବି । ଉପେନ୍ଦ୍ର ସାହିତ୍ୟରେ ଅନୁପ୍ରାସ, ଯମକ (ଆଦ୍ୟ, ମଧ୍ୟ, ପ୍ରାନ୍ତ, ଆଦ୍ୟ-ପ୍ରାନ୍ତ, ମାଳଯମକ, ସର୍ବଯମକ, ଯୋଡ଼ି-ଯମକ, ମହାଯମକ) ସିଂହାବଲୋକନ, ଲୋମ ବିଲୋମ, ବକ୍ରୋକ୍ତି, ଏକାକ୍ଷର, ଦ୍ୱିଅକ୍ଷର, ସଓଷ୍ଠକ, ନିରୋଷ୍ଠକ, ମଣ୍ଡୁକପ୍ଲୁତି, ମେଷଯୁଦ୍ଧ, ଉପମା, ଅସମ, ପ୍ରତୀପ, ଉଲ୍ଲେଖାଳଙ୍କାର, ଭ୍ରାନ୍ତିମାନ ଅଳଙ୍କାର, ପର୍ଯ୍ୟାୟୋକ୍ତି, ଆକ୍ଷେପ, ଅସମ୍ଭବ, ବିଷମ, ଯଥାସଂଖ୍ୟା, ସାମାନ୍ୟ, ଉନ୍ମୀଳିତ, ବିଶେଷ, ସଙ୍କର, ବ୍ୟତିରେକ, ବିଭାବନା, ବିରୋଧାଭାସ, ଅନ୍ତର୍ଲିପିକା, ବହିର୍ଲିପିକା, ବ୍ୟାଘ୍ରଗତି, ଶୃଙ୍ଖଳା, ବ୍ୟାଜୋକ୍ତି, ଅତ୍ୟୁକ୍ତି, ଅନ୍ୟୋନ୍ୟ ଅଳଂକାର ଇତ୍ୟାଦିର ବିନ୍ୟାସ ଦେଖିବାକୁ ମିଳେ । ସେଥିପାଇଁ ତ କତିପୟ ସମାଲୋଚକ ଉପେନ୍ଦ୍ରଙ୍କ ଯୁଗକୁ ଅଳଙ୍କାର ଯୁଗ ଏବଂ ଉପେନ୍ଦ୍ରଙ୍କୁ ଶ୍ରେଷ୍ଠ ଆଳଙ୍କାରିକ କବି ଭାବରେ ବିଚାର କରିଛନ୍ତି ।

ଉପେନ୍ଦ୍ରଙ୍କ କବିତ୍ୱର ଆଉ ଗୋଟିଏ ବିଶିଷ୍ଟ ଦିଗ ହେଉଛି ଶୃଙ୍ଗାରୀକତା । ଉପେନ୍ଦ୍ର ଥିଲେ ଶୃଙ୍ଗାରି କବି । ସେ ଶୃଙ୍ଗାର ରସର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି । କବି ଲେଖିଛନ୍ତି-

"ନବ ରସରେ ସାର ଆଦ୍ୟେ ଲେଖି ଶୃଙ୍ଗାର ।" (୨୧)

ଉପେନ୍ଦ୍ର ତ ସ୍ୱୟଂ ଘୋଷଣା କରିଛନ୍ତି-

"ବିଚାରଇ କରିବି ଉତ୍ତମ ଛାନ୍ଦଗୀତ
ରସସାର ଶୃଙ୍ଗାର ତହିଁରେ ହେବ ସ୍ଥିତ ।
ବାତ୍ସ୍ୟାୟନ ଋଷିଙ୍କୁ ଏ ରସ ଗୋଚର
ଗୀତେ କହେ ଉପଇନ୍ଦ୍ର ଭଞ୍ଜ ବୀରବର । (୨୨)

ଶୃଙ୍ଗାର ରସକୁ ଶ୍ରେଷ୍ଠରସ ସ୍ୱରୂପ ମାଘ, ଶ୍ରୀହର୍ଷ, ଭବଭୂତି, ଜୟଦେବ, ଭୋଜରାଜ ପ୍ରଭୃତି କବିମାନେ ଗ୍ରହଣ କରିଛନ୍ତି । ଶୃଙ୍ଗାର ରସ ହେଉଛି ଆଦିରସ, ମଧୁରରସ, ପୁଣି ଉଜ୍ଜ୍ୱଳ ରସ । ତେଣୁ ଉପେନ୍ଦ୍ର କହିଛନ୍ତି-

"ଉଜ୍ଜ୍ୱଳ ଉଜ୍ଜ୍ୱଳ ରସେ ଗୀତ ହୋଇବ
ମାନସ ମାନସ ହଂସ ପ୍ରାୟେ କ୍ରୀଡ଼ିବ । (ପ୍ରେମସୁଧାନିଧି)

ଧ୍ୱନ୍ୟାଲୋକ ଗ୍ରନ୍ଥରେ ଉଲ୍ଲେଖ ଅଛି-

'ଶୃଙ୍ଗାର ଏବ ମଧୁରଃ ପରପ୍ରହ୍ଲାଦରସଃ ତନ୍ମୟଂ କାବ୍ୟମାଶ୍ରିତ
ମାଧୁର୍ଯ୍ୟଂ ପ୍ରତିତିଷ୍ଠତେ ।''

ଭୋଜରାଜ ଲେଖିଛନ୍ତି-

''ଶୃଙ୍ଗାରୀଚେତ୍ କବିଃ କାବ୍ୟଜାତଂ ରସମୟଂ ଜଗତ୍ ।''

ଏହି ମହାନ କବିଗଣଙ୍କ ପଦାଙ୍କ ଅନୁସରଣ କରି କବି ଉପେନ୍ଦ୍ର ଶୃଙ୍ଗାର ରସର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ନାୟକ ଓ ନାୟିକାର ପ୍ରେମ, ବିରହ, ମିଳନ ସମ୍ପର୍କିତ ଚିତ୍ର ତାଙ୍କ କାବ୍ୟକୃତିରେ ଚିତ୍ରିତ । ନାରୀର ଶ୍ରେଷ୍ଠତା ପ୍ରତିପାଦନରେ ଉପେନ୍ଦ୍ର ବେଶ୍ ଯତ୍ନବାନ୍ । ସେ ଲେଖିଛନ୍ତି-

'କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦେ ଯେ
ସ୍ତିରୀହୀନଠାରୁ ପାପୀ ନାହିଁ ମହୀ ଦେଶେ ଯେ ।'

ଉପେନ୍ଦ୍ର ଏକପତ୍ନୀ ବ୍ରତର ନିଷ୍ଠାପର ପ୍ରବକ୍ତା ଥିଲେ । ସେ ତ ଥିଲେ ବିଶିଷ୍ଟ ସାଧକ । ନୈତିକ ଜୀବନର ସେ ପଥଚାରୀ ଥିଲେ । ଉପେନ୍ଦ୍ର ତେଣୁ ଲେଖିଛନ୍ତି-

'ପରଦ୍ରବ୍ୟ ପରସ୍ତିରୀ ହରଣକୁ
ଲେଖୁ ଶୁଭକରି ତହୁଁ ମରଣକୁ ।' (୨୩)

'ବୈଦେହୀଶ ବିଳାସ'ର ସେହି ବହୁ ଚର୍ଚ୍ଚିତ ମଧୁଶଯ୍ୟା ପ୍ରସଙ୍ଗଟି ମଧ୍ୟ ଏକପତ୍ନୀ ବ୍ରତ ସମ୍ପର୍କରେ ଯଥେଷ୍ଟ ସୂଚନା ଦେଇଥାଏ । (୨୪) ସେହିପରି ଉପେନ୍ଦ୍ର ଅନ୍ୟତ୍ର କହିଛନ୍ତି-

'ମିଥିଳା ନବ ସଙ୍ଗମ          କାଳେ ଯେ କଲେ ନିୟମ
          ଏକପତି ଏକପତ୍ନୀ ବ୍ରତ
ଜଗତେ ସେହୁ ଦମ୍ପତି          ସାଧୁଙ୍କ ସୁଖ ସମ୍ପତ୍ତି
          ମଧୁର ଆକୃତି ଆଲୋକିତ ସେ ।
   ତାଙ୍କ ପାଦ । ମହା ବିପତ୍ତିକୁ ନାଶ କରେ
   ଚିତ୍ତେ ଚିନ୍ତି ଉପଇନ୍ଦ୍ର          ଭଞ୍ଜ ପରମ ଆନନ୍ଦ
          କହେ ରସିକ ଜନଙ୍କ ହିତ ହେ ।' (୨୫)

ଉପେନ୍ଦ୍ର ତାଙ୍କ କାବ୍ୟଭାରତୀରେ ପ୍ରେମର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି । ତାଙ୍କ ମତରେ ପ୍ରେମ ଦିବ୍ୟ, ଶାଶ୍ୱତ, ନୈସର୍ଗିକ ଓ ଦୁର୍ଲଭ । ଦାମ୍ପତ୍ୟ ପ୍ରେମଠାରୁ ବଡ଼ ଜିନିଷ କିଛି ନାହିଁ । ତେଣୁ ଅନୁଭବୀ ଉପେନ୍ଦ୍ର ଲେଖିଛନ୍ତି-

(କ) 'ମହାସୁଖ ନାହିଁ ଦମ୍ପତିରୁ । କି କାର୍ଯ୍ୟ କୁବେର ସମ୍ପତ୍ତିରୁ
ଜୀବନ ଯିବାର ବଡ଼ ତ ନୁହଇ ଯୁବାଙ୍କୁ ଯୁବତୀ ବିଚ୍ଛେଦରୁ ।

ପରମ ପଦାର୍ଥ ପୀରତିରୁ । ବଡ଼ ହୋଇ ସୁଖ ସୁରତିରୁ
ନାହିଁ ନଥିବ ନୋହିବ ସର୍ବମତେ ତହିଁକି ପ୍ରତି କାରଣ ଭୀରୁ ।
ରତି ହୋଇ ଯେଉଁ ଦ୍ଵି ଅକ୍ଷର । ପାଶୋର ଯିବାକୁ ପଞ୍ଚଶର
ନିଜ ବଲ୍ଲଭୀ ନାମ ତାହା ଦେଇଛି ଏଣୁ ସେ ନାଗର ଗଣେ ସାର ।

(ର.ହା- ଅଷ୍ଟମଛାନ୍ଦ)

(ଖ) 'ପ୍ରୀତି ହୋଇ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷା ପୁଣି ହୁଏ ବିଧୁର
ପୁଣି ଦଇବେ ହୋଇଲେ ଦମ୍ପତି
ପଦ ତଳେ ମିଳେ ଇନ୍ଦ୍ର ସମ୍ପତ୍ତି ।' (ର.ହା)

(ଗ) 'ଜବାଧରୀ' ଦେହ ଇତର ନୁହଇ ଯୁବା ବଇକୁଣ୍ଠ ପୁର
ପରମ ପଦବୀ ଏମନ୍ତ ହୋଇଲେ ଭୋଗ ନୋହିବ କି ମୋର । (ଲା.ବ)

(ଘ) 'ବାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ ସମସ୍ତ ପ୍ରକାରେ ମୁହିଁ
ମୋ ଜୀବନ ପାଇ ଜୀଇଥାଉ ପଛେ ଶରଦ ଚନ୍ଦ୍ରମା ମୁହିଁ ।' (ଲା.ବ)

(ଙ) ଥିବ ଦିବ୍ୟରାମା ମୋହିବାକୁ । ବରଥିବ ଦୂର ନୋହିବାକୁ
ଯେ ଅର୍ଜିଅଛି ଏ ଦୁର୍ଲ୍ଲଭ୍ୟ ସୁଲଭ ଦୁର୍ଲ୍ଲଭ୍ୟ ତା' ପୁଣ୍ୟ କହିବାକୁ ।
ବାନ୍ଧବୀ ପାଶରେ ଥାଉଁ । ତା' ପଦ୍ମମୁଖକୁ ଚାହୁଁ ଚାହୁଁ
ଯେଉଁ ପୁରୁଷ ପ୍ରାଣତ୍ୟାଗ କରିଛି, ତା'ସମ ସୁକୃତି କାହିଁ ଆଉ । (ର.ହା)

(ଚ) ରସିକ ମଧ୍ୟେ ନିଶ୍ଚୟେ ସାର । ଜଗତପ୍ରଭୁ ରଥାଙ୍ଗଧର
କାମିନୀଟିଏ ଏଡ଼େବୋଲି କମଳାଙ୍କୁ କରି ନପାରନ୍ତି କ୍ଷଣେ ଦୂର ।
ମହାଯୋଗୀ ଜାଣ ମହାଦେବ । ତାଙ୍କୁ କେ ବଡ଼ ସଂସାରେ ଥିବ
ଯୁବତୀ ଏମନ୍ତ ଅର୍ଦ୍ଧଅଙ୍ଗକରି ଛାଡ଼ି ନପାରିଲେ ଏକ ଲବ ।' (ର.ହା)

ଆଧ୍ୟାତ୍ମିକତା ଉପେନ୍ଦ୍ର ସାହିତ୍ୟର ଅନ୍ୟ ଏକ ବିଶିଷ୍ଟ ଦିଗ । ସେ ତାଙ୍କ କାବ୍ୟଗୁଡ଼ିକର ମଙ୍ଗଳାଚରଣ କିମ୍ବା ଭକ୍ତି ରସାତ୍ମକ ପ୍ରସଙ୍ଗରେ ତାଙ୍କର ଉପାସ୍ୟ ଦେବତା ଶ୍ରୀରାମଚନ୍ଦ୍ରଙ୍କ ସହିତ ଶ୍ରୀଜଗନ୍ନାଥ, ଶ୍ରୀକୃଷ୍ଣ, ବଳରାମ, ପର୍ଶୁରାମ, ଶିବ, ବ୍ରହ୍ମା, ବିଷ୍ଣୁ, ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ଦେବତାଙ୍କୁ ଭକ୍ତି ଭାବାତ୍ମକ ହୃଦୟରେ ସ୍ତୁତି କରିଛନ୍ତି । ସେ ଶ୍ରୀରାମ ଓ ଶ୍ରୀଜଗନ୍ନାଥଙ୍କୁ ଏକ ଓ ଅଭିନ୍ନ ଭାବରେ ବିଚାର କରିଥିଲେ । ଶ୍ରୀଜଗନ୍ନାଥଙ୍କ ମହିମା ପ୍ରତିପାଦନ କରିବାରେ ସେ ବେଶ ସଫଳତା ଲାଭ କରିଛନ୍ତି । ଉପେନ୍ଦ୍ର ଲେଖିଛନ୍ତି-

''ସେ କମ୍ବୁକଟକ ରାଜା ନାମ ଜଗନ୍ନାଥ
ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ

ଭକ୍ତିଦେବୀ ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବିହୀନେ କେବା ଜାଣିବ ସଂସାରେ ହେ ।
ପାଦେ ବନ୍ଦେ ସାର୍ବଭୌମ ବୋଲିବା କି ଯଶ
ବୃଷାସନଙ୍କର ଶିର ଲାଗିବାକୁ ଆଶ ହେ ।'' (୨୬)

x x x

''ଯାହା କଟାକ୍ଷ କୁଠାର ପତନ ମାତରେ
ଅନେକ ଦୁଃଖ-ଅନୋକହକୁ ଛେଦିପାରେ ।
ସେହି ପାଦ ପଦ୍ମାସନୀ ପାଟ ମହାଦେବୀ
ଅଷ୍ଟ ଐଶ୍ୱର୍ଯ୍ୟ ଦାୟିନୀ ଅଷ୍ଟ ଶକ୍ତି ସେବି ।
ଭରସା କରି ଆସନ୍ତି ଦୂର ଦେଶୁ ପ୍ରାଣୀ
ଆରତ ଭଞ୍ଜନ ଦୀନବନ୍ଧୁ ନାମ ଶୁଣି ।
କର ଯୋଡ଼ି ଛାମୁରେ ଜଣାଇ ପକ୍ଷୀଧବ
ଆର୍ତ୍ତଜନ ଗୁହାରିକି ସାବଧାନ ହେବ ।'' (୨୭)

କବି ଉପେନ୍ଦ୍ର 'ରସଲେଖା' କାବ୍ୟର ପ୍ରଥମ ଛାନ୍ଦରେ ହରି ଓ ହରଙ୍କୁ ଅତ୍ୟନ୍ତ ଭକ୍ତି ତଦ୍‌ଗଦ ହୃଦୟରେ ଯେପରି ବନ୍ଦନା କରିଛନ୍ତି ତାହା ଏକାନ୍ତ ହୃଦ୍ୟ । ଏଥିରେ ମଧ୍ୟ ତାଙ୍କର କବି ଋତୁର୍ଯ୍ୟ ପରିଲକ୍ଷିତ ହୋଇଥାଏ । (୨୮)

ପ୍ରକୃତି ବର୍ଣ୍ଣନା, ଷଡ଼ଋତୁବର୍ଣ୍ଣନା, ସନ୍ଧ୍ୟା ବର୍ଣ୍ଣନା, ପ୍ରାତଃ ବର୍ଣ୍ଣନା, ଚନ୍ଦ୍ରିନୀ ନିଶା ବର୍ଣ୍ଣନା, ସମୁଦ୍ର ବର୍ଣ୍ଣନା, ନଦୀ ବର୍ଣ୍ଣନା, ପର୍ବତ ବର୍ଣ୍ଣନା, ସରୋବର ବର୍ଣ୍ଣନା, ଆକାଶ ବର୍ଣ୍ଣନାରେ ଉପେନ୍ଦ୍ର ସଫଳତା ଲାଭ କରିଛନ୍ତି । କବିଙ୍କ ବର୍ଣ୍ଣନାରେ ମଧ ମାନବ ଓ ପ୍ରକୃତି ଏକ ପର୍ଯ୍ୟାୟଭୁକ୍ତ । କବି ନାୟିକାର ନଖଠାରୁ ଶିଖ ବର୍ଣ୍ଣନା ରୀତିରେ ପ୍ରକୃତିକୁ ରୂପାୟିତ କରିଛନ୍ତି । ଯଥା-

''ନାରୀ ନଦୀ ବାରି ନୋହିଲେ ତହିଁ ଘଡ଼ିଏ ଯାଏ
ହାସ କୁମୁଦ ନେତ୍ରମୀନ ମୁଖ କମଳ ପ୍ରାୟେ ।
ଜଘନ ପୁଳିନ ଉରଜ ଚକ୍ରବାକ ମିଥୁନ
ରୋମାବଳି ଆଳି ଆବଳୀ ଗତି ହଂସ ସମାନ ।
ଉଦର କମଳ ପଳାଶ ନାଭି ଜଳ ଭଉଁରୀ
କର କୋକନଦ ସୁବାହୁ ଯହିଁ ମୃଣାଳ ସରି ।'' (୨୯)

ସନ୍ଧ୍ୟା ବର୍ଣ୍ଣନାରେ କବିଙ୍କର ଅପୂର୍ବ କଳା କୁଶଳତା ଲକ୍ଷ୍ୟ କରାଯାଏ । କବି ଲେଖିଛନ୍ତି-

''ବିଧୁନ୍ତୁଦ ପ୍ରାୟ ହୋଇ ସନ୍ଧ୍ୟା ଆସିଲା
ବିବସ୍ୱାନ ଗ୍ରାସୀ ରଙ୍ଗ ଭାବ ଦିଶିଲା ।

ବାଳୀ ସେ କାଳୀ ପିଧାନୀ କି ପାଟ ଶାଢ଼ୀ
ବହିଲେ କି ସରସ୍ୱତୀ କାଳିନ୍ଦୀ ଜଡ଼ି ।
ବନଢ଼ାରି କର କିଛି ଆସିଲା ଦିଶି
ବାରୁଣୀ ତ୍ରିବେଣୀ ଘାଟେ ପଡ଼ିଲା ଘୋଷି
ବିସ୍ତୃତ ପକ୍ଷେ ଦିବାନ୍ଧ ପ୍ରମୁଖ ଦ୍ୱିଜେ
ବିକାଶୀ ଶ୍ଳୋକବାଣୀ କି ବିହାରେ ମଜ୍ଜେ ।'' (୩୦)

ସେହିପରି କବିଙ୍କ ଲେଖନୀରେ ପ୍ରାତଃ ବର୍ଣ୍ଣନା ମଞ୍ଜୁଳ ଭାବରେ ରୂପ ନେଇଛି । (୩୧) କବିଙ୍କର ପ୍ରସିଦ୍ଧ କାବ୍ୟ 'ବୈଦେହୀଶ ବିଳାସ'ର ଊନବିଂଶ ଛାନ୍ଦରେ ମାଳଯମକ ଅଳଙ୍କାର ଦ୍ୱାରା କବି ଉପେନ୍ଦ୍ର ବନର ଯେଉଁ ଫଟୋଚିତ୍ର ବର୍ଣ୍ଣନା କରିଛନ୍ତି, ତାହା ଅନନ୍ୟସାଧାରଣ । ଏଥିରୁ କବିଙ୍କର ଶବ୍ଦ ସଂଯୋଜନାରେ ଚାତୁର୍ଯ୍ୟ ଲକ୍ଷ୍ୟ କରିହୁଏ । (୩୨) ଉପେନ୍ଦ୍ରଙ୍କ ବର୍ଣ୍ଣନାରେ ବନଭୂମି ଜୀବନ୍ତ ହୋଇଛି । ମେଘ ପ୍ରବଳ ଭାବରେ ଜଳକଣା ବର୍ଷିଲାପରି ମହୁଲ ଗଛ ଅତି ମଧୁର ମକରନ୍ଦ କଣା ସୃଷ୍ଟି କରୁଅଛି । ଗୁଡତ୍ୱକ୍ ଓ ଭୃଙ୍ଗରାଜ ବୃକ୍ଷ ଅତି ସୁନ୍ଦର ଦେଖାଯାଉଛି । ସେଠାରେ ଭ୍ରମରମାନେ କ୍ରୀଡ଼ା କରୁଅଛନ୍ତି । ଉକ୍ତ ବନରେ ଅସଂଖ୍ୟ ଫୁଲ ଫୁଟି ଥିବାରୁ ସୁନ୍ଦରୀ ନାରୀ ସହାସ ବଦନରେ ଛିଡ଼ା ହୋଇ ଥିଲାପରି ଦେଖା ଯାଉଅଛି । କବିଙ୍କ ଭାଷାରେ-

''ବିଞ୍ଚେ ଘନ ଘନ ଘନ କୁଶକଣ ଯଥା
ବୃଷ୍ଟି ମଧୁର ମଧୁର ମଧୁରଯେ ତଥା ଯେ ।
ବିଭ୍ରାଜିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି
ବନୀ ବନୀ ବନିତାକି ପୁଷ୍ପହାସେ ଝଳି ଯେ ।'' (୩୩)

ଉପେନ୍ଦ୍ର ସାହିତ୍ୟରେ ଲୋକ ସଂସ୍କୃତି ଓ ଲୋକାଚାରର ବ୍ୟାପକ ବର୍ଣ୍ଣନା ରହିଛି । ତତ୍କାଳୀନ ଲୋକଉତ୍ସବ, ଓଷା, ବ୍ରତ, ପର୍ବ, ବୋଇତ, ବାଣିଜ୍ୟ, ଜନ୍ମୋତ୍ସବ ଏବଂ ସମସ୍ତ ବିଧିବିଧାନ, ବିବାହ, କନ୍ୟାଦାନ, ବିବାହ ସମୟରେ କୋକିଳସ୍ନାନ, ଲବଣ ଚଉଁରୀ, ମଙ୍ଗଳ ଗୀତିକା, ଲାଜାହୋମ, ଶଙ୍ଖରେ ଜଳଦାନ ଇତ୍ୟାଦି ବିଧି ବିଧାନ ଉପେନ୍ଦ୍ର ବର୍ଣ୍ଣନା କରିଛନ୍ତି । ତତ୍କାଳୀନ ସମାଜର ବସନ ଭୂଷଣ, କେଶବିନ୍ୟାସ, ପ୍ରଶାଧନ ସାମଗ୍ରୀର ବର୍ଣ୍ଣନା ମଧ୍ୟ ଉପେନ୍ଦ୍ର ପ୍ରଦାନ କରିଛନ୍ତି । ମାଳିନୀର କେଶବିନ୍ୟାସ ଏହାର ଉତ୍କୃଷ୍ଟ ଉଦାହରଣ । (୩୪)

ତତ୍କାଳୀନ ସମାଜରେ ବିବାହ ବିଧାନ ଅତ୍ୟନ୍ତ ପବିତ୍ର ଥିଲା । କନ୍ୟା ଶାଶୁଘରକୁ ଯିବାବେଳେ କନ୍ୟାର ଭାଇ ଛାଡ଼ିଯିବା ପ୍ରଥା ପ୍ରଚଳିତ ଥିଲା । ନବବଧୂର ଯାତ୍ରା, ଶାଶୁ ନଣନ୍ଦଙ୍କ ପ୍ରତି ନବବଧୂର ସମ୍ମାନ, ପୁରୋହିତଙ୍କ ସାମୟିକ ଉପଦେଶ ଓ ବେଦପାଠ, ନାପିତ ଓ ନାପିତୁଣୀଙ୍କ କାର୍ଯ୍ୟ, ମଧୁଶଯ୍ୟା ଇତ୍ୟାଦିର ଚିତ୍ର ଉପେନ୍ଦ୍ରଙ୍କ ସାହିତ୍ୟରେ ରହିଛି ।

ତତ୍କାଳୀନ ରାଜ ପରିବାର ଜୁଡ଼ାରେ ପାଟଡୋର ବାନ୍ଧିବା, ଚୂଡାରେ ଅତର ସିଞ୍ଚିବା, ଚନ୍ଦନ କର୍ପୂର ମାଖିବା, ସିନ୍ଦୂର, ତିଳକ ଲଗାଇବା, କିଆପତ୍ରୀ ଓ ଚନ୍ଦ୍ରଝୁମା ଠାରୁ ପାଦବଳା ପର୍ଯ୍ୟନ୍ତ ସମସ୍ତ ଅଳଙ୍କାର ଲଗାଇବା ପରମ୍ପରା ପ୍ରଚଳିତ ଥିଲା । ସେ ସମୟରେ ରାଜପରିବାରରେ ଯୌତୁକ ପ୍ରଥା ପ୍ରଚଳିତ ଥିଲା ।

''ଯଉତୁକ ସମ୍ଭାର ଘେନାଇ ସଚିବକୁ
ପ୍ରେଷିତ କଲେ ତ୍ୱରିତ କୁମାର ପାଶକୁ ଯେ ।
ରହିଁ ସେ ସମ୍ଭାର ଯୁବରାଜ ହୋଇ ତୋଷ
ଦେଇଛି ଧନଦ-କୋଷ ପରି ରତ୍ନକୋଷ ଯେ ।
କରୀହୟ ହରି ହୟ ଯାନ ସମାନରେ
ଲକ୍ଷ ସଂଖ୍ୟକ ଦେଇଛି ସହଜ ଚିତ୍ତରେ ଯେ ।
କାମଧେନୁ ପରି ଧେନୁ ସବତ୍ସା କରିଣ
କୋଟି ପରିମିତ ଘେନିଛନ୍ତି ବ୍ରଜଗଣ ଯେ ।
କଥା କୁହା ପିକ ଶୁକ ସାରିକା ଅନେକ
ଅଶେଷ ମଞ୍ଜୁଷ ଚର୍ମ ଆଡେଣୀ ସାୟକ ଯେ ।X X X
ଏ ବିଧିରେ ପଦାର୍ଥ ସମର୍ପି ଜଣାଇଲା
ସଭୂଷଣ କରି ଦାସୀ ସହସ୍ରେକ ଦେଲା ଯେ ।' (୩୫)

କନ୍ୟା ପୁଷ୍ପବତୀ ହେବାପରେ ବିରିଉଳ ଗଡ଼ାଇବା, ଲୁଗା ବେଢ଼ାରେ କୁମାରୀକୁ ଯତ୍ନରେ ରଖିବା, ସାତକୁମ୍ଭବାଢ଼ି, ସାତଦୀପ ଜାଳି, ସାତଦିନପରେ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ କରିବା ଇତ୍ୟାଦି ସେ ସମୟରେ ପ୍ରଚଳିତ ଥିଲା । ସାଧବମାନେ ରାଜ୍ୟରେ ବାଣିଜ୍ୟ ବ୍ୟବସାୟର ପ୍ରଚଳନ କରୁଥିଲେ । ରାଜ୍ୟରେ ବାଣିଜ୍ୟ ବିପଣନର ପ୍ରଧାନ କେନ୍ଦ୍ରରୂପେ ହାଟ ପ୍ରଚଳିତ ଥିଲା । ତେଣୁ କବି ଲେଖିଛନ୍ତି-

''ହାଟକ ଝଟକ ସରିବାର ନୁହଇ
ଜନନୀ ଜନକ ଛାଡ଼ି ସବୁ ମିଳଇ ।''

ମୃଗୟା ବିନୋଦନ, ରାଜ୍ୟଜୟ କରିବା ତତ୍କାଳୀନ ରାଜଦରବାରର ଅଭିଳାଷ ଥିଲା । 'ଲାବଣ୍ୟବତୀ' କାବ୍ୟରେ ମୃଗୟା ବିହାର ଓ ଚନ୍ଦ୍ରଭାନୁଙ୍କ ଯୁଦ୍ଧଯାତ୍ରାର ବର୍ଣ୍ଣନା ରହିଛି । କୃଷକ, ଶବର ପ୍ରଭୃତିଙ୍କ ଜୀବନଯାପନ ପ୍ରଣାଳୀର ଚିତ୍ର ଭଞ୍ଜ କାବ୍ୟରେ ରହିଛି । କୃଷକମାନଙ୍କର କର ପ୍ରଦାନ, ଜ୍ୟୋତିଷ ଶାସ୍ତ୍ର ଉପରେ ଲୋକ ବିଶ୍ୱାସ, ନାରୀଶିକ୍ଷା ପାଇଁ ଆଗ୍ରହ, କେଳା ଓ ନଟମାନଙ୍କର ବିଭିନ୍ନ କୌଶଳ ପ୍ରଦର୍ଶନ ଇତ୍ୟାଦି ସାମାଜିକ ଚିତ୍ର ଭଞ୍ଜ ସାହିତ୍ୟରେ ଭାସ୍ୱର । ସେହି ସମୟରେ ସିଂହଳ ଦ୍ୱୀପ ସହିତ ଉତ୍କଳର ବାଣିଜ୍ୟ ସଂପର୍କ ଥିଲା ବୋଲି ଜାଣିହୁଏ । ଦୃଷ୍ଟାନ୍ତ ସ୍ୱରୂପ-

''ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ
ସାଧବ ଯୁବତୀମାନେ ଅତି ପ୍ରମୋଦରେ
ଗଲେ ବହିତ୍ର ବନ୍ଦାଇ
ଅର୍ଘ୍ୟସ୍ଥାଳୀମାନ କରେ ହୁଳ ହୁଳି ଦେଇ ।'' (୩୬)

ସେହିପରି ମଧ୍ୟ କବି ଲେଖିଛନ୍ତି ସିଂହଳ ଦ୍ୱୀପରୁ ବୋଇତିଆଳ ମାନେ ବାଣିଜ୍ୟ ପାଇଁ ଉତ୍କଳକୁ ଆସୁଥିଲେ-

''ଏହି କାଳେ ଜଣାଇଲା ବେତ୍ରକର
ଆସି ବୋହିତିଆଳ କେ ଅଛି ଦ୍ୱାର
ବୋଲେ ସିଂହଳ ଦ୍ୱୀପୁ ଆସିଅଛି ମୁହିଁ
ଇଚ୍ଛା ମୋର ଯୁବରାଜ ଭେଟ ପାଇଁ ।'' (୩୭)

ସେହିପରି କବି ଉପେନ୍ଦ୍ର 'ଲାବଣ୍ୟବତୀ' କାବ୍ୟରେ ସିଂହଳ ଦେଶରୁ ଆନୀତ ବିବିଧ ମଣିମୁକ୍ତା, ହୀରାନୀଳା ଇତ୍ୟାଦିର ବର୍ଣ୍ଣନା କରିଛନ୍ତି ।

''ଶିରେ କର ଦେଇ ଭେଟି ଏତେ ଦ୍ରବ୍ୟ
ଦେଲା ପ୍ରମୋଦ ଚିତ୍ତରେ ସେ ସାଧବ ।
ମେଷ ଚକ୍ଷୁ ନୀଳା, ବଜ୍ର ଜାତି ହୀରା
ତାର ମୁକୁତା କୁକ୍କୁଟ ଡିମ୍ବ ପରା
ଅଛି ସୁମାଣିକ୍ୟ ପଦ୍ମରାଗ ଜାତି
ଅଷ୍ଟଚକ୍ର ପ୍ରବାଳ ହିଁ ପନ୍ତି ପନ୍ତି
ଚନ୍ଦ୍ରକାନ୍ତ ପାଷାଣ ନୀଳେନ୍ଦ୍ରି ମଣି
ଲକ୍ଷ୍ମୀ ନାରାୟଣ ଶିଳା ନୋହେ ଗଣି । (୩୮)

ଉପେନ୍ଦ୍ର ଥିଲେ ଶ୍ରେଷ୍ଠ ସଙ୍ଗୀତକାର । ଉପେନ୍ଦ୍ର ଅନେକ ସଙ୍ଗୀତର ସ୍ରଷ୍ଟା । ତାଙ୍କ ସଙ୍ଗୀତ ଗୁଡ଼ିକ ମୁଖ୍ୟତଃ ଥିଲା ଶୃଙ୍ଗାରଭିତ୍ତିକ । ଭାଷା, ଭାବ, ରାଗ, ତାଳ ଦୃଷ୍ଟିରୁ ଉପେନ୍ଦ୍ରଙ୍କ ସଙ୍ଗୀତ ଗୁଡ଼ିକ ଅନନ୍ୟ । ଉପେନ୍ଦ୍ରଙ୍କର କେତୋଟି ବିଶେଷ ଲୋକପ୍ରିୟ ଶୃଙ୍ଗାରଭିତ୍ତିକ ସଙ୍ଗୀତର ଦୃଷ୍ଟାନ୍ତ-

(କ) ''ଆରେ ମଦାଳସା !
ଶେଷ ହୋଇଯାଉଥିଲା ଚନ୍ଦ୍ର ନିଶା ।
ନବ ନିଧୂବନ କେଳିକାଳେ
ନବ ସଙ୍କେତ ମୁଁ କଲାବେଳେ
ମାଣିକ୍ୟର ବତୀ ଜାଳି ଚଉକତି
ନାନା ପୁଷ୍ପଦଳେ ଖୋସି ଖୋଷା, ଆରେ ମଦାଳସା... ।

ଅଙ୍କେ ବସାଇଣ ତୋତେ ଧନ
ବୋଇଲି ମଣ୍ଡନା ତେଜମାନ
କଲି ସଙ୍ଗେ ପ୍ରୀତି ଆରେ ରସବତୀ
କ୍ଷୀର ନୀର ପ୍ରୀତି ଯେହ୍ନେ ମିଶା, ଆରେ ମଦାଳସା... ।''

(ଖ) ''ନକରରେ ରାମା ମାନ
କହୁଛି ବିନୟ ଘେନ, କିଣା ଜନଠାରେ ମାନ
କଲେ କି ହେବ ସମ୍ମାନ ?
ତୁ ମୋ ଗଳା ରତ୍ନମାଳା
ବାଳାରେ ନେତ୍ର ପିତୁଳା
କାମ ସିନ୍ଧୁରେ ମୋ ଭେଳା, ନ ବୁଡ଼ା ନବଛଇଳା, ନକରରେ ରାମାମାନ... ।''

(ଗ) 'କାନ୍ତ ବିନା ଦିବା ରଜନୀ ସଜନୀ
କୋଟି ଯୁଗ ସମ ହେଲାଟି ରେ
କାହିଁ ସେ ରହିଲେ କିମ୍ବା ନଇଲେ
ତେଣୁ କରି କାମ ଅନଳେ ଦହିଲେ ।
କିବା କେଉଁ ନାରୀ କି ମନ୍ତ୍ରେ ମୋହିଲେ
ସେ ଦେଶେ ମଦନ ମଲାଟିରେ ।'

(ଘ) 'ବସି କାନ୍ଦୁଥିବ ମାନିନୀ, ପ୍ରାଣ ସଜନୀ
ଅଗୁରୁ ଚନ୍ଦନ ବିଷ ତୁଲ୍ୟ ସେ ମଣୁଥିବଣି ।
ଗୁନ୍ଥିଣ ଗୟସ ହାର ପୂଜୁଥିବ ସେ ଶଙ୍କର
ମୋ ବିଚ୍ଛେଦେ ରାମାବର ଉଛନ୍ନ ସେ ହେବଣି ।
ବସିଥିବ ଚନ୍ଦ୍ରମୁଖୀ ଯେସନେ ଚାତକ ପକ୍ଷୀ
କାମେ ହେଉଥିବ ଦୁଃଖୀ ରଜନୀରେ ସଜନୀ ।
ଆସି ବସନ୍ତ ହୋଇଲା କି କରୁଥିବ ମୋ ବାଳା
ଉପଇନ୍ଦ୍ର ଭଞ୍ଜମାଳା ବସି ଜପୁଥିବଣି ।'

(ଙ) 'ରମଣୀରତନ ମେଘକୁ ଚାହିଁ
କହିବୁ ମେଘରେ କାନ୍ତକୁ ଯାଇ ।
ଏତେ ଦିନ କିମ୍ବା ବିଳମ୍ବ କଲେ
କାଲି ପରିକି କଷ୍ଟ କରିଥିଲେ ।
କରି ମୋତେ ପର
କି ବିଚାରୁଥିଲେ ବିନୁ ଅନ୍ତର ।

କଲାଣି ଘୋର ଦୁର୍ଦ୍ଦିନ ଚମକ
ନାଦ କଲେଣି କୋକିଳ ଡାହୁକ
କହିଥିଲେ ବନ୍ଧୁ ନିୟମ କରି
କେବେ ହେ ନ ଯିବେ ପ୍ରବାସ କରି
କି ବିଚାରି ମନ
କେଉଁ ନାରୀ ସଙ୍ଗେ ବଞ୍ଚିଲେ ଦିନ ।

x x x

ସତେ କି କରିବେ ହର-ଗଉରୀ
ପ୍ରବାସୁ ମୋ କାନ୍ତ ଆସିବେ ଫେରି
କରିବେ ଅଙ୍କ ପଲଙ୍କେ ଶୟନ
ସତେ କି ମୋ ଦୁଃଖ ହେବ ମୋଚନ
କରି ରସ କେଳି
ଭଣେ ଉପଇନ୍ଦ୍ର ଏ ରସେ ଭାଳି ।''

ପରିଣତ ବୟସରେ ଜଣେ ବୈଷ୍ଣବ ଭାବରେ ଉପେନ୍ଦ୍ରଙ୍କ ମନ ପୁରୁଷୋତ୍ତମ ଧାମକୁ ଉଡ଼ିଗଲା । ନୀଳାଦ୍ରିନାଥଙ୍କ ନିକଟରେ ସେ ନିଜକୁ ସମର୍ପଣ କରିଥିଲେ । 'ନୀଳାଦ୍ରୀଶ ଚଉତିଶା' ରେ ତାଙ୍କର ଜଗନ୍ନାଥପ୍ରାଣତାର ନିଛକ ଚିତ୍ର ରହିଛି । ଉପେନ୍ଦ୍ର ଭକ୍ତିପ୍ରବଣ ହୃଦୟରେ ଶ୍ରୀଜଗନ୍ନାଥଙ୍କୁ ନିବେଦନ କରିଛନ୍ତି-

''କ୍ଷମାନିଧିଙ୍କୁ ବାରେ କ୍ଷମ ମୁଁ ଦର୍ଶନରେ
କ୍ଷିତିଖ୍ୟାତିକୁ ସମର୍ପିଲି
କ୍ଷମ ମୋ ଅପରାଧ କ୍ଷମ ମୋ ଜୀବ ସାଧ
କ୍ଷାତ ଚରଣ ତଳେ ଦେଲି, ହେ ନୀଳାଦ୍ରୀଶ
କ୍ଷୟ ତ ହେଲାଣି ଏ ପିଣ୍ଡ
କ୍ଷାଳ ଏ ଜଞ୍ଜାଳର ଦଣ୍ଡ
ଖ୍ୟାତି ଏ ଉପେନ୍ଦ୍ରର ଭଞ୍ଜ କୁଳ ବେଭାର
କ୍ଷେମ ଚରଣେ ହେଉ ରୁଣ୍ଡ, ହେ ନୀଳାଦ୍ରୀଶ ।'' (୩୯)

ପୁନଶ୍ଚ କବି ଶ୍ରୀଜଗନ୍ନାଥଙ୍କ ନିକଟରେ ନିଜକୁ କାୟମନୋବାକ୍ୟରେ ସମର୍ପଣ କରିଛନ୍ତି । ଏହା ହିଁ ହେଉଛି ଜଣେ ନିରୋଳ ବୈଷ୍ଣବର ଆଚରଣ । କବିଙ୍କର 'ମାନ ଉଦ୍ଧାରଣ' ଏକ କାଳଜୟୀ ଭକ୍ତିଗୀତିକା । ଜଗନ୍ନାଥପ୍ରାଣ ଉପେନ୍ଦ୍ର ଭକ୍ତିପ୍ରବଣ ହୃଦୟରେ ଗାଇଛନ୍ତି-

''ମାନ ଉଦ୍ଧାରଣ କର ହେ କାରଣ
ଶରଣ ମୁଁ ତୁମ୍ଭ ପାଦତଳେ ।

ଅନାଥର ନାଥ ନୀଳଗିରି ନାଥ
ଜଗନ୍ନାଥ ନାମ ମହୀତଳେ ।
ମହୋଦଧି କୂଳେ କଳ୍ପବଟ ମୂଳେ
ବିଜେ କରିଛ ବଡ଼ ଦେଉଳେ
ଲକ୍ଷେ ଯୋଜନରେ ଗଜ ଡାକଦେଲା
ତା' ଡାକ ଶୁଣିଲ ପଶାଖେଳେ ।
ମାରକଣ୍ଡ ଋଷି ଯାଉଥିଲେ ଭାସି
ଉଦ୍ଧରି ଧଇଲ ବାମକରେ ।
x x x
ବଣପୋଡ଼ି ବେଳେ ଘୋର ଦାବାନଳୁ
ଉଦ୍ଧରି ରଖିଲ ବଳ୍ପବାଳେ
କହେ ଉପଇନ୍ଦ୍ର କବିକୁଳ ଚନ୍ଦ୍ର
ଶରଣ ମୁଁ ତୁମ୍ଭ ପାଦତଳେ ।''

ଅବଶ୍ୟ ତାଙ୍କର ଦେହାନ୍ତ କେଉଁଠାରେ ହୋଇଥିଲା, ସେ ସମ୍ପର୍କରେ ମତାନୈକ୍ୟ ରହିଛି । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା 'ଉପେନ୍ଦ୍ରଙ୍କ ଶେଷ ଜୀବନ' ଶୀର୍ଷକରେ ଲେଖିଛନ୍ତି- ''ଧନଞ୍ଜୟ ଭଞ୍ଜଙ୍କର, ପ୍ରିୟତମା ମହିଷୀ ବୃଦ୍ଧରାଜାଙ୍କୁ ବହୁକାଳ ଶାସନ କରିବାର ଦେଖି ଏବଂ ନିଜ ପୁତ୍ର ଆଉ ରାଜା ହୋଇ ପାରିବ ନାହିଁ ବୋଲି ଶଙ୍କିତ ହୋଇ, ବିଷ ପ୍ରୟୋଗ ଦ୍ୱାରା ରାଜାଙ୍କର ମୃତ୍ୟୁ ଘଟାଇଥିଲେ । ତାହାପରେ, ତାଙ୍କର ଜ୍ୟେଷପୁତ୍ର ତଥା ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠ ଭଞ୍ଜ ମାତ୍ର ଦୁଇ ତିନି ବର୍ଷ ପାଇଁ ବଳପୂର୍ବକ ରାଜା ହୋଇଥିଲେ । କିନ୍ତୁ ତାଙ୍କ ବିରୁଦ୍ଧରେ ପ୍ରବଳ ଷଡ଼ଯନ୍ତ୍ର ହେବାରୁ ସେ ପ୍ରାଣଭୟରେ ଘୁମୁସର ତ୍ୟାଗ କରି ପଡ଼ୋଶୀ ରାଜ୍ୟ (ନୟାଗଡ଼)ର ମାଳିସାହି ଗ୍ରାମଠାରେ ଆଶ୍ରୟ ନେଇଥିଲେ । ଏ ମାଳିସାହି ସହିତ ଉପେନ୍ଦ୍ର ଭଞ୍ଜଙ୍କ ସମ୍ପର୍କ ଜନଶ୍ରୁତିରେ ଉଜ୍ଜୀବିତ ରହିଅଛି । ଉପେନ୍ଦ୍ର ଭଞ୍ଜଙ୍କ ଶେଷ ଜୀବନ ସେଠାରେ ଅତିବାହିତ ହୋଇଥିବାର ମଧ୍ୟ ଶୁଣାଯାଏ । କିନ୍ତୁ ମତାନ୍ତରେ ଶ୍ରୀକ୍ଷେତ୍ରରେ ତଥା ଚିତ୍ରକୂଟ ଅଞ୍ଚଳରେ ମଧ୍ୟ ଉପେନ୍ଦ୍ରଙ୍କର ଦେହତ୍ୟାଗ ହୋଇଥିବାର କେହି କେହି କହନ୍ତି । (୪୦)

ବାଣୀପୁତ୍ର ଉପେନ୍ଦ୍ର ଉତ୍କଳୀୟ ସାରସ୍ୱତ ଜଗତରେ ଯଥାର୍ଥରେ ମହାକବି । ସେ ଏକା ଧାରରେ ରଚନା କବି, ଶବ୍ଦ କବି, ଅର୍ଥ କବି, ଆଳଙ୍କାରିକ କବି, ରସ କବି, ଭକ୍ତ କବି, ମାର୍ଗ କବି, ଶାସ୍ତ୍ର-ଅର୍ଥ କବି । ରାଜଶେଖରଙ୍କ ପ୍ରଣୀତ ଏହି ଅଷ୍ଟବିଧ କବିମାନଙ୍କର ଏକ ମଧୁର ସମନ୍ୱୟ ହେଉଛନ୍ତି କବି ଉପେନ୍ଦ୍ର ଭଞ୍ଜ । ନିଜର ଶ୍ରମ, ସାଧନା, ଶାସ୍ତ୍ରାନୁଶୀଳନ ଓ ପ୍ରତିଭା ବଳରେ ଅସଂଖ୍ୟ ଦୁର୍ଲ୍ଲଭ ଗ୍ରନ୍ଥ ରଚନା କରି ସେ କବିସମ୍ରାଟ ଆସନରେ ଆସୀନ । ସେ ନୟାଗଡ଼ ରାଜାଙ୍କଠାରୁ 'ବୀରବର' ଏବଂ ପୁରୀ ଗଜପତିଙ୍କଠାରୁ 'ମଙ୍ଗରାଜ'

ଉପାଧି ପ୍ରାପ୍ତ । ବାଣୀପୁତ୍ର ଉପେନ୍ଦ୍ର ସର୍ବକାଳୀକ କବି ଭାବରେ ଆଜି ଅଗଣିତ ଓଡ଼ିଆଙ୍କ ହୃଦୟ ରାଜ୍ୟରେ ଅମୃତ ଆସନ ପାତି ବସିଛନ୍ତି । କବିବର ରାଧାନାଥ ରାୟ ବଙ୍ଗଳାରେ ଉପେନ୍ଦ୍ରଙ୍କର ଗୌରବ ଗାନ ନିମ୍ନମତେ କରିଛନ୍ତି-

> ''ହେ ନୀଳକଣ୍ଠ ନନ୍ଦନ ! ନୃପ କୁଳ ଧନ !
> ତୁମିଓ ତେମତି ଶୂର, ସୁକବି ମଣ୍ଡଲେ
> ହୟେ ଅଗ୍ରଗଣ୍ୟ କବି ନିଜ ବାହୁ ବଲେ
> ନାଶିଲା ଉତ୍କଳ ନିନ୍ଦା ଉତ୍କଳ ଭୂଷଣ
> ଧନ୍ୟ ରାଜକବି ତୁମି, ଜନମ ସୁକ୍ଷଣେ
> ଗ୍ରହନିଲା ଏ ପ୍ରଦେଶେ ହେ କବୀନ୍ଦ୍ରମଣି
> ସୁଯଶସ୍ୱୀ ସୁସମୟେ ସରସ ଲେଖନୀ
> ଧରିଲା ଉପେନ୍ଦ୍ର ମରି, ଯେ ଚାରୁ ଭୂଷଣେ
> ସାଦାୟେଛ ବୈଦେହୀଶେ ହେ କବିରତନ
> ତୋମା ବିନା ସାଧ କାର ସାଜାୟ ଏମନ ।'' (ରାଧାନାଥ ଜୀବନୀ,୬୩-୬୪)

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଯେଉଁ ବିପୁଳ ଓ ଦିବ୍ୟ କାବ୍ୟ ଜଗତ ସୃଷ୍ଟି କରିଯାଇଛନ୍ତି, ତାହାର ପଟାନ୍ତର ନାହିଁ । କବିସମ୍ରାଟ୍ ଆଜି ନାହାନ୍ତି । ସେ ଦିବ୍ୟଧାମର ଅଧିବାସୀ । ତେବେ ଯାହା ହେଉନା କାହିଁକି, ଉତ୍କଳର ବାଣୀ କାନନରେ ଉପେନ୍ଦ୍ର ଭଞ୍ଜଙ୍କର ଦେଖାମିଳିଥାଏ । ସେତେବେଳେ ଆମ ପ୍ରିୟ କବି ତାଙ୍କ ଆରାଧ ଦେବତାଙ୍କ ନିକଟରେ ଯେଉଁ ନିମ୍ନ ପ୍ରଦତ୍ତ ବିନମ୍ର ନିବେଦନ କରିଛନ୍ତି, ତାହା ସ୍ମରଣ କଲେ ଆମର ହୃଦୟ ଦ୍ରବୀଭୂତ ହୋଇଯାଏ । କବିଙ୍କର ସେହି ବିନମ୍ର ନିବେଦନ ହେଉଛି -

> 'ହେ ରାମ ଶ୍ୟାମ କାମ ସମ ସୁସମ କାମଯମ ଭୀମବନ୍ଦନ
> ଦାନବ ଦାନବାରି ଦାନବତ୍ସଳ ଜାନକୀ ହୃଦୟ ଚନ୍ଦନ ।
> ନୃପ କେଶରୀ । ରାବଣ ବାରଣ କେଶରୀ
> ପ୍ରଖର ଖର ଦୁଷଣଙ୍କୁ ଭୀଷଣ ଘଟକର୍ଣ୍ଣ ଘଟ ନିବାରି ।
> କର ଏ କରୁଣା ବିଜ୍ଞ ହସ୍ତଗତ ଏ ପୁସ୍ତକ ମୋର ହୋଇବ
> ଅଜ୍ଞ ସମୂହର କର୍ଣ୍ଣ କୁହରକୁ କେବେ ହେଁ ପ୍ରବେଶ ନୋହିବ
> ଆଖୁ ଅନଳ । ହୀରାରେ ନଲଭି ବିନାଶ
> ଉତ୍ତମ ଜନରେ ଦୂଷିତ ନୋହିଣ ପ୍ରକାଶ ହେଉ ସର୍ବଦେଶ ।'
> (ରସିକହାରାବଳୀ-୧୫/୧୮-୧୯)

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବହୁ ଶାସ୍ତ୍ରଦର୍ଶୀ ବିଦ୍ୱାନ । ତାଙ୍କ କାବ୍ୟ ସାହିତ୍ୟ ବିଜ୍ଞ ଜନମାନଙ୍କର ଗଣ୍ଠିଧନ । ବାସ୍ତବିକ୍ ଭଞ୍ଜ ସାହିତ୍ୟର ପଟାନ୍ତର ନାହିଁ । ସମଗ୍ର ଭାରତୀୟ ସାହିତ୍ୟ ଜଗତରେ ଭଞ୍ଜ ସାହିତ୍ୟ ଅନନ୍ୟ ଓ ଅସାଧାରଣ । ଏହାର ସର୍ବକାଳୀକ ଆବେଦନ ରହିଛି । ଦେଶ ବିଦେଶରେ ଭଞ୍ଜ ସାହିତ୍ୟର ପ୍ରଚାର ଓ ପ୍ରସାର ଘଟିଲେ କବିଙ୍କର ବହୁଶ୍ରମ ସାଧନା ମହିମାମଣ୍ଡିତ ହେବ ବୋଲି ଆଶା କରାଯାଏ ।

## ପାଦଟୀକା

୧. ଅଗ୍ନି ପୁରାଣ

୨. ଭଞ୍ଜ ଉପେନ୍ଦ୍ର, ରସଲେଖା, ଦ୍ୱାବିଂଶ ଛାନ୍ଦ

୩. ଭଞ୍ଜ ଉପେନ୍ଦ୍ର, ଲାବଣ୍ୟବତୀ, ୧୬ଶ ଛାନ୍ଦ

୪. ଭଞ୍ଜ ଉପେନ୍ଦ୍ର, ବୈଦେହୀଶ ବିଳାସ

୫. ଭଞ୍ଜ ଉପେନ୍ଦ୍ର, ରସଲେଖା, ୧ମ ଛାନ୍ଦ

୬. ଭଞ୍ଜ ଉପେନ୍ଦ୍ର, ରସଲେଖା, ଦ୍ୱାବିଂଶ ଛାନ୍ଦ

୭. ଭଞ୍ଜ ଉପେନ୍ଦ୍ର, ଲାବଣ୍ୟବତୀ

୮. ଭଞ୍ଜ ଉପେନ୍ଦ୍ର, ନୀଳାଦ୍ରୀଶ ଚଉତିଶା

୯. ଶ୍ରୀଧର ଶତପଥୀ, ଭଞ୍ଜ ସନ୍ଦର୍ଭ

୧୦. ଭଞ୍ଜ ଉପେନ୍ଦ୍ର, ରସିକ ହାରାବଳୀ, ୮ମ ଛାନ୍ଦ, ୨୫ଶ ପଦ

୧୧. ଭଞ୍ଜ ଉପେନ୍ଦ୍ର, ଲାବଣ୍ୟବତୀ, ୧୬ଶ ଛାନ୍ଦ/୪୨

୧୨. (କ)'ବାମେବାମାବରସ୍ଥିତି ଦକ୍ଷିଣେ ଲକ୍ଷ୍ମଣ ଯତି
ମଧ୍ୟେ ବିଜେ ଯେଉଁ ଶ୍ୟାମଳସୁନ୍ଦର ତାଙ୍କୁ ଉପଇନ୍ଦ୍ର ଚିନ୍ତି ।'

ଲାବଣ୍ୟବତୀ-୨୫ ଛାନ୍ଦ

(ଖ) 'ବଳାଇ ଚିତ୍ତ ଅନବରତ
ଭାଗ୍ୟେ ଗ୍ରହଣ ତାରକ ମନ୍ତ୍ର' ବୈଦେହୀଶ ବିଳାସ, ୧ମ ଛାନ୍ଦ ।

(ଗ) 'ବୀରବର ପଦ ଉପଇନ୍ଦ୍ର ମୋ ନାମ
ବାରେ ବାରେ ସେବାରେ ମନାଇ ସୀତାରାମ ଯେ ।
ବିଚିତ୍ର କବିତ୍ୱ ମାର୍ଗେ ପ୍ରସରିଲା ବୁଦ୍ଧି
ବିରଚିଲି ରାମାୟଣ ଏ ମୋ ବଡ଼ ସିଦ୍ଧି ଯେ ।

ବୈଦେହୀଶ ବିଳାସ, ୫୨ ଶ ଛାନ୍ଦ

(ଘ) 'ତରଣି କୁଳର ସାର ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସାଗର ପାର ।''

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ୧୪/୩୮

(ଙ) 'କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠ ନାଥ ସାକ୍ଷାତ
ଜାତ କଲେ କ୍ଷୀରାର୍ଣ୍ଣବୁ ସୁଧାମୋର ଗୀରାର୍ଣ୍ଣବୁ ରସଗୀତ ।'

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ୧୬/୩୦

(ଚ) 'କବି ଉପଇନ୍ଦ୍ର ତବ କୃପାରେ ହୋଇଛି
ଏଥେ ମନୋରଥ ସାର୍ଥେ କି ସଂଶୟ ଅଛି ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ୧/୬୩

(ଛ) ଭାବି ସୀତାରାମ ପଦ ସାରସ । ଉପଇନ୍ଦ୍ର ବୀରବର ହରଷ ।

ଭଞ୍ଜ ଉପେନ୍ଦ୍ର, ଲାବଣ୍ୟବତୀ, ତୃତୀୟ ଛାନ୍ଦ

(ଜ) ଜୟ ଜୟ ଜୟ ରାମ ଜନକ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ ହେ ।
ଚନ୍ଦ୍ରହାସ ଶୋଭାକର ସମସ୍ତ କାଳର
ଲକ୍ଷଣ ବନ୍ତ ଅଲକ୍ଷ୍ୟ ମୁଖ ମନୋହର ଯେ ।
କବି ଭାରତୀକି ଅଗୋଚର ଛବି ଯା'ର
ସୁମନା ବୃନ୍ଦ ବନ୍ଦିତ ଏଣୁ ନିରନ୍ତର ଯେ ।
ମହାଶୟ ବଳରିପୁ ପରେ ତାପକର
ଛତ୍ରଭଙ୍ଗ କୃତରୁ କାତର ଅରି-ପୁର ।
ସହସ୍ରକର ଉନ୍ନତହର ତେଜବାନ
ହରିପକ୍ଷ ସଦାନନ୍ଦ ତୋଷ ବିବର୍ଦ୍ଧନ ହେ ।
ସେ ପ୍ରଭୁ କଞ୍ଜ ଚରଣେ କରି ତତପର
ଭଞ୍ଜ ବୀରବର କବି ମାନସ ଭ୍ରମର ।' (ଲାବଣ୍ୟବତୀ, ୧ମ ଛାନ୍ଦ ।)

(ଝ) କହେ କବି ଭଞ୍ଜ ବୀରବର ଦିବ୍ୟରସ
ଆହେ ରାମ ଅବିଘ୍ନେ ଏ ଗୀତ କର ଶେଷ ହେ
ସୀତା ସହିତ ମୋ ଚିତ୍ତୁଁ ନୋହିବ ଅନ୍ତର
ଏହି ଅଭୀଷ୍ଟକୁ କରିଅଛି ନିରନ୍ତର ହେ । (ଲାବଣ୍ୟବତୀ, ୩୦ଶ ଛାନ୍ଦ)

୧୩. ଭଞ୍ଜ ଉପେନ୍ଦ୍ର, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-୧୩/୨୮

୧୪. ଭଞ୍ଜ ଉପେନ୍ଦ୍ର, ଚିତ୍ରକାବ୍ୟ ବନ୍ଧୋଦୟ, ୧ମ ଛାନ୍ଦ, ୧୩ଶ -୨୩ ଶ ପଦ

୧୫. ମିଶ୍ର, ପଣ୍ଡିତ ବିନାୟକ- ଓଡ଼ିଆ ସାହିତ୍ୟର ଇତିହାସ, ୧୯୨୮, ପୃ-୧୨୪

(କ) ଗୀତିକା- ଛ' ପୋଇ, ଗାହା, ଦୋହା, ଚଉତିଶା, ଚଉପଦୀ ଭୂଷଣ, ଚଉପଦୀଚନ୍ଦ୍ର

(ଖ) ପୌରାଣିକ କାବ୍ୟ- ସୁଭଦ୍ରା ପରିଣୟ, ଅବନାରସ ତରଙ୍ଗ, ବ୍ରଜଲୀଳା, ରାମଲୀଳାମୃତ, କୁଞ୍ଜବିହାର, ରାହାସଲୀଳା, କଳାକଉତୁକ, ବୈଦେହୀଶ ବିଳାସ ।

(ଗ) କାହ୍ନନିକ କାବ୍ୟ- ହେମ ମଞ୍ଜରୀ, ଚିତ୍ରଲେଖା, ଲାବଣ୍ୟବତୀ, ରସଲେଖା, ସୁବର୍ଣ୍ଣ ରେଖା, କାମକଳା, ମନୋରମା, ପ୍ରେମଲତା, ଭାବବତୀ, ମୁକ୍ତାବତୀ, ପ୍ରେମ ସୁଧାନିଧି, ରସିକ ହାରାବଳୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ତ୍ରୈଲୋକ୍ୟ ମୋହିନୀ, ଚନ୍ଦ୍ରକଳା, ଚନ୍ଦ୍ରରେଖା, ଇନ୍ଦୁମତୀ, କଳାବତୀ, ଶଶିରେଖା, ଶୋଭାବତୀ, ରସ ମଞ୍ଜରୀ ।

(ଘ) ଆଳଙ୍କାରିକ କାବ୍ୟ- ଛାନ୍ଦଭୂଷଣ, ଚିତ୍ରକାବ୍ୟ ବନ୍ଧୋଦୟ, ରସପଞ୍ଚକ

(ଙ) ବିବିଧ ରଚନା- ଷଡ୍‌ରତ୍ନ, ଗୀତାଭିଧାନ, ପୁରୁଷୋତ୍ତମ, ମାହାତ୍ମ୍ୟ

୧୬. (i) ଆଚାର୍ଯ୍ୟ, ବୃନ୍ଦାବନଚନ୍ଦ୍ର, ଓଡ଼ିଆ ସହିତ୍ୟର ସଂକ୍ଷିପ୍ତ ପରିଚୟ

(ii) ମହାପାତ୍ର, ଡକ୍ଟର ପ୍ରେମାନନ୍ଦ- ଉପେନ୍ଦ୍ର ଭଞ୍ଜ ଓ ସାରସ୍ୱତ ପୀଠ ମାଳିସାହି

୧୭. ଭଞ୍ଜ ଉପେନ୍ଦ୍ର-ଲାବଣ୍ୟବତୀ, ୧୬/୪୩-୪୪

୧୮. ଭଞ୍ଜ ଉପେନ୍ଦ୍ର-କୋଟିବ୍ରହ୍ମାଣ୍ଡସୁନ୍ଦରୀ, ୧୧/୩୧

୧୯. (କ) ସିଦ୍ଧ କରି ଯେ କାବ୍ୟ ଅର୍ଥ ସେ ଯୋଡ଼ି
ଅଛିଦ୍ର ହାସେ ଆଦ୍ୟ ରସରେ ଜଡ଼ି ଯେ
କହେ ଉପଇନ୍ଦ୍ର ବର୍ଣ୍ଣଭଙ୍ଗୀରୁ ବାରି
ଛାନ୍ଦ ଗଙ୍ଗାଯମୁନା ସଂଗମ ପରି ଯେ ।

ଭଞ୍ଜ ଉପେନ୍ଦ୍ର-କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୨୦/୨୦

(ଖ) ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଛାନ୍ଦ ବିବେଚନା ।

ଭଞ୍ଜ ଉପେନ୍ଦ୍ର-କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୩/୧

(ଗ) 'ଏ ଛାନ୍ଦ ଇକ୍ଷୁ ଲତିକା ରସ ଆସ୍ୱାଦନେ
ଅର୍ଥୀ ହେବ ଏଥି ଜ୍ଞାନ ରଦ ଥିଲା ଜନେ ।'

ଭଞ୍ଜ ଉପେନ୍ଦ୍ର-କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ୩୪/୧

(ଘ) 'ଶିକ୍ଷାଥିଲା ଜନ ଦେଖ ଏ ପୋଥି
ହେବ ନୋହିଲେ ସିନା ଏଥି ମତି ।

ଭଞ୍ଜ ଉପେନ୍ଦ୍ର, ଚିତ୍ରକାବ୍ୟ ବନ୍ଧୋଦୟ

(ଙ) ବୁଦ୍ଧି ଉତ୍ତମ ଯାହାର କାବ୍ୟ ଅଭିଧାନେ
ବୃଜିନ ନାଶ ଚରିତ ଶୁଣ ସାବଧାନେ ।

ଭଞ୍ଜ ଉପେନ୍ଦ୍ର-ବୈଦେହୀଶ ବିଳାସ, ୪/୧

୨୦. ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ଦାସ, ଗୋପବନ୍ଧୁ-

୨୧. ଭଞ୍ଜ ଉପେନ୍ଦ୍ର- ଲାବଣ୍ୟବତୀ, ସପ୍ତ ଚତ୍ୱାରିଂଶ ଛାନ୍ଦ, ୧୯ଶ ପଦ

୨୨. ଭଞ୍ଜ ଉପେନ୍ଦ୍ର- ରସିକ ହାରାବଳୀ

୨୩. ଭଞ୍ଜ ଉପେନ୍ଦ୍ର- ଲାବଣ୍ୟବତୀ

୨୪. ''ବିଦଗ୍ଧ ଶ୍ରୀରାମଚନ୍ଦ୍ର କହେ
ବନ୍ଧୁ ! ଜୀବନ ଥିବାର ଏ ଦେହେ
ବିଳାସିନୀ ନ କରିବି ଆନକୁ
ବୋଲି ଛୁଇଁ ଦୀପ ହୁତାଶନକୁ ।''
''ବଇଦେହୀ କେଶୁଁ କାଢ଼ି କେତକୀ
ବର୍ଣ୍ଣ ଲିଖିତ ପୋଛି କସ୍ତୁରୀକି
ବଳି ନାହିଁ ଆନେ ଆଜଯାଏ ତ
ବଳାଇବି ଜନ୍ମେ ଜନ୍ମେ ମୋ ଚିତ୍ତ
ବର ମଣ୍ଡପରୁ ଯିବ ବାହୁଡ଼ି
ବାର୍ତ୍ତାବହେ ତୁମ୍ଭଙ୍କୁ ନେବି ଲୋଡ଼ି
ବୀର ମୁକୁଟେ ପତ୍ର କରି ଦତ୍ତ
ବିନ୍ୟସ୍ତ ଯେ ପ୍ରଦୀପେ କଲେ ହସ୍ତ ।''

ଭଞ୍ଜ ଉପେନ୍ଦ୍ର- ବୈଦେହୀଶ ବିଳାସ, ପଞ୍ଚଦଶ ଛାନ୍ଦ

୨୫. ଭଞ୍ଜ ଉପେନ୍ଦ୍ର- ଲାବଣ୍ୟବତୀ, ଅଷ୍ଟତ୍ରିଂଶ ଛାନ୍ଦ, ବିଂଶ ପଦ

କ) ବୋଇଲେ ରଘୁନନ୍ଦନ ରେ ରାମାବର
ବ୍ରତ ଆଚରଣ ଏକ ପତ୍ନୀ ମୋହର
ବଡ଼କୂଳେ ଜାତ ଭୂପଭଗିନୀ ତୁହି
ବୃଷସ୍ୟନ୍ତି ଆଚରଣ ଭଲ ତ ନୋହି ।
ବାସ୍ତୋଷ୍ପତି ଅଧିକାରେ କି କାର୍ଯ୍ୟ ମୋର
ବହି ନ ପାରେ ଅନେକ ନେତ୍ର ଶରୀର । x x x

ବିଷ୍ଣୁପଦୀ ଜଳ କେଡ଼େ ନିର୍ମଳ ଯୋଷା
ବାରିଦ ଆବିଳ ଜଳେ ଘତକ ଆଶା । (ବୈଦେହୀଶ ବିଳାସ, ତ୍ରୟୋବିଂଶ ଛାନ୍ଦ)

୨୬. ଭଞ୍ଜ ଉପେନ୍ଦ୍ର- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ୧୪ଶ ଛାନ୍ଦ

୨୭. ଭଞ୍ଜ ଉପେନ୍ଦ୍ର- କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ୧୮ଶ ଛାନ୍ଦ

୨୮. ''ଜୟ ମକର କୁଣ୍ଡଳି କୁଣ୍ଡଳ କୁଣ୍ଡଳୀ
ଘନସାର ଶ୍ୟାମଘନ ସାର କାନ୍ତି ଝଳି ଯେ ।
ଜୟ ତ୍ରିପୁର ମୋହନ ତ୍ରିପୁର ଦହନ
ଖଗ ପୁଙ୍ଗବ ବାହନ ପୁଙ୍ଗବ ବାହନ ଯେ ।
ଜୟ ରାମ କରାକୃତି ବାସ କୃତିବାସ
ପଞ୍ଚାସ୍ୟ ଜିତ ବିକ୍ରମ ଯେ ପୁଣି ପଞ୍ଚାସ୍ୟ ଯେ ।
ଜୟ କମଳ ଦଳ ଲୋଚନ ତ୍ରିଲୋଚନ
ମାର ଯା'ର କୁମାର କୁମାର ମା' ନନ୍ଦନ ଯେ ।
ଜୟ ପାଣ୍ଡବ ପକ୍ଷକ ତାଣ୍ଡବ ପଣ୍ଡିତ
ଚନ୍ଦ୍ର ମୁକୁଟଧର ଚନ୍ଦ୍ର ମୁକୁଟ ସେତ ଯେ ।
ଜୟ ଭବ ଶ୍ରମ ଦୂରକାରୀ ଭୀମ ଭୀମ
ନୀଳକଣ୍ଠ ପୁଚ୍ଛ ଚୂଡ ନୀଳକଣ୍ଠ ନାମ ଯେ ।
ନୀଳକଣ୍ଠ ନୃପସୁତ ଭାବି ହରିହର
ମାନସ ବଳାଇ କରିବାକୁ ଗୀତସାର ଯେ ।'

ଭଞ୍ଜ, ଉପେନ୍ଦ୍ର - ରସଲେଖା, ପ୍ରଥମ ଛାନ୍ଦ

(୨୯) ଭଞ୍ଜ, ଉପେନ୍ଦ୍ର - ଲାବଣ୍ୟବତୀ, ଷଷ୍ଠଛାନ୍ଦ

(୩୦) ଭଞ୍ଜ, ଉପେନ୍ଦ୍ର -ବୈଦେହୀଶ ବିଳାସ, ୪/୧୩-୧୬

(୩୧) ବାହୁଲେୟ ପ୍ରାୟେ ହେଲା ପ୍ରାତ ଉତ୍ପତ୍ତି
ବିଭ୍ରାଡ଼ି ତାରକାସୁର ପ୍ରମୋଦ ଅତି
ବିଭ୍ରାଜି ଉଜ୍ଜ୍ୱଳ ଶକ୍ତି ମନ୍ତରେ ସେହି
ବିହାରୀ ହୋଇ କ୍ରମଶେ ଷଷ୍ଠୀରେ ସ୍ନେହୀ
ବାରକରେ ଖ୍ୟାତ ଶିବପୁର ଉତ୍ସବେ
ବାଦନ ଯେ ଶଙ୍ଖ-ମାଳି ଗଣ ହିଁ ଭାବେ । (ବୈଦେହୀଶ ବିଳାସ, ୪/୧୮)

(୩୨) ବିଚାରଇ ମାଳଯମକରେ କବି ମନେ
ବୁଲେ ରାମରାମ ରାମନେତ୍ରୀ ଘେନି ବନେ ଯେ

'ବୃହଦ୍‌ଭାନୁ ଭାନୁଭାନୁ ପ୍ରଭା ତାପ ନାହିଁ
ବୃତ ତମାଳ ମାଳ ମାଳତୀ ଲତା ଯହିଁ ଯେ ।
ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗଣୀ ଶୋଭିତ ଯେ ।
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦସୁତ କରେ ଗୁତ ଯେ ।'

ଭଞ୍ଜ, ଉପେନ୍ଦ୍ର -ବୈଦେହୀଶ ବିଳାସ, ୧୯ଶ ଛାନ୍ଦ

(୩୩) ବୈଦେହୀଶ ବିଳାସ- ୧୯ଶ ଛାନ୍ଦ

(୩୪) ଏଥୁ ଅନନ୍ତରେ ରସ ଶୁଣ ହେ ମାଳିନୀ ବେଶ
ଟଭାଫଳ ପରା ଖୋଷା । ଖୋଷିଛି ଯୋଷା ଯେ
ଗର୍ଭକ କଳା ଚଉଁରୀ ପ୍ରକାଶେ ରତ୍ନ ଭଉଁରୀ
ଖଞ୍ଜିଅଛି ଗୋଟି ଚମ୍ପା । ଧଇର୍ଯ୍ୟ କମ୍ପା ଏ ।
ଅନ୍ଧାର ନିଶାରେ ନଭେ ନିର୍ମଳ ତାରା କି ଶୋଭେ
ଦିଶଇ ତେମନ୍ତ ତୋରା । ଲୋଚନ କାରା ଏ ।
ଏଥକୁ କେଶ ତ୍ରିଭଙ୍ଗେ ଧାରା ଦେଖାଇଛି ମାଙ୍ଗେ
ଘନ ରାହୁ ଭୃଙ୍ଗ ଶ୍ରେଣୀ । ଅଛି ମୁଁ ଜିଣି ଏ ।
ଲଲାଟେ ଚନ୍ଦନ ଚିତା ସିନ୍ଦୂର ବିନ୍ଦୁ ଶୋଭିତା
ଚନ୍ଦ୍ରକୋଳେ କି ସବିତା । ଏହି ଭଙ୍ଗିତା ଏ ।
ଶ୍ରବଣେ ରତ୍ନ କୁଣ୍ଡଳ ଦୋହଲେ ଗଣ୍ଡମଣ୍ଡଳ
ସୁବର୍ଣ୍ଣ ପାଶୀ ଉପରେ । ଚିତ୍ତକୁ ହରେ ଏ । (ଲା.ବ-ତ୍ରୟୋଦଶ ଛାନ୍ଦ)

(୩୫) ଲାବଣ୍ୟବତୀ-୩୫ଶ ଛାନ୍ଦ

(୩୬) ଲାବଣ୍ୟବତୀ-ସପ୍ତଦଶ ଛାନ୍ଦ

(୩୭) ଲାବଣ୍ୟବତୀ-ସପ୍ତମ ଛାନ୍ଦ

(୩୮) ତତ୍ରୈବ

(୩୯) ଉପେନ୍ଦ୍ର ଭଞ୍ଜ- ନୀଳାଦ୍ରୀଶ ଚଉତିଶା

(୪୦) ବ୍ରହ୍ମା, ଗୌରୀ କୁମାର-ବୈଦେହୀଶ ବିଳାସ ମୁଖବନ୍ଧ

❑❑❑

# ଦ୍ୱିତୀୟ ପରିଚ୍ଛେଦ :

## ସାହିତ୍ୟରେ ଅଳଙ୍କାର ପ୍ରସଙ୍ଗ :

କାବ୍ୟର ବିଭିନ୍ନ ଆଙ୍ଗିକ ମଧ୍ୟରେ ଅଳଙ୍କାର ଅନ୍ୟତମ । 'ଅଲମ୍' ଏବଂ 'କାର'- ଏହି ଦୁଇଟି ଶବ୍ଦର ସଂଯୋଗରେ 'ଅଳଙ୍କାର' ଶବ୍ଦ ଗଠିତ । 'ଅଳଙ୍କାର'ର ସାଧାରଣ ଅର୍ଥ ହେଉଛି ଶୋଭାକାରକ ଉପାଦାନ । ସାଧାରଣ ବର୍ଣ୍ଣନା ଅପେକ୍ଷା ଅଳଙ୍କାରଯୁକ୍ତ ବର୍ଣ୍ଣନା ବେଶ୍ ଚିତ୍ତାକର୍ଷକ । ଯେପରି ଶରୀରର ସୌନ୍ଦର୍ଯ୍ୟ ବିଧାନ ନିମିତ୍ତ ନାନା ପ୍ରକାର ଆଭୂଷଣରେ ଭୂଷିତ ହେବାକୁ ପଡ଼େ, ସେହିପରି କାବ୍ୟର ଶୋଭାବିଧାନ ନିମିତ୍ତ କାବ୍ୟରେ ବିଭିନ୍ନ ଅଳଙ୍କାର ବିନ୍ୟାସ କରାଯାଏ । କାରଣ ଆଳଙ୍କାରିକ କାବ୍ୟ ବୁଧବୋଧକ । ତେଣୁ ପ୍ରାଚ୍ୟ ଆଳଙ୍କାରିକଗଣ ରସ, ରୀତି, ଗୁଣ, ବକ୍ରୋକ୍ତି ପରି ଅଳଙ୍କାରର ପ୍ରାଧାନ୍ୟକୁ ସ୍ୱୀକାର କରିଛନ୍ତି ।

ନିମ୍ନରେ ବିଭିନ୍ନ ସମ୍ପ୍ରଦାୟ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି-

*(କ) ରସ ସମ୍ପ୍ରଦାୟ-ଭରତମୁନି ଓ ବିଶ୍ୱନାଥ କବିରାଜ*

*(ଖ) ଅଳଙ୍କାର ସମ୍ପ୍ରଦାୟ- ଭାମହ ଓ ରୁଦ୍ରଟ*

*(ଗ) ରୀତି ସମ୍ପ୍ରଦାୟ-ଆଚାର୍ଯ୍ୟ ଦଣ୍ଡୀ*

*(ଘ) ଗୁଣ ସମ୍ପ୍ରଦାୟ-ବାମନ*

*(ଙ) ବକ୍ରୋକ୍ତି ସମ୍ପ୍ରଦାୟ-କୁନ୍ତକ*

*(ଚ) ଧ୍ୱନି ସମ୍ପ୍ରଦାୟ-ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ*

*(ଛ) ଔଚିତ୍ୟ ସମ୍ପ୍ରଦାୟ-କ୍ଷେମେନ୍ଦ୍ର (ଇତ୍ୟାଦି)*

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଭରତ ମୁନିଙ୍କ ଠାରୁ କେଶବ ମିଶ୍ରଙ୍କ ପର୍ଯ୍ୟନ୍ତ ବିଭିନ୍ନ ଆଳଙ୍କାରିକ ବହୁ ଅଳଙ୍କାରଗ୍ରନ୍ଥ ରଚନା କରିଛନ୍ତି । ନିମ୍ନରେ ବିଭିନ୍ନ ଅଳଙ୍କାର ଗ୍ରନ୍ଥ ଏବଂ ସେମାନଙ୍କର ରଚୟିତାଙ୍କର ନାମ ଉଲ୍ଲେଖ କରାଯାଇଛି-

| କ୍ର.ନଂ. | ଅଳଙ୍କାର ଗ୍ରନ୍ଥ | ରଚୟିତା |
|---|---|---|
| ୧. | ନାଟ୍ୟଶାସ୍ତ୍ର | ଭରତମୁନି |
| ୨. | କାବ୍ୟାଳଙ୍କାର | ଭାମହ |
| ୩. | କାବ୍ୟାଦର୍ଶ | ଦଣ୍ଡୀ |
| ୪. | କାବ୍ୟାଳଙ୍କାର ସୂତ୍ରବୃତ୍ତି | ବାମନ |
| ୫. | କାବ୍ୟାଳଙ୍କାର | ରୁଦ୍ରଟ |
| ୬. | ଧ୍ୱନ୍ୟାଲୋକ | ଆନନ୍ଦବର୍ଦ୍ଧନ |
| ୭. | ସରସ୍ୱତୀ କଣ୍ଠାଭରଣ | ଭୋଜରାଜ |
| ୮. | କାବ୍ୟପ୍ରକାଶ | ମମ୍ମଟ |
| ୯. | ଅଳଙ୍କାର ସର୍ବସ୍ୱ | ରୁଯ୍ୟକ |
| ୧୦. | କାବ୍ୟାନୁଶାସନ | ହେମଚନ୍ଦ୍ର |
| ୧୧. | ସାହିତ୍ୟଦର୍ପଣ | ବିଶ୍ୱନାଥ କବିରାଜ |
| ୧୨. | ରସ ଗଙ୍ଗାଧର | ପଣ୍ଡିତରାଜ ଜଗନ୍ନାଥ |
| ୧୩. | କାବ୍ୟମୀମାଂସା | ରାଜଶେଖର |
| ୧୪. | ଚନ୍ଦ୍ରାଲୋକ | ଜୟଦେବ |
| ୧୫. | ଅଳଙ୍କାର ଶେଖର | କେଶବ ମିଶ୍ର |

ଅଳଙ୍କାର ଶାସ୍ତ୍ରରେ ଅଳଙ୍କାରର ପରିଭାଷା ପ୍ରଦାନ କରାଯାଇ କୁହାଯାଇଛି- **''ଅଳଂକରୋତି ଇତି ଅଳଙ୍କାରଃ ।''** ଅର୍ଥାତ୍ ଯାହା ସୁଶୋଭିତ କରେ, ତାହା ହେଉଛି ଅଳଙ୍କାର । ପୁନଶ୍ଚ କୁହାଯାଇଛି- **'ଅଳମ୍‌କ୍ରୀୟତେ ଅନେନେତ୍ୟଳଙ୍କାରଃ'** । ଅର୍ଥାତ୍ ଯାହାଦ୍ୱାରା ଶୋଭା ବିଧାନ କରାଯାଏ, ତାହା ହିଁ ହେଉଛି ଅଳଙ୍କାର । କାବ୍ୟରେ ସୌନ୍ଦର୍ଯ୍ୟର ହେତୁ ହେଉଛି ଅଳଙ୍କାର । ସୁତରାଂ ଅଳଙ୍କାର ଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟ ସାଧିତ ହୋଇଥାଏ । ଆଚାର୍ଯ୍ୟ ଭାମହ ଅଳଙ୍କାର ଶାସ୍ତ୍ରର ଆଦ୍ୟ ପ୍ରବର୍ତ୍ତକ ନିଶ୍ଚୟ । ଅବଶ୍ୟ ତାଙ୍କର ବହୁପୂର୍ବରୁ ଭରତମୁନି 'ନାଟ୍ୟଶାସ୍ତ୍ର'ରେ ଉପମା, ରୂପକ, ଦୀପକ ଓ ଯମକ-ଏହିପରି ଚାରିଗୋଟି ଅଳଙ୍କାରର ନାମୋଲ୍ଲେଖ କରିଛନ୍ତି । ଭରତ ମୁନି ଲେଖିଛନ୍ତି-

''ଉପମା ରୂପକଂ ଚୈବ ଦୀପକଂ ଯମକଂ ତଥା ।
କାବ୍ୟସ୍ୟୈତେ ହ୍ୟଲଂକାରାଶ୍ଚତ୍ୱାରଃ ପରିକୀର୍ତିତାଃ ।''

ଭରତ ମୁନି ଉପମା ଅଳଙ୍କାର ସମ୍ପର୍କରେ କହିଛନ୍ତି-

''ଯତ୍ କିଞ୍ଚିତ୍ କାବ୍ୟବନ୍ଧେଷୁ ସାଦୃଶ୍ୟେନୋପମୀୟତେ
ଉପମା ନାମ ସା ଜ୍ଞେୟା ଗୁଣାକୃତିସମାଶ୍ରୟା ।''

ଅର୍ଥାତ୍ କାବ୍ୟ ରଚନାରେ ଯେତେବେଳେ ଦୁଇଟି ପଦାର୍ଥର ଗୁଣ କିମ୍ବା ଆକୃତି ଉପରେ ଆଶ୍ରିତ ହୋଇ ସାଦୃଶ୍ୟ ଦ୍ୱାରା ତୁଳନା କରାଯାଏ, ସେତେବେଳେ ତାହା ଉପମା ନାମରେ ଅଭିହିତ ହୁଏ ।

ଆଋର୍ଯ୍ୟ ଭରତ ମୁନିଙ୍କ ମତରେ ଉପମା ପାଞ୍ଚ ପ୍ରକାରର-

''ପ୍ରଶଂସା ଚୈବ ନିନ୍ଦା ଚ କଳ୍ପିତା ସଦୃଶୀ ତଥା
କିଞ୍ଚିଚ୍ଚ ସଦୃଶୀଜ୍ଞେୟା ହ୍ୟୁପମା ପଞ୍ଚଧା ପୁନଃ ।''

ଅର୍ଥାତ୍ ଉପମା ପାଞ୍ଚ ପ୍ରକାରର ଯଥା - ୧) ପ୍ରଶଂସା, ୨) ନିନ୍ଦା, ୩) କଳ୍ପିତା, ୪) ସଦୃଶୀ, ୫) କିଞ୍ଚିତ୍ ସଦୃଶୀ ।

ଦୀପକ ଅଳଙ୍କାର ସମ୍ପର୍କରେ ଭରତମୁନିଙ୍କର ବକ୍ତବ୍ୟ ହେଉଛି-

''ନାନାଧିକରଣାର୍ଥନାଂ ଶବ୍ଦାନାଂ ସମ୍ପ୍ରଦୀପକମ୍ ।
ଏକ ବାକ୍ୟେନ ସଂଯୁକ୍ତଂ ତଦ୍ଦୀପକମିହୋଚ୍ୟତେ ।''

ଅର୍ଥାତ୍ ଭିନ୍ନ ଭିନ୍ନ ବିଷୟରେ ଶବ୍ଦମାନଙ୍କର ଗୋଟିଏ ବାକ୍ୟରେ ଦୀପ ଭଳି ସଂଯୋଗ ହେଲେ ତାହା ଦୀପକ ଅଳଙ୍କାର ହୋଇଥାଏ ।

ଭରତ ମୁନି 'ରୂପକ' ଅଳଙ୍କାର ସମ୍ପର୍କରେ କହନ୍ତି -

''ସ୍ୱବିକଳ୍ପେନ ରଚିତଂ ତୁଲ୍ୟାବୟବଲକ୍ଷଣମ୍ ।
କିଞ୍ଚତ୍ସାଦୃଶ୍ୟସମ୍ପନ୍ନଂ ଯଦ୍ରୂ ରୂପଂ ରୂପକନ୍ତୁ ତତ୍ ।''

ଅର୍ଥାତ୍ ଯାହା ଆପଣା ବିକଳ୍ପରୁ ନିର୍ମିତ ହୋଇ ତୁଲ୍ୟ ଅବୟବ ଏବଂ କିଛି ସାଦୃଶ୍ୟ ଗୁଣଯୁକ୍ତ ରୂପ ହୋଇଥାଏ, ତାହାକୁ ରୂପକ କୁହାଯାଏ ।

ସେହିପରି ଭରତ ମୁନି ଯମକ ଅଳଙ୍କାରର ସଂଜ୍ଞା ଓ ସ୍ୱରୂପ ସମ୍ପର୍କରେ କହନ୍ତି-

''ଶବ୍ଦାଭ୍ୟାସସ୍ତୁ ଯମକଂ ପାଦାଦିଷୁ ବିକଳ୍ପିତମ୍ ।
ବିଶେଷଦର୍ଶନଞ୍ଚାସ୍ୟ ଗଦତୋ ମେ ନିବୋଧତ ।''

ଅର୍ଥାତ୍ ଶବ୍ଦର ଆବୃତ୍ତିକୁ ଯମକ କୁହାଯାଏ, ଯାହା ପାଦରୁ ଆରମ୍ଭ ହୋଇ ଅନେକ ରୂପ ନେଇଥାଏ । ମୁଁ ତାର ବିଶେଷ ସ୍ୱରୂପ ସମ୍ବନ୍ଧରେ କହୁଛି । ଆପଣ ଧ୍ୟାନପୂର୍ବକ ଶୁଣନ୍ତୁ ।

ଭରତ ମୁନି ଯମକର ଦଶ ପ୍ରକାର ଭେଦ ନିର୍ଣ୍ଣୟ କରିଛନ୍ତି-

**''ପାଦାନ୍ତ ଯମକଞ୍ଚୈବ କାଞ୍ଚୀଯମକମେବ ଚ ।**
**ସମୁଦ୍‌ଗ ଯମକଞ୍ଚୈବ ବିକ୍ରାନ୍ତ ଯମକନ୍ତଥା ।**

**ଯମକଂ ଚକ୍ରବାଳଞ୍ଚ ସନ୍ଦଷ୍ଟଯମକଂ ତଥା ।**
**ପାଦାଦି ଯମକଞ୍ଚୈବ ତଥାମ୍ରେଡ଼ିତମେବ ଚ ।**

**ଚତୁର୍ବ୍ୟବସିତଞ୍ଚୈବ ମାଳାଯମକମେବ ଚ**
**ଏତଦ୍ଦଶବିଧଂ ଜ୍ଞେୟଂ ଯମକଂ ନାଟକାଶ୍ରୟମ୍ ।''**

ଅର୍ଥାତ୍ ଦୃଶ୍ୟକାବ୍ୟରେ ଯମକ ଦଶ ପ୍ରକାର । ଯଥା- ୧) ପାଦାନ୍ତ ଯମକ, ୨) କାଞ୍ଚୀ ଯମକ, ୩) ସମୁଦ୍‌ଗ ଯମକ, ୪) ବିକ୍ରାନ୍ତ ଯମକ, ୫) ଚକ୍ରବାଳ ଯମକ, ୬) ସଂଦଷ୍ଟ ଯମକ, ୭) ପାଦାଦି ଯମକ, ୮) ଆମ୍ରେଡ଼ିତ ଯମକ, ୯) ଚତୁର୍ବ୍ୟବସିତ ଯମକ, ୧୦) ମାଳା ଯମକ ।

ଆଚାର୍ଯ୍ୟ ଭାମହଙ୍କର 'କାବ୍ୟାଳଙ୍କାର' ଗ୍ରନ୍ଥଟି ଅଳଙ୍କାର ସମ୍ପର୍କିତ ଏକ ପ୍ରାମାଣିକ ଗ୍ରନ୍ଥ । ଏହି ଗ୍ରନ୍ଥରେ ଭାମହ କହିଛନ୍ତି-

**'ନ କାନ୍ତମପି ନିର୍ଭୂଷଂ ବିଭାତି ବନିତାମୁଖମ୍ ।'** (କାବ୍ୟାଳଙ୍କାର- ୧/୧୩)

ଅର୍ଥାତ୍ ଆଭୂଷଣ ରହିତ ସୁନ୍ଦରୀ ପ୍ରିୟାର ମୁଖ ତା'ର କାନ୍ତକୁ ମଧ୍ୟ ସୁନ୍ଦର ଲାଗି ନଥାଏ । ଏହା ସତ୍ୟ । ପ୍ରିୟା ଯେତେ ସୁନ୍ଦରୀ ହେଲେ ମଧ୍ୟ ଆଭୂଷଣ ବିନା ତାର ସୌନ୍ଦର୍ଯ୍ୟ ଫୁଟି ନଥାଏ । ସେହିପରି କାବ୍ୟର ଭୂଷଣ ହେଉଛି ଅଳଙ୍କାର । ଆଚାର୍ଯ୍ୟ ଦଣ୍ଡୀ ଅଳଙ୍କାରକୁ କାବ୍ୟର ଶୋଭାକାରକ ଧର୍ମ ରୂପେ ବିବେଚନା କରିଛନ୍ତି । ଏହି ମର୍ମରେ ଆଚାର୍ଯ୍ୟ ଦଣ୍ଡୀ କହିଛନ୍ତି-

**'କାବ୍ୟ ଶୋଭାକରାନ୍ ଧର୍ମାନଳଙ୍କାରାନ୍ ପ୍ରଚକ୍ଷତେ ।'** (କାବ୍ୟାଦର୍ଶ-୨/୧)

ଅର୍ଥାତ୍ କାବ୍ୟର ଶୋଭା ବିଧାୟକ ଧର୍ମ ହିଁ ଅଳଙ୍କାର । ଦଣ୍ଡୀଙ୍କର ଏହି ବିଶେଷମତଟି ସର୍ବଜନ ଗ୍ରାହ୍ୟ ହୋଇପାରିଛି ।

ଆଚାର୍ଯ୍ୟବାମନ ମୁଖ୍ୟତଃ ରୀତିବାଦୀ ଭାବରେ ସୁପରିଚିତ । ସେ ରୀତିସମ୍ପ୍ରଦାୟର ବିଶିଷ୍ଟ ପ୍ରବକ୍ତା । ଆଚାର୍ଯ୍ୟ ବାମନ କାବ୍ୟରେ ଅଳଙ୍କାରର ଭୂମିକାକୁ ମଧ୍ୟ ଗୁରୁତ୍ୱ ପ୍ରଦାନ କରିଛନ୍ତି । ତେଣୁ ବାମନ ଉପସ୍ଥାପନ କରିଛନ୍ତି-

**'କାବ୍ୟ ଗ୍ରାହ୍ୟମ୍ ଅଳଙ୍କାରାତ୍ ।'** (କାବ୍ୟାଳଙ୍କାର ସୂତ୍ରବୃତ୍ତି-୧/୧)
ପୁନଶ୍ଚ ବାମନ କହିଛନ୍ତି- **'ସୌନ୍ଦର୍ଯ୍ୟମଳଙ୍କାରଃ ।'**
ବାମନ ମଧ୍ୟ କହିଛନ୍ତି- **''ଅଳଙ୍କୃତିଃ ଅଳଙ୍କାରଃ । କରଣ ବ୍ୟୁତ୍ପତ୍ତ୍ୟାପୁନଃ ଅଳଙ୍କାର ଶବ୍ଦୋଽୟମୁପମାଦିଷୁ ବର୍ତ୍ତତେ ।''** (କାବ୍ୟାଳଙ୍କାର ସୂତ୍ରବୃତ୍ତି)

ସେହିପରି 'ଅଗ୍ନି ପୁରାଣ' ରେ କାବ୍ୟର ଶୋଭାକାରକ ଧର୍ମକୁ ଅଳଙ୍କାର ବୋଲି ବିଚାର କରାଯାଇଛି । 'ଅଗ୍ନି ପୁରାଣ'ରେ କୁହାଯାଇଛି-

**'କାବ୍ୟ ଶୋଭା କରାନ୍ ଧର୍ମାନଳଙ୍କାରାନ୍ ପ୍ରଚକ୍ଷ୍ୟତେ ।'** (ଅଗ୍ନି ପୁରାଣ-୩୪୨)

ଧ୍ୱନୀବାଦୀ ଆନନ୍ଦବର୍ଦ୍ଧନ ଅଳଙ୍କାରକୁ କାବ୍ୟର ବାହ୍ୟ ଶୋଭା ବିଧାୟକ ଧର୍ମ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ରସାଦିର ଅଙ୍ଗରୂପେ କାବ୍ୟରେ ଅଳଙ୍କାରର ପ୍ରୟୋଗ ହେବା ଯଥାର୍ଥ ବୋଲି ମନେହୁଏ । ସେଥିପାଇଁ ସେ ଉଲ୍ଲେଖ କରିଛନ୍ତି-

**'ବିବକ୍ଷା ତତ୍‌ପରତ୍ୱେନ ନାଙ୍ଗିତ୍ୱେନ କଦାଚନ ।'**

ସେହିପରି ବକ୍ରୋକ୍ତି ସମ୍ପ୍ରଦାୟର ପ୍ରବକ୍ତା ଆଚାର୍ଯ୍ୟ କୁନ୍ତକ କାବ୍ୟରେ ଅଳଙ୍କାରର ପ୍ରାସଙ୍ଗିକତାକୁ ବିଚାରକୁ ନେଇ ନିମ୍ନ ମତପ୍ରଦାନ କରିଛନ୍ତି-

**'ଅଳଙ୍କୃତିରଳଂ କାର୍ଯ୍ୟମପୋଦ୍ଧୃତ୍ୟ ବିବେଚ୍ୟତେ**
**ତଦୁପାୟ ତୟା ତତ୍ତ୍ୱଂ ସାଳଙ୍କାରସ୍ୟ କାବ୍ୟତା ।'**

ଅର୍ଥାତ୍ କୁନ୍ତକ କହୁଛନ୍ତି ଯେ ଅଳଙ୍କାର କାବ୍ୟର ଏକ ନିତ୍ୟ ଅଙ୍ଗ । ଅଳଙ୍କାର ବ୍ୟତିରେକ କାବ୍ୟ କାବ୍ୟ ହୋଇ ନପାରେ ।

ଜୟଦେବ ସ୍ୱୀୟ ରଚିତ 'ଚନ୍ଦ୍ରାଲୋକ' ଗ୍ରନ୍ଥରେ ଅଳଙ୍କାରର ଗୁରୁତ୍ୱ କଥା ପ୍ରତିପାଦନ କରିଛନ୍ତି । ଜୟଦେବ ଘୋଷଣା କରିଛନ୍ତି-

**'ଅଙ୍ଗୀ କରୋତି ଯଃ କାବ୍ୟଂ ଶବ୍ଦାର୍ଥାବନଳଂ କୃତୀ**
**ଅସୌ ନ ମନ୍ୟତେ କସ୍ମାଦନୁଷ୍ଣମନଳଂ କୃତୀଂ ।'** (ଚନ୍ଦ୍ରାଲୋକ-୧/୮)

ଅର୍ଥାତ୍ ଅଳଙ୍କାର ଶୂନ୍ୟ କାବ୍ୟକୁ ଯେଉଁ ବ୍ୟକ୍ତି ସ୍ୱୀକାର କରିଥାଏ, ସେ ଅଗ୍ନିରେ ଶୀତଳତାକୁ କାହିଁକି ବା ସ୍ୱୀକାର ନ କରିବ ? ସୁତରାଂ ଏ ପରିପ୍ରେକ୍ଷୀରେ କୁହାଯାଇପାରେ ଯେ ଅଗ୍ନିରୁ ଯେପରି ଉତ୍ତାପକୁ ଉପେକ୍ଷା କରାଯାଇ ନପାରେ, କାବ୍ୟରେ ସେହିପରି ଅଳଙ୍କାରକୁ ଉପେକ୍ଷା କରାଯାଇ ପାରିବ ନାହିଁ ।

ଯୁଗେ ଯୁଗେ ଆଳଙ୍କାରିକଗଣ କାବ୍ୟରେ ଅଳଙ୍କାରର ପ୍ରାସଙ୍ଗିକତାକୁ ସର୍ବାଦୌ ଗ୍ରହଣ କରିନେଇଛନ୍ତି । ଏପରିକି 'ଅଗ୍ନି ପୁରାଣ'ରେ ଉଲ୍ଲେଖ ରହିଛି-

**'ଅର୍ଥାଳଙ୍କାର ରହିତା ବିଧୁବେବ ସରସ୍ୱତୀ'** (ଅଗ୍ନି ପୁରାଣ-୮/୧)

ଅର୍ଥାତ୍ ଅର୍ଥାଳଙ୍କାର ବିନା କାବ୍ୟ ସରସ୍ୱତୀ ବିଧବା ଭଳି ଦେଖାଯାନ୍ତି । ଆଳଙ୍କାରିକ ବିଶ୍ୱନାଥ କବିରାଜ ଲେଖିଛନ୍ତି-

**'ଶବ୍ଦାର୍ଥୟୋରସ୍ଥିରା ଯେ ଧର୍ମା ଶୋଭାଦିଶାୟିନି**
**ରସାଦୀନୁ ପକୁର୍ବନ୍ତୋଽଳକାରାସ୍ତେଽଙ୍ଗ ଦାଦିବତ୍ ।'** (ସାହିତ୍ୟ ଦର୍ପଣ-୧୦/୧)

ଅର୍ଥାତ୍ ଶବ୍ଦାର୍ଥ ରୂପ କାବ୍ୟ ଶରୀରର ଶୋଭ ବର୍ଦ୍ଧନ କାରୀ ଯେଉଁ ସବୁ ଅସ୍ଥିର ଧର୍ମ ମନୁଷ୍ୟ ଶରୀରର ଅଙ୍ଗଜ (ବାଜବନ୍ଧ), ବଳୟାଦି, ଅଳଙ୍କାର ପରି, ଆତ୍ମାରୂପ ରସ ଓ ଭାବାଦିର ଉପକାର ସାଧନ କରିଥାନ୍ତି, ସେଗୁଡ଼ିକୁ ଅଳଙ୍କାର କୁହାଯାଏ ।

ଆଚାର୍ଯ୍ୟ ଭାମହ ମଧ ମତ ରଖିଛନ୍ତି ଯେ ସୁନ୍ଦର ଆଖିରେ କଳାକଜ୍ଜ୍ୱଳ ସୁନ୍ଦର ଦିଶିବା ଭଳି ଆଶ୍ରୟ ଦ୍ୱାରା ଅଳଙ୍କାର ବସ୍ତୁ ମଧ ସୁନ୍ଦର ହୋଇଥାଏ । ଭାମହ ଲେଖିଛନ୍ତି-

''କିଂ ଚିଦାଶ୍ରୟ ସୌନ୍ଦର୍ଯ୍ୟାଦ୍ଧତ୍ତେ ଶୋଭାମସାଧ୍ୱପି
କାନ୍ତା ବିଲୋଚନନ୍ୟସ୍ତ ମଳୀମସମିବାଞ୍ଜନନ୍ ।''

ବେଦବ୍ୟାସ 'ଅଗ୍ନି ପୁରାଣ' ଗ୍ରନ୍ଥରେ ୭ ଗୋଟି ଶବ୍ଦାଳଙ୍କାର ଏବଂ ୧୫ ଗୋଟି ଅର୍ଥାଳଙ୍କାରର ନିର୍ଦ୍ଧାରଣ କରିଛନ୍ତି । ଭଟ୍ଟି ତାଙ୍କର ଭଟ୍ଟି କାବ୍ୟରେ ୩୮ ଗୋଟି ଅଳଙ୍କାର ସମ୍ପର୍କରେ ଆଲୋକପାତ କରିଛନ୍ତି । ଆଚାର୍ଯ୍ୟ ଭାମହ (ଷଷ୍ଠ ଶତାବ୍ଦୀର ପ୍ରଥମାର୍ଦ୍ଧ) ତାଙ୍କର 'କାବ୍ୟାଳଙ୍କାରଃ ଗ୍ରନ୍ଥରେ ୩୮ ଗୋଟି ଅଳଙ୍କାରର ସୂଚନା ଦେଇଛନ୍ତି । ସେ ଯମକ, ରୂପକ, ଦୀପକ, ଉପମା, ଆକ୍ଷେପ, ଶ୍ଲିଷ୍ଟ ଓ ଆଶୀଃ- ଏହି ସାତଗୋଟି ଅଳଙ୍କାରର ପ୍ରକାରଭେଦ ନିରୂପଣ କରିଛନ୍ତି । ତାଙ୍କ ମତରେ ଯମକ ଛଅ ପ୍ରକାରର, ଯଥା- ଆଦି ଯମକ, ମଧ୍ୟାନ୍ତ ଯମକ, ପଦାଭ୍ୟାସ ଯମକ, ଆବଳୀ ଯମକ, ସମସ୍ତପାଦଯମକ ଓ ହେୟ ଯମକ । ସେ ରୂପକକୁ ଦୁଇ ଭାବରେ ବିଭକ୍ତ କରିଛନ୍ତି; ଯଥା-ସମସ୍ତ ବସ୍ତୁ ବିଷୟ ରୂପକ ଓ ଏକଦେଶବିବର୍ତ୍ତି ରୂପକ । ସେ ଦୀପକକୁ ତିନିଭାଗରେ ବିଭକ୍ତ କରିଛନ୍ତି, ଯଥା-ଆଦି ଦୀପକ, ମଧ ଦୀପକ ଓ ଅନ୍ତ ଦୀପକ । ତାଙ୍କ ମତରେ ଉପମା ତିନି ପ୍ରକାରର ଯଥା-ନିନ୍ଦୋପମା, ପ୍ରଶଂସୋପମା ଓ ଆଚିଖ୍ୟାସୋପମା । ସେ ଆକ୍ଷେପକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଯଥା- ବିଦ୍ଧ୍ୟମାଣ ବିଷୟକ ଆକ୍ଷେପ ଓ ଉକ୍ତ ବିଷୟକ ଆକ୍ଷେପ । ସେହିପରି ସେ ଶ୍ଲିଷ୍ଟକୁ ତିନି ଭାଗରେ ବିଭକ୍ତ କରିଛନ୍ତି, ଯଥା-ସହୋକ୍ତିମୂଳକ ଶ୍ଲିଷ୍ଟ, ଉପମାଯୁକ୍ତ ଶ୍ଲିଷ୍ଟ ଓ ହେତୁଯୁକ୍ତ ଶ୍ଲିଷ୍ଟ । ଆଶୀଃ ଅଳଙ୍କାର ଦୁଇ ପ୍ରକାରର, ଯଥା- ସୌହାର୍ଦ୍ଦ୍ୟ ଆଶୀଃ ଓ ଅବିରୋଧ ଆଶୀଃ ।

ସପ୍ତମ ଶତାବ୍ଦୀରେ ଆଚାର୍ଯ୍ୟ ଦଣ୍ଡୀ ତାଙ୍କର 'କାବ୍ୟାଦର୍ଶଃ' ଗ୍ରନ୍ଥର ୩୭ ଗୋଟି ଅଳଙ୍କାରର ଉଲ୍ଲେଖ କରିଛନ୍ତି । ଉଦ୍‌ଭଟ (୮ମ ଶତାବ୍ଦୀ) ତାଙ୍କର 'କାବ୍ୟାଳଙ୍କାରସାର ସଂଗ୍ରହ' ଗ୍ରନ୍ଥରେ ୪୧ ଗୋଟି ଅଳଙ୍କାରର ବର୍ଣ୍ଣନା କରିଛନ୍ତି । ଆଚାର୍ଯ୍ୟବାମନ (୮ମ ଶତାବ୍ଦୀ) ତାଙ୍କର 'କାବ୍ୟାଳଙ୍କାର ସୂତ୍ର'ରେ ୩୩ ଗୋଟି ଅଳଙ୍କାରର ନାମୋଲ୍ଲେଖ କରିଛନ୍ତି । ରୁଦ୍ରଟ (ନବମ ଶତାବ୍ଦୀ) ତାଙ୍କର 'କାବ୍ୟାଳଙ୍କାର' ଗ୍ରନ୍ଥରେ ୫୫ ଗୋଟି ଅଳଙ୍କାରର କଥା କହିଛନ୍ତି । ଏଥିରୁ ୫ ଗୋଟି ହେଉଛି ଶବ୍ଦାଳଙ୍କାର ଏବଂ ୫୦ ଗୋଟି ହେଉଛି ଅର୍ଥାଳଙ୍କାର । ଭୋଜ (ଏକାଦଶ ଶତାବ୍ଦୀ) 'ସରସ୍ୱତୀକଣ୍ଠାଭରଣ'ରେ ୭୨ ଗୋଟି ଅଳଙ୍କାର ବର୍ଣ୍ଣନା କରିଛନ୍ତି । ଏଥି ମଧ୍ୟରୁ ୨୪ ଗୋଟି ହେଉଛି ଶବ୍ଦାଳଙ୍କାର, ୨୪ ଗୋଟି ହେଉଛି ଅର୍ଥାଳଙ୍କାର ଏବଂ ୨୪ ଗୋଟି ହେଉଛି ଉଭୟାଳଙ୍କାର । ଆଚାର୍ଯ୍ୟ

ମମ୍ମଟ (ଏକାଦଶ ଶତାବ୍ଦୀ) ତାଙ୍କର 'କାବ୍ୟପ୍ରକାଶ'ରେ ୮ଗୋଟି ଶବ୍ଦାଳଙ୍କାର ଏବଂ ୨୨ ଗୋଟି ଅର୍ଥାଳଙ୍କାରର ସୂଚନା ଦେଇଛନ୍ତି । ରୁଯ୍ୟକ (ଦ୍ୱାଦଶ ଶତାବ୍ଦୀ) ତାଙ୍କର 'ଅଳଙ୍କାର ସୂତ୍ର' ଗ୍ରନ୍ଥରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ସଂଖ୍ୟା ୮୪ ବୋଲି ନିର୍ଣ୍ଣୟ କରିଛନ୍ତି । ବାଗ୍‌ଭଟ ତାଙ୍କର ଗ୍ରନ୍ଥ 'ବାଗ୍‌ଭଟାଳଙ୍କାର'ରେ ୪ ଗୋଟି ଶବ୍ଦାଳଙ୍କାର ଏବଂ ୩୫ ଗୋଟି ଅର୍ଥାଳଙ୍କାର ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ହେମଚନ୍ଦ୍ରାଚାର୍ଯ୍ୟ (ଦ୍ୱାଦଶ ଶତାବ୍ଦୀ) ତାଙ୍କର 'କାବ୍ୟାନୁଶାସନ'ରେ ୬ ଗୋଟି ଶବ୍ଦାଳଙ୍କାର ଏବଂ ୨୮ ଗୋଟି ଅର୍ଥାଳଙ୍କାର ସର୍ମ୍ପକରେ କହିଛନ୍ତି । ଜୟଦେବ (୧୨ଶ-୧୩ଶ ଶତାବ୍ଦୀ) ସ୍ୱୀୟ ପ୍ରଣୀତ 'ଚନ୍ଦ୍ରାଲୋକ'ରେ ୮ ଗୋଟି ଶବ୍ଦାଳଙ୍କାର ଏବଂ ୮୨ ଗୋଟି ଅର୍ଥାଳଙ୍କାର କଥା କହିଛନ୍ତି । ବିଶ୍ୱନାଥ କବିରାଜ (୧୪ଶ ଶତାବ୍ଦୀ) ତାଙ୍କର 'ସାହିତ୍ୟ ଦର୍ପଣ' ଗ୍ରନ୍ଥରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ସଂଖ୍ୟା ୮୨ ବୋଲି ନିର୍ଣ୍ଣୟ କରିଛନ୍ତି । ପଣ୍ଡିତରାଜ ଜଗନ୍ନାଥ (୧୭ଶ ଶତାବ୍ଦୀ) 'ରସଗଙ୍ଗାଧର' ଗ୍ରନ୍ଥରେ ୭୦ ଗୋଟି ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ସମ୍ପର୍କରେ ଆଲୋକପାତ କରିଛନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଆଚାର୍ଯ୍ୟ ଉଦଭଟ ତାଙ୍କର 'କାବ୍ୟାଳଙ୍କାର-ସାର ସଂଗ୍ରହ' ଗ୍ରନ୍ଥରେ ଉଲ୍ଲେଖ କରିଥିବା ୪୧ ଗୋଟି ଅଳଙ୍କାରକୁ ୬ ଗୋଟି ବର୍ଗରେ ବର୍ଗୀକରଣ କରିଛନ୍ତି ।

**୧. ପ୍ରଥମ ବର୍ଗ-** ପୁନରୁକ୍ତି ବଦାଭାସ, ଅନୁପ୍ରାସ, ଛେକାନୁପ୍ରାସ, ଲାଟାନୁପ୍ରାସ, ରୂପକ, ଉପମା, ଦୀପକ ଓ ପ୍ରତିବସ୍ତୁପମା (୮ଟି ଅଳଙ୍କାର)

**୨. ଦ୍ୱିତୀୟ ବର୍ଗ-** ଆକ୍ଷେପ, ଅର୍ଥାନ୍ତରନ୍ୟାସ, ବ୍ୟତିରେକ, ବିଭାବନା, ସମାସୋକ୍ତି ଓ ଅତିଶୟୋକ୍ତି । (୬ଟି ଅଳଙ୍କାର)

**୩. ତୃତୀୟ ବର୍ଗ-** ଯଥାସଂଖ୍ୟ, ଉତ୍‌ପ୍ରେକ୍ଷା ଓ ସ୍ୱଭାବୋକ୍ତି । (୩ଟି ଅଳଙ୍କାର)

**୪. ଚତୁର୍ଥ ବର୍ଗ-** ପ୍ରେୟଃ, ରସବତ୍, ଉର୍ଜସ୍ୱି, ପର୍ଯ୍ୟାୟୋକ୍ତି, ଉଦାତ୍ତ ଓ ଶ୍ଳିଷ୍ଟ । (୬ଟି ଅଳଙ୍କାର)

**୫. ପଞ୍ଚମ ବର୍ଗ-** ଅପହ୍ନୁତି, ବିଶେଷୋକ୍ତି, ବିରୋଧ, ତୁଲ୍ୟଯୋଗିତା, ଅପସ୍ତୁତ ପ୍ରଶଂସା, ବ୍ୟାଜସ୍ତୁତି, ନିଦର୍ଶନା, ଉପମେୟୋପମା, ସହୋକ୍ତି, ସଙ୍କର ଓ ପରିବୃତ୍ତ । (୧୧ ଗୋଟି ଅଳଙ୍କାର)

**୬. ଷଷ୍ଠବର୍ଗ-** ଅନନ୍ୱୟ, ସନ୍ଦେହ, ସଂସୃଷ୍ଟି, ଭାବିକ, ବ୍ୟାଜନିନ୍ଦା, ଦୃଷ୍ଟାନ୍ତ ଓ କାବ୍ୟଲିଙ୍ଗ । (୭ ଗୋଟି ଅଳଙ୍କାର)

ସେହିପରି ରୁଦ୍ରଟ (ନବମ ଶତାବ୍ଦୀ) ତାଙ୍କର 'କାବ୍ୟାଳଙ୍କର' ଗ୍ରନ୍ଥରେ ୬୭ ଗୋଟି ଅଳଙ୍କାରକୁ ଚାରିଗୋଟି ବର୍ଗରେ ବର୍ଗୀକରଣ କରିଛନ୍ତି ।

**୧. ବାସ୍ତବ ବର୍ଗ-** ଏଥିରେ ୨୩ ଗୋଟି ଅଳଙ୍କାର ରହିଛି । ଯଥା- ସହୋକ୍ତି, ସମୁଚ୍ଚୟ, ସ୍ୱଭାବୋକ୍ତି, ଯଥାସଂଖ୍ୟ, ଭାବ, ପର୍ଯ୍ୟାୟ, ବିଷମ,ଦୀପକ, ଅନୁମାନ, ପରିକର, ପରିବୃତ୍ତ, ପରିସଂଖ୍ୟ, ସୂକ୍ଷ୍ମ, ଲେଶ, ଅବସର, ମୀଳିତ ଓ ଏକାବଳୀ ।

**୨. ଔପମ୍ୟବର୍ଗ-** ଏହି ବର୍ଗରେ ୨୧ ଗୋଟି ଅଳଙ୍କାର ରହିଛି । ଯଥା-ଉପମା, ଉତ୍ପ୍ରେକ୍ଷା, ରୂପକ, ଅପହ୍ନୁତି, ସଂଶୟ, ସନ୍ଦେହ, ସମାସୋକ୍ତି, ମତ, ଅନ୍ୟୋନ୍ୟ, ପ୍ରତୀପ, ଅର୍ଥାନ୍ତରନ୍ୟାସ, ଉଭୟନ୍ୟାସ, ଭ୍ରାନ୍ତିମାନ, ଆକ୍ଷେପ, ପ୍ରତ୍ୟନୀକ, ଦୃଷ୍ଟାନ୍ତ, ପୂର୍ବ, ସମୁଚ୍ଚୟ, ଅପ୍ରସ୍ତୁତ ପ୍ରଂଶସା, ସାମ୍ୟ ଓ ସ୍ମରଣ ।

**୩. ଅତିଶୟ ବର୍ଗ-** ଏଥିରେ ୧୨ ଗୋଟି ଅଳଙ୍କାର ରହିଛି । ଯଥା-ପୂର୍ବ, ବିଶେଷ, ଉତ୍ପ୍ରେକ୍ଷା, ବିଭାବନା, ତଦ୍‌ଗୁଣ, ଅଧିକ, ବିରୋଧ, ଅସଙ୍ଗତି, ବିଷମ, ପିହିତ, ବ୍ୟାଘାତ ଓ ହେତୁ ।

**୪. ଶ୍ଳେଷ ବର୍ଗ-** ଏହା ଦୁଇ ଭାଗରେ ବିଭକ୍ତ; କ୍ଷୁଦ୍ର ଓ ସଂକୀର୍ଣ୍ଣ

(କ) କ୍ଷୁଦ୍ର ବା ପ୍ରଥମ ଭାଗ- ବିଶେଷ, ବିରୋଧ, ଅଧିକ, ବକ୍ର, ବ୍ୟାଜ, ଅକ୍ତି, ଅସମ୍ଭବ, ଅବୟବ ଓ ବିରୋଧାଭାସ । (୯ଟି ଅଳଙ୍କାର)

(ଖ) ସଂକୀର୍ଣ୍ଣ ବା ଦ୍ୱିତୀୟଭାଗ- ସଂସୃଷ୍ଟି ଓ ସଙ୍କର (୨ ଗୋଟି ଅଳଙ୍କାର)

ଚତୁର୍ଦ୍ଦଶ ଶତାବ୍ଦୀରେ ଆଚାର୍ଯ୍ୟ ବିଦ୍ୟାନାଥ ଆବିର୍ଭୂତ ହୋଇଥିଲେ । ସେ ତାଙ୍କର 'ପ୍ରତାପ ରୁଦ୍ରୟସିଭୂଷଣ' ଗ୍ରନ୍ଥରେ ୭୧ ଗୋଟି ଅଳଙ୍କାରକୁ ୪ଟି ବର୍ଗରେ ବର୍ଗୀକରଣ କରିଛନ୍ତି-

**୧) ପ୍ରତୀୟମାନ ବାସ୍ତବ ବର୍ଗ-** ଏଥିରେ ୧୦ଟି ଅଳଙ୍କାର ରହିଛି । ଯଥା- ସମାସୋକ୍ତି, ପର୍ଯ୍ୟାୟୋକ୍ତି, ଆକ୍ଷେପ, ବ୍ୟାଜସ୍ତୁତି, ଉପମେୟୋପମା, ଅନନ୍ୱୟ ଅତିଶୟୋକ୍ତି, ପରିକର, ଅପ୍ରସ୍ତୁତ ପ୍ରଶଂସା ଓ ବିଶେଷୋକ୍ତି ।

**୨) ପ୍ରତୀୟମାନୋପମ୍ୟ ବର୍ଗ -** ଏହି ବର୍ଗର ରହିଥିବା ୧୫ ଗୋଟି ଅଳଙ୍କାର ହେଉଛି-ରୂପକ, ପରିଣାମ, ସନ୍ଦେହ, ଭ୍ରାନ୍ତିମାନ, ଉଲ୍ଲେଖ, ଉତ୍ପ୍ରେକ୍ଷା, ସ୍ମରଣ, ତୁଲ୍ୟଯୋଗିତା, ଦୀପକ, ପ୍ରତିବସ୍ତୁପମା, ଦୃଷ୍ଟାନ୍ତ, ସହୋକ୍ତି, ବ୍ୟତିରେକ, ନିଦର୍ଶନା ଓ ଶ୍ଳେଷ ।

**୩. ପ୍ରତୀୟମାନ ସ୍ୱଭାବାଦିବର୍ଗ-**ଏହି ବର୍ଗରେ ରହିଥିବା ୭ଗୋଟି ଅଳଙ୍କାର ହେଉଛି-ରସବତ୍, ପ୍ରେୟଃ, ଉର୍ଜସ୍ୱି, ସମାହିତ, ଭାବୋଦୟ,ଭାବସନ୍ଧି ଓ ଭାବଶବଳତା ।

**୪. ଅସ୍ଫୁଟ ପ୍ରତୀୟମାନବର୍ଗ-**ଏହି ବର୍ଗରେ ୩୯ଟି ଅଳଙ୍କାର ରହିଛ । ଯଥା- ଉପମା, ବିନୋକ୍ତି, ଅର୍ଥାନ୍ତରନ୍ୟାସ, ବିରୋଧ, ବିଭାବନା, ବିଶେଷୋକ୍ତି, ବିଷମ, ସମ, ଚିତ୍ର, ଅଧିକ, ଅନ୍ୟୋନ୍ୟ, କାରଣମାଳା, ଏକାବଳୀ, ବ୍ୟାଘାତ, ମାଳାଦୀପକ, କାବ୍ୟଲିଙ୍ଗ, ଅନୁମାନ, ସାର, ଯଥାସଂଖ୍ୟା, ଅର୍ଥାପତ୍ତି, ପର୍ଯ୍ୟାୟ, ପରିବୃତ୍ତ, ପରିସଂଖ୍ୟ, ବିକଳ୍ପ,

ସମୁଚ୍ଚୟ, ସମାଧି, ପ୍ରତ୍ୟନୀକ, ପ୍ରତୀପ, ବିଶେଷ, ମୀଳିତ, ସାମାନ୍ୟ, ଅସଙ୍ଗତି, ତଦ୍‌ଗୁଣ, ଅତଦ୍‌ଗୁଣ, ବ୍ୟାଜୋକ୍ତି, ବକ୍ରୋକ୍ତି, ସ୍ୱଭାବୋକ୍ତି, ଭାବିକ, ଓ ଉଦାତ୍ତ ।

୧୪ଶ ଶତାବ୍ଦୀର ଆଚାର୍ଯ୍ୟ ବିଦ୍ୟାଧର ତାଙ୍କ 'ଏକାବଳୀ' ଗ୍ରନ୍ଥରେ ୬୯ ଗୋଟି ଅଳଙ୍କାରର ଉଲ୍ଲେଖ କରି ସେଗୁଡିକୁ ନିମ୍ନ ୮ ଗୋଟି ବର୍ଗରେ ବର୍ଗୀକରଣ କରିଛନ୍ତି ।

**୧. ଭେଦ ପ୍ରଧାନ ବର୍ଗ** - ଏଥିରେ ରହିଥିବା ୪ଗୋଟି ଅଳଙ୍କାର ହେଲା-ଉପମା, ଉପମେୟୋପମା, ଅନନ୍ୱୟ ଓ ସ୍ମରଣ ।

**୨. ଅଭେଦ ପ୍ରଧାନବର୍ଗ** - ଏହା ୨ ଗୋଟି ଭାଗରେ ବିଭକ୍ତ- (କ) ଆରୋପମୂଳକ (ଖ) ଅଧ୍ୟବଶାୟମୂଳକ ।

(କ) ଆରୋପମୂଳକ-ଏଥିରେ ୬ ଗୋଟି ଅଳଙ୍କାର ରହିଛି । ସେଗୁଡିକ ହେଲା ରୂପକ, ପରିଣାମ, ସନ୍ଦେହ, ଭ୍ରାନ୍ତିମାନ, ଉଲ୍ଲେଖ ଓ ଅପହ୍ନୁତି ।

(ଖ) ଅଧ୍ୟବଶାୟମୂଳକ- ଏଥିରେ ଉତ୍‌ପ୍ରେକ୍ଷା ଓ ଅତିଶୟୋକ୍ତି ଏହି ଦୁଇଗୋଟି ଅଳଙ୍କାର ରହିଛି ।

**୩. ଗମ୍ୟପମ୍ୟଶୟ ବର୍ଗ**- ଏଥିରେ ରହିଥିବା ୧୬ ଗୋଟି ଅଳଙ୍କାର ହେଲା-ଦୀପକ, ତୁଲ୍ୟଯୋଗିତା, ପ୍ରତିବସ୍ତୁପମା, ଦୃଷ୍ଟାନ୍ତ, ନିଦର୍ଶନା, ବ୍ୟତିରେକ, ସହୋକ୍ତି, ବିନୋକ୍ତି, ସମାସୋକ୍ତି, ପରିକର, ପରିକରାଙ୍କୁର, ଶ୍ଳେଷ, ଅପ୍ରସ୍ତୁତପ୍ରଶଂସା, ଅର୍ଥାନ୍ତରନ୍ୟାସ, ପର୍ଯ୍ୟାୟୋକ୍ତି ଓ ଆକ୍ଷେପ ।

**୪. ବିରୋଧବର୍ଗ**- ଏହି ବର୍ଗରେ ୧୨ ଗୋଟି ଅଳଙ୍କାର ରହିଛି । ଯଥା-ବିରୋଧ, ବିଭାବନା, ବିଶେଷୋକ୍ତି, ଅତିଶୟୋକ୍ତି, ଅସଙ୍ଗତି, ବିଷମ, ସମ, ବିଚିତ୍ର, ଅଧିକ, ଅନ୍ୟୋନ୍ୟ, ବିଶେଷ ଓ ବ୍ୟାଘାତ ।

**୫. ଶୃଙ୍ଖଳାକାର ବର୍ଗ**- ଏହି ବର୍ଗରେ ୧୩ ଗୋଟି ଅଳଙ୍କାର ରହିଛି । ସେଗୁଡିକ ହେଲା-କାରଣମାଳା, ଏକାବଳୀ, ମାଳାଦୀପକ, ସାର, କାବ୍ୟଲିଙ୍ଗ, ଅନୁମାନ, ଯଥାସଂଖ୍ୟ, ପର୍ଯ୍ୟାୟ, ପରିବୃତ୍ତ, ପରିସଂଖ୍ୟ, ପର୍ଯ୍ୟାୟ, ଅର୍ଥାପତି, ସମୁଚ୍ଚୟ ଓ ସମାଧି ।

**୬. ଲୋକାନ୍ୟାୟାଶ୍ରୟ ବର୍ଗ**-ଏହି ବର୍ଗରେ ରହିଥିବା ୮ ଗୋଟି ଅଳଙ୍କାର ହେଲା - ପ୍ରତ୍ୟନୀକ, ପ୍ରତୀପ, ମୀଳିତ, ସାମାନ୍ୟ, ତଦ୍‌ଗୁଣ, ଅତଦ୍‌ଗୁଣ, ଅନ୍ତର ଓ ପ୍ରଶ୍ନୋତ୍ତର ।

**୭.ଗୂଢାର୍ଥ ପ୍ରତୀତ ମୂଳକ ବର୍ଗ**-ଏଥିରେ ୬ଟି ଅଳଙ୍କାର ରହିଛି । ଯଥା-ସୂକ୍ଷ୍ମ, ବ୍ୟାଜୋକ୍ତି, ବକ୍ରୋକ୍ତି, ସ୍ୱଭାବୋକ୍ତି, ଭାବିକ ଓ ଉଦାତ୍ତ ।

**୮. ଅନ୍ୟାନ୍ୟ ଶ୍ଳେଷବର୍ଗ**- ଏଥିରେ ଦୁଇଗୋଟି ଅଳଙ୍କାର ରହିଛି । ଯଥା-ସଂସୃଷ୍ଟି ଓ ସଙ୍କର ।

ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ 'ସାହିତ୍ୟ ଦର୍ପଣ' ଗ୍ରନ୍ଥରେ ୮୨ ଗୋଟି ଅଳଙ୍କାରର ନାମୋଲ୍ଲେଖ କରିଛନ୍ତି । ସେ ଅଳଙ୍କାର ଗୁଡ଼ିକୁ ଦୁଇଭାଗରେ ବିଭକ୍ତ କରିଛନ୍ତି । ଯଥା- ୧) ଶବ୍ଦାଳଙ୍କାର, ୨) ଅର୍ଥାଳଙ୍କାର । ବିଶ୍ୱନାଥ କବିରାଜ ୧୨ ଗୋଟି ଶବ୍ଦାଳଙ୍କାର ଏବଂ ୭୦ ଗୋଟି ଅର୍ଥାଳଙ୍କାରକୁ ବିଚାରକୁ ନେଇଛନ୍ତି ।

ହିନ୍ଦୀ ରୀତିସାହିତ୍ୟର ଆଳଙ୍କାରିକ ଭଟ୍ଟଦେବ ଶଙ୍କର ପୁରୋହିତ ତାଙ୍କର 'ଅଳଙ୍କାର ମଞ୍ଜୁଷା' ଗ୍ରନ୍ଥରେ ସମୁଦାୟ ୧୧୫ ଗୋଟି ଅଳଙ୍କାରର ନାମୋଲ୍ଲେଖ କରିଛନ୍ତି ।

ଏହିପରି ଭରତମୁନିଙ୍କଠାରୁ ଆରମ୍ଭ କରି ଭଟ୍ଟଦେବ ଶଙ୍କରପୁରୋହିତଙ୍କ ପର୍ଯ୍ୟନ୍ତ ଅଳଙ୍କାରର ବିକାଶକ୍ରମ ପ୍ରତି ଦୃକ୍‌ପାତ କଲେ ଜଣାଯାଏ ଯେ ଅଳଙ୍କାରଗୁଡିକର ସଂଖ୍ୟା ବେଶ୍ ବଢ଼ିବାରେ ଲାଗିଛି । ଏପର୍ଯ୍ୟନ୍ତ ଅଳଙ୍କାର ସଂଖ୍ୟା ପ୍ରାୟ ୨୦୦ରେ ପହଞ୍ଚିଲାଣି । ସେଥିମଧ୍ୟରୁ ଉଲ୍ଲେଖଯୋଗ୍ୟ ଅଳଙ୍କାର ଗୁଡ଼ିକ ହେଉଛି - ୧) ଅନୁପ୍ରାସ, ୨) ଯମକ, ୩) ଶ୍ଳେଷ, ୪) ପୁନରୁକ୍ତି ବଦାଭାସ, ୫) ବକ୍ରୋକ୍ତି, ୬) ପ୍ରହେଳିକା, ୭) ଶୃଙ୍ଖଳା, ୮) ଭାଷାସମ, ୯) ଦତ୍ତାକ୍ଷର, ୧୦) ଚ୍ୟୁତାକ୍ଷର (୧୧) ଅନ୍ତର୍ଲିପିକା, ୧୨) ବହିଲିପିକା, ୧୩) ଚିତ୍ର, ୧୪) ଉତ୍‌ପ୍ରେକ୍ଷା, ୧୫) ବ୍ୟତିରେକ, ୧୬) ବିରୋଧଭାସ, ୧୭) ରୂପକ, ୧୮) ଉପମା, ୧୯) ସମ, ୨୦) ଅସମ, ୨୧) ବିଷମ, ୨୨) ସନ୍ଦେହ, ୨୩) ଦୃଷ୍ଟାନ୍ତ, ୨୪) ଭ୍ରାନ୍ତିମାନ , ୨୫) ପ୍ରତୀପ, ୨୬) ପରିକର, ୨୭) ଉଲ୍ଲେଖ, ୨୮) ବିଭାବନା, ୨୯) ବିଶେଷୋକ୍ତି, ୩୦) ଅପ୍ରସ୍ତୁତ ପ୍ରଶଂସା, ୩୧) ଅସମ୍ଭବ, ୩୨) ଯଥାସଂଖ୍ୟ, ୩୩) ପରିସଂଖ୍ୟ, ୩୪) ସମ୍ଭାବନା । ୩୫) ସ୍ୱଭାବୋକ୍ତି, ୩୬) ଅତିଶୟୋକ୍ତି, ୩୭) ପର୍ଯ୍ୟାୟୋକ୍ତି, ୩୮) ଆକ୍ଷେପ, ୩୯) ଅପହ୍ନୁତି, ୪୦) ବ୍ୟାଜସ୍ତୁତି, ୪୧) ଅନୁମାନ, ୪୩) ତୁଲଯୋଗିତା, ୪୪) ଦୀପକ, ୪୫) ମୁଦ୍ରା, ୪୬ ସମାଧି, ୫୦) ସାର , ୫୧) ହେତୁ, ୫୨) କାରଣମାଳା, ୫୩) ତଦ୍‌ଗୁଣ, ୫୪) ଅତଦ୍‌ଗୁଣ, ୫୫) ଭାବସନ୍ଧି, ୫୬) ଗୂଢୋକ୍ତି, ୫୮) ଲୋକୋକ୍ତି, ୫୯) ଅର୍ଥାନ୍ତର ନ୍ୟାସ, ୬୦) ବ୍ୟାଜୋକ୍ତି, ୬୧) କାବ୍ୟଲିଙ୍ଗ, ୬୨) ପ୍ରୌଢୋକ୍ତି, ୬୩) ସମାସୋକ୍ତି, ୬୪) ମାଳାଦୀପକ, ୬୫) ଭାବୋଦୟ, ୬୬) ଶ୍ଳିଷ୍ଟ, ୬୭) ସାମାନ୍ୟ, ୬୮) ଅନ୍ୟୋନ୍ୟ, ୬୯)ପରିବୃତ୍ତ, ୭୦) ଲଳିତ, ୭୧) ଉନ୍ମୀଳିତ, ୭୨) ରତ୍ନାବଳୀ, ୭୩) ବିଶେଷ, ୭୪) ବିଧି, ୭୫) ବିକଳ୍ପ, ୭୬) ଅନୁଗଣ, ୭୭) ଅବଜ୍ଞା, ୭୮) ବିଶେଷ, ୭୯) ବିଶେଷୋକ୍ତି, ୮୦) ସଙ୍କର, ୮୧) ସଂସୃଷ୍ଟି, ୮୨) ଉଦାହରଣ, ୮୩) ଏକାବଳୀ, ୮୪) ଐତିହ୍ୟ, ୮୫) ଆଶ୍ରୟ, ୮୬) ଆଶୀଃ, ୮୭) ବ୍ୟାଘାତ, ୮୮) ବିଚିତ୍ର, ୮୯) ଅନୁକୂଳ, ୯୦) ବିଷାଦନ, ୯୧) ସ୍ମରଣ, ୯୨) ପରିଣାମ, ୯୩) ଅତ୍ୟୁକ୍ତି, ୯୪) ସହୋକ୍ତି, ୯୫) ବିନୋକ୍ତି, ୯୬) ରସାଭାସ, ୯୭) ଭାବଶବଳତା, ୯୮) ସୂକ୍ଷ୍ମ, ୯୯) ଅଧିକ, ୧୦୦) ଉତ୍ତର, ୧୦୧) ଅନୁଜ୍ଞା, ୧୦୨) ଅସଙ୍ଗତି, ୧୦୩), ମୀଳିତ, ୧୦୪) ମିଥ୍ୟାଧ୍ୟବଶତି,

୧୦୫) ତର୍କ, ୧୦୬) ଶବ୍ଦ ପାଣ୍ଡିତ୍ୟ, ୧୦୭) ନିଦର୍ଶନା, ୧୦୮) ବିଚିତ୍ର, ୧୦୯) ନିରୁକ୍ତି, ୧୧୦) ବିବୃଣୋକ୍ତି, ୧୧୧) ଉଦାତ୍ତ , ୧୧୨) ପ୍ରସ୍ତୁତାଙ୍କୁର, ୧୧୩) ଉଦାହରଣ, ୧୧୪) ବ୍ୟସ୍ତାକ୍ଷର, ୧୧୫) ପ୍ରତିବସ୍ତୂପମା, ୧୧୬) ଉଦ୍‌ବେଳିତ, ୧୧୭) ଭାବିକ, ୧୧୮) ବିଶେଷକ, ୧୧୯) ସମୁଚ୍ଚୟ, ୧୨୦) ଭାବ, ୧୨୧) ଭାବାଭାସ, ୧୨୨) ବିକସ୍ୱର, ୧୨୩) ବିଲୋମ, ୧୨୪) ପିହିତ, ୧୨୫) ପ୍ରତିଶେଷ, ୧୨୬) ଲେଶ, ୧୨୭) ବ୍ୟାଜନିନ୍ଦା, ୧୨୮) ପ୍ରତ୍ୟନୀକ, ୧୨୯) ପ୍ରେୟସ, ୧୩୦) ରସବତ୍, ୧୩୧) ଛଳ, ୧୩୨) ବିରୋଧ, ୧୩୩) ବିପ୍ସା, ୧୩୪) ଛଳୋକ୍ତି, ୧୩୫) ବ୍ୟାଜ, ୧୩୬) ଅନ୍ତର, ୧୩୭) ବକ୍ର, ୧୩୮) ସାମ୍ୟ, ୧୩୯) ସ୍ୱରୂପ, ୧୪୦) ଉଭୟନ୍ୟାସ, ୧୪୧) ଅଙ୍କ, ୧୪୨)ଅବିଶେଷ, ୧୪୩) ଅବୟବ, ୧୪୪) ଉତ୍ପ୍ରେକ୍ଷାବୟବ, ୧୪୫) ଲଳିତୋପମା, ୧୪୬) ଉପମେୟୋପମା, ୧୪୭) ଉପମା ରୂପକ, ୧୪୮) ଉପମାନ, ୧୪୯) ଅବଜ୍ଞା, ୧୫୦) ଅନୁଜ୍ଞା, ୧୫୧) ଅର୍ଥଶ୍ଲେଷ, ୧୫୨) ଅବସର, ୧୫୩) ଯଥାଶକ୍ତି, ୧୫୪) ନିଶ୍ଚୟ, ୧୫୫) ସ୍ମୃତିମାନ, ୧୫୬) ପୂର୍ବରୂପ, ୧୫୭) ମତ, ୧୫୮) ସମାହିତ, ୧୫୯) ସଗୁଣ, ୧୬୦) ପ୍ରଶ୍ନୋତ୍ତର, ୧୬୧) ଗୂଣୋନ୍ତର, ୧୬୨) ପରିଶବ୍ଦ, ୧୬୩) ପ୍ରହର୍ଷଣ, ୧୬୪) ପ୍ରମାଣ, ୧୬୫) ପ୍ରତ୍ୟେକ୍ଷ, ୧୬୬) କାରକଦୀପକ, ୧୬୭) ଯୁକ୍ତି, ୧୬୮) ପୂର୍ବ, ୧୬୯) କାବ୍ୟାର୍ଥପତ୍ତି, ୧୭୦) ଅନ୍ତି, ୧୭୧) କାର୍ଯ୍ୟକାରଣ ବିପର୍ଯ୍ୟୟ ରୂପ ଅତିଶୟୋକ୍ତି, ୧୭୨) ଶବ୍ଦ, ୧୭୩) ଆବୃତ୍ତି ଦୀପକ, ୧୭୪) ସମ୍ଭବ, ୧୭୫) ଉର୍ଜସ୍ୱୀ, ୧୭୬) ପ୍ରକର୍ଷଣ, ୧୭୭) ଅଧିକାରୂଢ଼, ୧୭୮) ଉଦାତ୍ତ, ୧୭୯) ସମନ୍ୱୟ, ୧୮୦) ସମ୍ଭବ ।

**ଅଳଙ୍କାର ବିଭାଗୀକରଣ-** ଅଳଙ୍କାରର ବିଭାଗୀକରଣ ସଂପର୍କରେ ପ୍ରଫେସର ବୈଷ୍ଣବ ଚରଣ ସାମଲ ଲେଖିଛନ୍ତି 'ଶବ୍ଦ ଅର୍ଥର ବୈଚିତ୍ର୍ୟ ପ୍ରକାଶନ ପାଇଁ ଅଳଙ୍କାରର ଆବଶ୍ୟକତା ହୋଇଥାଏ । କାବ୍ୟଶାସ୍ତ୍ରରେ ନିରୂପିତ ଅଳଙ୍କାରମାନଙ୍କୁ ସାଧାରଣତଃ (୧) ସାଦୃଶ୍ୟମୂଳକ (୨) ବିରୋଧମୂଳକ (୩) ଶୃଙ୍ଖଳାମୂଳକ (୪) ତର୍କନ୍ୟାୟମୂଳକ (୫) ଗୁଢ଼ାର୍ଥପ୍ରତୀତିମୂଳକ (୬) ବାକ୍ୟାନ୍ୟାୟାର୍ଥମୂଳକ (୭) ଲୋକନ୍ୟାୟମୂଳକ ଅଳଙ୍କାର ଭାବରେ ବିଭକ୍ତ କରାଯାଇଥାଏ । ଶବ୍ଦ ଓ ଅର୍ଥ ଭେଦରେ ଅଳଙ୍କାରକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଏ; ଯଥା- (୧) ଶବ୍ଦାଳଙ୍କାର (୨) ଅର୍ଥାଳଙ୍କାର ।' କିନ୍ତୁ ସାଧାରଣତଃ ଅଳଙ୍କାରମାନଙ୍କୁ ୩ ଭାଗରେ ବିଭକ୍ତ କରାଯାଇଛି । ଯଥା-

**୧. ଶବ୍ଦାଳଙ୍କାର**

**୨. ଅର୍ଥାଳଙ୍କାର**

**୩. ଉଭୟାଳଙ୍କାର**

**୧. ଶବ୍ଦାଳଙ୍କାର**-ଶବ୍ଦାଳଙ୍କାର ଶବ୍ଦ ବୈଚିତ୍ର୍ୟ ପ୍ରତିପାଦନ କରେ । ଫଳରେ କାବ୍ୟର ମନୋହାରିତା ସୃଷ୍ଟି ହୁଏ । ସୁତରାଂ ଶବ୍ଦାଳଙ୍କାର କାବ୍ୟର ବୈଚିତ୍ର୍ୟ ବିଧାୟକ ରୂପେ ଗୃହୀତ । ଶବ୍ଦାଳଙ୍କାର ବସ୍ତୁତଃ କାବ୍ୟର ଚାରୁତା ତଥା ଚମତ୍କାରିତା ବିଧାନର ସହାୟକ । କାବ୍ୟର ଶରୀର ହେଉଛି ଶବ୍ଦପୁଞ୍ଜ । କୁହାଯାଇଛି- 'Prose : Words in best order' କିନ୍ତୁ 'Poetry : best words in best order'. ଶବ୍ଦାଳଙ୍କାର ବିନ୍ୟାସ ଫଳରେ କାବ୍ୟ ଚମତ୍କାରିତ୍ୱ ଲାଭକରେ । ତେଣୁ ପ୍ରାଚ୍ୟ ଆଳଙ୍କାରିକ ଗଣ ଶବ୍ଦାଳଙ୍କାରକୁ ବେଶ୍ ପ୍ରଭାବଶାଳୀ ଅଳଙ୍କାର ଭାବରେ ମାନ୍ୟତା ପ୍ରଦାନ କରିଛନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଆଚାର୍ଯ୍ୟ ଭରତ ମୁନି ନାଟ୍ୟଶାସ୍ତ୍ର' ଗ୍ରନ୍ଥରେ ଚାରିଗୋଟି ଅଳଙ୍କାରର ଉଲ୍ଲେଖ କରିଛନ୍ତି, ଯଥା-ଉପମା, ରୂପକ, ଯମକ ଓ ଦୀପକ । ମାତ୍ର ଭରତମୁନି ଅଳଙ୍କାରର ପ୍ରକାରଭେଦ ସମ୍ପର୍କରେ ନୀରବ ଥିଲେ ହେଁ ତାଙ୍କ ସୂଚିତ ଚାରିଗୋଟି ଅଳଙ୍କାର ମଧ୍ୟରୁ ଯମକ ହେଉଛି ଶବ୍ଦାଳଙ୍କାର । ତାଙ୍କପରେ ବ୍ୟାସଦେବ 'ଅଗ୍ନିପୁରାଣ' ରେ ଯମକକୁ ମିଶାଇ ତିନିଗୋଟି ଶବ୍ଦାଳଙ୍କାରର ନାମୋଲ୍ଲେଖ କରିଛନ୍ତି । ଯଥା-ଯମକ, ଅନୁପ୍ରାସ ଓ ପ୍ରହେଳିକା ।

ବିଶ୍ୱନାଥ କବିରାଜ 'ସାହିତ୍ୟ ଦର୍ପଣ ଗ୍ରନ୍ଥରେ ସାତଗୋଟି ଅଳଙ୍କାରକୁ ଶବ୍ଦଳଙ୍କାର ଭାବରେ ଗ୍ରହଣ କରିଛନ୍ତି, ଯଥା-ଅନୁପ୍ରାସ, ଯମକ, ଶ୍ଳେଷ, ବକ୍ରୋକ୍ତି, ପୁନରୁକ୍ତି ବଦାଭାସ, ଭାଷାସମ ଓ ଚିତ୍ର । ପ୍ରଫେସର ବୈଷ୍ଣବ ଚରଣ ସାମଲଙ୍କ ମତରେ- ' ଯେଉଁଠାରେ ଶବ୍ଦର ସୌନ୍ଦର୍ଯ୍ୟ ଉପରେ କାବ୍ୟର ସୌନ୍ଦର୍ଯ୍ୟ ନିର୍ଭର କରେ ତାହାକୁ ଶବ୍ଦାଳଙ୍କାର କୁହାଯାଏ । କାବ୍ୟର ଶବ୍ଦ ସୌନ୍ଦର୍ଯ୍ୟ ବୃଦ୍ଧି କରୁଥିବା ଶବ୍ଦକୁ ଉଠାଇ ଅନ୍ୟ ଶବ୍ଦ ପ୍ରୟୋଗ କଲେ ଶବ୍ଦାଳଙ୍କାର ନଷ୍ଟ ହୁଏ । ଗୋଟିଏ ଯମକ ଅଳଙ୍କାର ଥିବା କାବ୍ୟରୁ 'ଯମକ' କରୁଥିବା ଶବ୍ଦରୁ ଗୋଟିଏ ଉଠାଇଲେ ସେହି ଅର୍ଥ ପ୍ରକାଶ କରୁଥିବା ଅନ୍ୟଗୋଟିଏ ଶବ୍ଦ ପ୍ରୟୋଗ କଲେ ସେଠାରେ ଆଉ ଶବ୍ଦାଳଙ୍କାର ହୁଏ ନାହିଁ । ଅନୁପ୍ରାସ, ଯମକ, ଶ୍ଳେଷ, ବକ୍ରୋକ୍ତି ଆଦି ଶବ୍ଦାଳଙ୍କାର ।' ତେବେ ଶବ୍ଦାଳଙ୍କାର ଭାବରେ ଅନୁପ୍ରାସ, ଯମକ, ଶ୍ଳେଷ, ବକ୍ରୋକ୍ତି ଏବଂ ପୁନରୁକ୍ତି ବଦାଭାଷକୁ ବିଚାର କରାଯାଇପାରେ ।

**(୨) ଅର୍ଥାଳଙ୍କାର** - ଯେଉଁଠାରେ ଅର୍ଥଦ୍ୱାରା କାବ୍ୟର ଚାରୁତା ତଥା ଶୋଭାବିଧାନ ଘଟେ, ସେଠାରେ ଅର୍ଥାଳଙ୍କାର ହୁଏ । କାବ୍ୟରେ ଶବ୍ଦ ଓ ଅର୍ଥର ସମ୍ପର୍କ ଅର୍ଦ୍ଧନାରୀଶ୍ୱର ସଦୃଶ । ସୁତରାଂ କାବ୍ୟରେ ଶବ୍ଦର ଯେପରି ଗୁରୁତ୍ୱ ରହିଛି, ଅନୁରୂପଭାବରେ ଅର୍ଥର ମଧ ପ୍ରାଧାନ୍ୟ ସ୍ୱୀକାର୍ଯ୍ୟ । ଅର୍ଥବୈଚିତ୍ର୍ୟ କାବ୍ୟକୁ ଚମତ୍କାରିତା ପ୍ରଦାନ କରିଥାଏ । ତେଣୁ କାବ୍ୟରେ ଅର୍ଥାଳଙ୍କାର ବିନ୍ୟାସ ଯୋଗୁଁ ଅର୍ଥର ଚାରୁତା ସମ୍ପାଦିତ ହୁଏ । ଅର୍ଥର ଚାରୁତା ସମ୍ପାଦନ ପରିଣାମରେ କାବ୍ୟର ଚାରୁତା ପ୍ରତିପାଦିତ ହୁଏ । ପ୍ରଫେସର ବୈଷ୍ଣବ ଚରଣ ସାମଲଙ୍କ ମତରେ- 'ଯେଉଁଠାରେ ଶବ୍ଦର ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ଆରୋପ କରା ନ ଯାଇ ଅର୍ଥର ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ, ତାହାକୁ ଅର୍ଥାଳଙ୍କାର କହନ୍ତି ।

ଶବ୍ଦାଳଙ୍କାରରେ ଶବ୍ଦର ପରିବର୍ତ୍ତନ ହୁଏ ନାହିଁ, ମାତ୍ର ଅର୍ଥାଳଙ୍କାରରେ କୌଣସି ଶବ୍ଦକୁ ପରିବର୍ତ୍ତନ ନକରି ସେହି ଅର୍ଥ ପ୍ରକାଶ କରୁଥିବା ଅନ୍ୟ କୌଣସି ଶବ୍ଦର ପ୍ରୟୋଗ କଲେ ଅର୍ଥରେ ହାନି ଘଟେ ନାହିଁ । ତେଣୁ ଅର୍ଥାଳଙ୍କାର ହୋଇଥାଏ । ଉପମା,ରୂପକ, ଉତ୍ପ୍ରେକ୍ଷା, ବ୍ୟତିରେକ, ଅର୍ଥାନ୍ତରନ୍ୟାସ, ବିଭାବନା, ବିରୋଧାଭାସ, ଅପହ୍ନୁତି, ଅପ୍ରସ୍ତୁତପ୍ରଶଂସା , ଭ୍ରାନ୍ତିମାନ, ବିଶେଷୋକ୍ତି, ବ୍ୟାଜ୍ୟସ୍ତୁତି, ଉଲ୍ଲେଖ, ସ୍ମରଣ, ପ୍ରତୀପ, ପ୍ରତିବସ୍ତୁ, ଉପମା, ଦୀପକ, ନିଦର୍ଶନ, କାବ୍ୟଲିଙ୍ଗ, ସମାସୋକ୍ତି, ଅତିଶୟୋକ୍ତି, ସଙ୍କର, ସଂସୃଷ୍ଟି, ସହୋକ୍ତି, ପର୍ଯ୍ୟାୟୋକ୍ତି ଆଦି ଅଳଙ୍କାରଗୁଡ଼ିକ ଅର୍ଥାଳଙ୍କାର ଅଟେ । ଅର୍ଥାଳଙ୍କାରରେ ଅର୍ଥର ସୌଷ୍ଠବ ଆଣିବା ମୁଖ୍ୟ କଥା ଅଟେ ।' ଅର୍ଥାଳଙ୍କାର ସଂଖ୍ୟା ଯଥେଷ୍ଟ ଅଧିକ ।

**(ଗ) ଉଭୟାଳଙ୍କାର-** ଯେଉଁଠାରେ ଏକତ୍ର ଏକାଧିକ ଅଳଙ୍କାର ବିନ୍ୟାସ ଘଟେ, ସେଠାରେ ଉଭୟାଳଙ୍କାର ହୁଏ । ଯେଉଁଠି ତିଳତଣ୍ଡୁଳ ନ୍ୟାୟରେ ବ୍ୟକ୍ତ ଏବଂ କ୍ଷୀରନୀରର ନ୍ୟାୟରେ ଅବ୍ୟକ୍ତ ହୋଇ ଅଳଙ୍କାରଗୁଡ଼ିକର ସହାବସ୍ଥାନ ଘଟେ, ସେଠି ଉଭୟାଳଙ୍କାର ହୁଏ । ଆଳଙ୍କାରିକ ମାନେ ନିମ୍ନ ଅଳଙ୍କାର ଦ୍ୱୟକୁ ଉଭୟ ଅଳଙ୍କାର ଭାବରେ ଗ୍ରହଣ କରିଚନ୍ତି:-

**(କ) ସଂସୃଷ୍ଟି ଅଳଙ୍କାର**

**(ଖ) ସଙ୍କର ଅଳଙ୍କାର**

ଉଲ୍ଲେଖଯୋଗ୍ୟ ଯେ ଆଚାର୍ଯ୍ୟ ମମ୍ମଟ ଭଟ୍ଟ ଓ ବିଶ୍ୱନାଥ କବିରାଜ ସଂସୃଷ୍ଟି ଓ ସଙ୍କରକୁ ଉଭୟାଳଙ୍କାର ଭାବରେ ସ୍ୱୀକାର କରିଛନ୍ତି । ଏହାକୁ ମଧ ମିଶ୍ର ଅଳଙ୍କାର କୁହାଯାଏ ।

ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗୀୟ କବିମାନେ କାବ୍ୟରେ ଅଳଙ୍କାରର ଋରୁବିନ୍ୟାସ କରି କାବ୍ୟିକ ସୁଷମା ବିଧାନ କ୍ଷେତ୍ରରେ ବେଶ୍ ବ୍ରତୀ ଥିବାର ଜଣାଯାଏ । ମଧ୍ୟଯୁଗୀୟ ପ୍ରମୁଖ କବିମାନଙ୍କ ମଧରେ କବି ଧନଞ୍ଜୟ ଭଞ୍ଜ, କବି ଦୀନକୃଷ୍ଣଦାସ, କବି ବ୍ରଜନାଥ ବଡ଼ଜେନା, କବି ଅଭିମନ୍ୟୁ ସାମନ୍ତ ସିଂହାର, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, କବି ଯଦୁମଣି ମହାପାତ୍ର ପ୍ରଭୃତି କାବ୍ୟରେ ବିଭିନ୍ନ ଅଳଙ୍କାରର ସମାବେଶ କରି କାବ୍ୟ ଭାରତୀଙ୍କୁ ସୁଷମା ମଣ୍ଡିତ କରିଛନ୍ତି । କିନ୍ତୁ ଉଲ୍ଲେଖଯୋଗ୍ୟ ଯେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏହି ସମସ୍ତ କବିମାନଙ୍କୁ ଅଳଙ୍କାର ବିନ୍ୟାସ କ୍ଷେତ୍ରରେ ଅତିକ୍ରମ କରିଯାଇଛନ୍ତି । ଭଞ୍ଜ ସାହିତ୍ୟରେ ବହୁବିଧ ଅଳଙ୍କାରର ବିନ୍ୟାସ ଯୋଗୁଁ ଭଞ୍ଜ ଯୁଗକୁ କେହି କେହି ସମାଲୋଚକ ଆଳଙ୍କାରିକ ଯୁଗ ନାମରେ ନାମିତ କରିଥାନ୍ତି । ତେବେ ଉପେନ୍ଦ୍ର କାବ୍ୟରେ ଅଳଙ୍କାରର ପ୍ରୟୋଗରେ ଥିଲେ ଅନବଦ୍ୟ କାବ୍ୟଶିଳ୍ପୀ । ଉପେନ୍ଦ୍ର ସ୍ୱୟଂ ଉଦାତ୍ତ କଣ୍ଠରେ ଗାଇଛନ୍ତି-

''ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିଚାରଇ
ଏଣୁ କରି ଥିବ ଅଳଙ୍କାର ଯୁକ୍ତ ହୋଇ ଯେ ।

ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରଙ୍କୁ ଆନନ୍ଦ କରିବ ହେ ।''

''ତରଳରେ ସାବର୍ଣ୍ଣ୍ୟ ଯା ବ୍ୟାକରଣେ ଲିହି
ସୁଚିତ୍ତେ କରଇ ଏହି ଗୀତ ହିତ ପାଇଁ ଯେ ।'' (ଲାବଣ୍ୟବତୀ-୭-୯)

ପୁନଶ୍ଚ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ ଉଲ୍ଲେଖ କରିଛନ୍ତି-

''ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ସେହି ଘେନିମ ଏ ଛାନ୍ଦ ।
ବ୍ୟସ୍ତ ଅଳଙ୍କାର । ମଣ୍ଡନ ବିଧି ନିର୍ଦ୍ଦୋଷ ବିଚାର ।
ଉତ୍‌ପ୍ରେକ୍ଷା ଉପମା ରୂପକ ତିନି
ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଘେନି
ଦତ୍ତଚ୍ୟୁତାକ୍ଷର ଉଦୟ କାହିଁ
ବୁଝ ସଂଖ୍ୟାବାନ ଆୟତ୍ତ ନାହିଁ ।'' (କୋ.ବ୍ର.ସୁ-୧୨/୧-୨)

ସେହିପରି ଉକ୍ତ କାବ୍ୟରେ ଉପେନ୍ଦ୍ର ଭଞ୍ଜ ଘୋଷଣା କରିଛନ୍ତି-

''ନାନା ଶବଦରେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଛାନ୍ଦ ବିବେଚନା ।'' (କୋ.ବ୍ର.ସୁ-୧/୧)

ଏହିପରି ଭାବରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ପୂର୍ବସୂରୀ କବିମାନେ ଏବଂ ପରବର୍ତ୍ତୀ କାଳର କବିମାନେ କାବ୍ୟରେ ବିଭିନ୍ନ ଅଳଙ୍କାରର ବିନ୍ୟାସ ଦ୍ୱାରା ଓଡ଼ିଆ କାବ୍ୟଭାରତୀକୁ ବେଶ୍ ଋଦ୍ଧିମନ୍ତ, ସରସ ସୁନ୍ଦର ଏବଂ କୋବିଦଜନ ସୁଲଭ କରିବାରେ ବେଶ୍ ସଫଳତା ଲାଭ କରିଛନ୍ତି ।

ପପପ

# ତୃତୀୟ ପରିଚ୍ଛେଦ

## ଭଞ୍ଜ ସାହିତ୍ୟରେ ଶବ୍ଦାଳଙ୍କାର :

ଶବ୍ଦାଳଂକାର ପ୍ରୟୋଗରେ ଉପେନ୍ଦ୍ର ଥିଲେ ଜଣେ ଅପ୍ରତିଦ୍ୱନ୍ଦୀ କବି । ଅନୁପ୍ରାସ ହେଉଛି ଶବ୍ଦାଳଙ୍କାର ମଧ୍ୟରେ ଅନ୍ୟତମ । ଏକ ପ୍ରକାର ବ୍ୟଞ୍ଜନ ବର୍ଣ୍ଣର ପୁନଃ ପୁନଃ ଆବୃତ୍ତି ଘଟିଲେ ଅନୁପ୍ରାସ ଅଳଙ୍କାର ହୁଏ । ଅନୁପ୍ରାସ ହେଉଛି ବହୁବିଧ । କେତେଗୋଟି ଅନୁପ୍ରାସ ଅଳଙ୍କାର ହେଉଛି-ଛେକାନୁପ୍ରାସ, ଲାଟାନୁପ୍ରାସ, ଅନ୍ତ୍ୟାନୁପ୍ରାସ, ଆଦ୍ୟାନୁପ୍ରାସ, ମଧ୍ୟାନୁପ୍ରାସ, ଆଦ୍ୟମଧ୍ୟପ୍ରାନ୍ତାନୁପ୍ରାସ, ସ୍ଫୁଟାନୁପ୍ରାସ, ବର୍ଗାନୁପ୍ରାସ, ବର୍ଣ୍ଣନାନୁପ୍ରାସ, ପଦାନୁପ୍ରାସ, ଅକ୍ଷରାନୁପ୍ରାସ, ବିଶ୍ରାମାନୁପ୍ରାସ ଇତ୍ୟାଦି । ପ୍ରତ୍ୟେକ ଅନୁପ୍ରାସର ମଧ୍ୟ ଉପବିଭାଗ ରହିଛି । ଯେପରି -ଆଦ୍ୟାନୁପ୍ରାସ, ଚତୁରାକ୍ଷର ଆଦ୍ୟାନୁପ୍ରାସ, ପଞ୍ଚାକ୍ଷର ଆଦ୍ୟାନୁପ୍ରାସ, ସେହିପରି ମହାନୁପ୍ରାସ ଅନ୍ତର୍ଗତ ବିବିଧ ବିଭାଗଗୁଡ଼ିକ ହେଉଛି- ଏକାକ୍ଷର ମହାନୁପ୍ରାସ, ଦ୍ୱି-ଅକ୍ଷର ମହାନୁପ୍ରାସ, ତ୍ରି-ଅକ୍ଷର ମହାନୁପ୍ରାସ, ଚତୁରାକ୍ଷର ମହାନୁପ୍ରାସ ଇତ୍ୟାଦି । କବି ଉପେନ୍ଦ୍ର ଏହିସବୁ ଅଳଙ୍କାର ପ୍ରୟୋଗରେ ସିଦ୍ଧହସ୍ତ ।

ଯମକ ହେଉଛି ଅନ୍ୟତମ ଶବ୍ଦାଳଙ୍କାର । ପଦ ମଧ୍ୟରେ ଭିନ୍ନାର୍ଥ ବୋଧକ ଏକପ୍ରକାର ଶବ୍ଦର ବାରମ୍ବାର ଆବୃତ୍ତି ଘଟିଲେ ଯମକ ଅଳଙ୍କାର ହୁଏ । ଯମକ ଅଳଙ୍କାର ବହୁବିଧ, ଯଥା-ଆଦ୍ୟଯମକ, ମଧ୍ୟଯମକ, ପ୍ରାନ୍ତଯମକ, ଆଦ୍ୟ-ପ୍ରାନ୍ତ-ଯମକ, ମହାଯମକ, ମାଳାଯମକ, ଯୋଡ଼ିଯମକ, ତ୍ରିଭଙ୍ଗ ଯମକ, ଶ୍ରେଷ୍ଠଯମକ, ଶୃଙ୍ଖଳା ଯମକ, ଆବୃତ୍ତିଯମକ, ସମସ୍ତପାଦ ଯମକ, ସମୁଦ୍‌ଗକ ଯମକ, ସମଗ୍ର ଯମକ ଇତ୍ୟାଦି ।

ଶ୍ଲେଷ ହେଉଛି ଶବ୍ଦାଳଙ୍କାର । ପଦ ମଧ୍ୟରେ ଗୋଟିଏ ଶବ୍ଦ ଥରେ ମାତ୍ର ବ୍ୟବହୃତ ହୋଇ ଯଦି ଦୁଇ ବା ତତୋଽଧିକ ଅର୍ଥ ପ୍ରକାଶ କରୁଥାଏ, ତେବେ ସେଠାରେ ଶ୍ଲେଷ ଅଳଙ୍କାର ହୁଏ । ଯେଉଁ ପଦ ଏକାଧିକ ଅର୍ଥ ବହନ କରେ ତାକୁ ଶ୍ଲିଷ୍ଟ ପଦ କହନ୍ତି । ଶିଷ୍ଟର ଅର୍ଥ ହେଉଛି ଏକ ଉଚ୍ଚାରଣ, କିନ୍ତୁ ଅନେକ ଅର୍ଥର ବୋଧକ । ବର୍ଣ୍ଣଶ୍ଲେଷ,

ପ୍ରତ୍ୟୟ ଶ୍ଳେଷ, ପଦଶ୍ଳେଷ, ବିଭକ୍ତି ଶ୍ଳେଷ, ବଚନ ଶ୍ଳେଷ, ଭାଷାଶ୍ଳେଷ ଓ ଲିଙ୍ଗଶ୍ଳେଷ ଭେଦରେ ଏହା ଆଠ ପ୍ରକାରର ।

ଶ୍ଳେଷ ଅଳଙ୍କାର ତିନି ପ୍ରକାରର; ସଭଙ୍ଗ ଶ୍ଳେଷ, ଅଭଙ୍ଗ ଶ୍ଳେଷ ଓ ଭଙ୍ଗାଭଙ୍ଗ ଶ୍ଳେଷ । ଏହା ବ୍ୟତୀତ ଶ୍ଳେଷ ଅଳଙ୍କାରର ଅନ୍ୟାନ୍ୟ ପ୍ରକାର ଗୁଡ଼ିକ ହେଉଛି-ଦ୍ୱିଅର୍ଥ ଶ୍ଳେଷ, ତ୍ରୟାର୍ଥ ଶ୍ଳେଷ, ଚତୁରାର୍ଥ ଶ୍ଳେଷ, ପର୍ଯ୍ୟାୟ ଶ୍ଳେଷ, ବ୍ୟଙ୍ଗ ଶ୍ଳେଷ, ଛଳଶ୍ଳେଷ, ଭାଷାଶ୍ଳେଷ, ଯମକ ଶ୍ଳେଷ ଇତ୍ୟାଦି ।

**ଭଞ୍ଜ ସାହିତ୍ୟରେ ଶବ୍ଦାଳଙ୍କାର :**

**ଅନୁପ୍ରାସ-**

''ଅନୁପ୍ରାସଃ ଶବ୍ଦସାମ୍ୟଂ ବୈଷମ୍ୟେଽପି ସ୍ୱରସ୍ୟ ଯତ୍ ।''(ସାହିତ୍ୟଦର୍ପଣ-୧୦/୩)

ବାକ୍ୟ ମଧ୍ୟରେ ଏକ ପ୍ରକାର ବ୍ୟଞ୍ଜନ ବର୍ଣ୍ଣର ପୁନଃ ପୁନଃ ଆବୃତ୍ତିକୁ ଅନୁପ୍ରାସ କୁହାଯାଏ । ରସାଦିର ଅନୁକୂଳ ହେବାପାଇଁ ଏଥିରେ ପ୍ରକୃଷ୍ଟ ଭାବରେ ବର୍ଣ୍ଣମାନଙ୍କର ନ୍ୟାସ କରାଯାଇଥାଏ ବୋଲି ଏହାର ନାମ ଅନୁପ୍ରାସ ରଖାଯାଇଛି । ଅନୁପ୍ରାସ ଅଳଙ୍କାର ନାନା ପ୍ରକାର ଅଟେ; ଯଥା: ବୃତ୍ତ୍ୟନୁପ୍ରାସ, ଶ୍ରୁତ୍ୟନୁପ୍ରାସ, ଛେକାନୁପ୍ରାସ, ଲାଟାନୁପ୍ରାସ, ଅନ୍ତ୍ୟାନୁପ୍ରାସ, ଆଦ୍ୟାନୁପ୍ରାସ ଇତ୍ୟାଦି ।

**୧. ବୃତ୍ତ୍ୟନୁପ୍ରାସ:**

''ଅନେକ ସ୍ୟୈକଧା ସାମ୍ୟମସକୃଦ୍ ବାପ୍ୟନେକଧା
ଏକସ୍ୟ ସକୃଦପ୍ୟେଷ ବୃତ୍ତ୍ୟନୁପ୍ରାସ ଉଚ୍ୟତେ ।'' (ସାହିତ୍ୟ ଦର୍ପଣ-୧୦/୪)

ଯଦି ବାକ୍ୟ ମଧ୍ୟରେ ଏକ କିମ୍ବା ଏକାଧିକ ବ୍ୟଞ୍ଜନବର୍ଣ୍ଣ କ୍ରମାନ୍ୱୟରେ କିମ୍ବା କ୍ରମ ନଥାଇ ବାରମ୍ବାର ଉଚ୍ଚାରିତ ହୁଅନ୍ତି, ତେବେ ବୃତ୍ତ୍ୟନୁପ୍ରାସ ହୁଏ ।

ଉଦାହରଣ-

(କ) ଦେଖି ନବ କାଳିକା ବକାଳିକା ମାଳିକା ଆଳି କାଳୀକା କାନ୍ତ ସ୍ମରି
ରକ୍ଷାକେମନ୍ତେ କରି କରିବା ମତ୍ତକରି ଗତିକି ଏମନ୍ତ ବିଚାରି
ସେ ସହଚରୀ !
ଭବେ ବଞ୍ଚିଲେ ଏ କାଳକୁ କଥା ଥିବ କାଳକାଳକୁ
ଏକେ ତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ ନଳଭୁ ବଲ୍ଲଭ ମେଳକୁ
ସେ ସହଚରି । (ଲାବଣ୍ୟବତୀ)

ଏଠାରେ ଳ, କ ସାମ୍ୟଥାଇ କ୍ରମାନୁସାରେ ବାରମ୍ବାର ଉଚ୍ଚରିତ ହୋଇଛନ୍ତି ଏବଂ ଦ, ନ ମଧ୍ୟରେ ସାମ୍ୟଥାଇ କ୍ରମାନୁସାରେ ବାରମ୍ବାର ଉଚ୍ଚାରିତ ହୋଇଛନ୍ତି । ତେଣୁ ଏଠାରେ ବୃତ୍ତ୍ୟନୁପ୍ରାସ ହେଲା ।

(ଖ) ରସିକ ବିଗ୍ରହ କରେ ଦୀପଦାନ କାର୍ତ୍ତିକରେ
ପ୍ରୟାଗ ସ୍ନାନ ମକରେ ଯେହ୍ନୁ ନ କରେ
ମିଶେ କି ସେ ଆଲୋକରେ ଉତ୍ତମ ରାମା ଅଙ୍କରେ
ଘେନି ବସେ ପଲ୍ୟଙ୍କ କି ହିମ କରେ
ପୂର୍ବେ ସେବିଥିଲେ ଶଙ୍କରେ
ସେ ଫଳୁ ଧରି ଉରଜ ଶ୍ରୀଫଳ କରେ । (ପ୍ରେମସୁଧାନିଧି)

ଏଠାରେ 'କ' ଓ 'ର' ସାମ୍ୟଥାଇ କ୍ରମାନୁସାରେ ବାରମ୍ବାର ଉଚ୍ଚାରିତ ହୋଇଛନ୍ତି । ତେଣୁ ବୃତ୍ତ୍ୟନୁପ୍ରାସ ହେଲା ।

**୨. ଶ୍ରୁତ୍ୟନୁପ୍ରାସ :**

"ଉଚ୍ଚାର୍ଯ୍ୟତ୍ୱାଦ୍ୟଦେକତ୍ର ସ୍ଥାନେ ତାଲୁରଦାଦିକେ
ସାଦୃଶ୍ୟଂ ବ୍ୟଞ୍ଜନସ୍ୟୈବ ଶ୍ରୁତ୍ୟନୁପ୍ରାସ ଉଚ୍ୟତେ । (ସାହିତ୍ୟ ଦର୍ପଣ-୧୦/୫)

ତାଲୁ, ଦନ୍ତ, ଓଷ୍ଠ, ମୂର୍ଦ୍ଧା ମଧ୍ୟରୁ ଯେ କୌଣସି ଏକ ସ୍ଥାନରୁ ଉଚ୍ଚାରିତ ବ୍ୟଞ୍ଜନବର୍ଣ୍ଣ ମାନଙ୍କର ବାରମ୍ବାର ଆବୃତ୍ତିକୁ ଶ୍ରୁତ୍ୟନୁପ୍ରାସ କୁହାଯାଏ ।

ଉଦାହରଣ-

ପୁଷ୍ପପବି ପ୍ରଭା ପ୍ରଭ ଭ୍ରମୁ ଭାବେ ଭୁବି
ଭୀମ ବାଷ୍ପ ଭବଭବେ ଭବ ଭାବି ଭାବି । (ପ୍ରେମସୁଧାନିଧି)

ଏଠାରେ ପ, ଭ ଓ ବ ବାରମ୍ବାର ଆବୃତ୍ତି ହୋଇଥିବାରୁ ଶ୍ରୁତ୍ୟନୁପ୍ରାସ ହେଲା ।

**(୩) ଛେକାନୁପ୍ରାସ :**

"ଛେକୋ ବ୍ୟଞ୍ଜନସଂଘସ୍ୟ ସକୃତ୍‌ସାମ୍ୟମନେକଧା ।"(ସାହିତ୍ୟ ଦର୍ପଣ-୧୦/୩)

ପଦ ମଧ୍ୟରେ ଅନେକ ବ୍ୟଞ୍ଜନର ସାମ୍ୟରହି କ୍ରମାନୁସାରେ ଥରେ ମାତ୍ର ପୁନରାବୃତ୍ତି ଘଟିଲେ ଛେକାନୁପ୍ରାସ ହୁଏ ।

ଉଦାହରଣ-

(କ) ବଧିର ନୁହଇ ବୀର ବୋଇଲା ତହୁଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଳିପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନଦେବି ପାଦ ନଧୋଇ ନାବ ।

ଏଠାରେ ବୀର-ବୀର, ପଥରେ-ପଥର, ନଉକା-ନାୟିକା- ଏହି ଶବ୍ଦମାନଙ୍କରେ ବ-ର, ପ-ଥ, ନ-କ, ବ୍ୟଞ୍ଜନବର୍ଣ୍ଣଗୁଡ଼ିକ ସାମ୍ୟଥାଇ କ୍ରମାନ୍ୱୟରେ ଥରେମାତ୍ର ପୁନରାବୃତ୍ତି ହୋଇଛନ୍ତି । 'ଛେକ' ର ଅର୍ଥ ବିଦଗ୍ଧ । ଏହା ବିଦଗ୍ଧ ମାନଙ୍କର ପ୍ରିୟ ହୋଇଥିବାରୁ ଏହାର ନାମ ଛେକାନୁପ୍ରାସ ହୋଇଛି ।

(ଖ) ଏ ନୋହିଛି ନୋହିବ ସଜୀବ ରାଜୀବ ଲୋଚନ
ଏହି ମୁନି ମନ୍ତର କରିଅଛି ଅନ୍ତରଗତର ମାତର ଭାବନ
ସେ ଅନୁପମା ହୃଦରେ ଆଦର ଉଛନ୍ନ
କିଏ ଭୂତିତ ନନ୍ଦନ
ରାମା ରତନ ରମ୍ୟ ଯତନରେ ପତନ ସେ କାଳେ କୁମାର ନୟନ ।

(କୋ.ବ୍ର.ସୁ-୧୩ଶ ଛାନ୍ଦ)

### ୪. ଲାଟାନୁପ୍ରାସ:

''ଶବ୍ଦାର୍ଥୟୋଃ ପୌନରୁକ୍ତ୍ୟଂ ଭେଦେ ତାତ୍ପର୍ଯ୍ୟମାତ୍ରତଃ
ଲାଟାନୁପ୍ରାସ ଇତ୍ୟୁକ୍ତୋ ।'' (ସାହିତ୍ୟ ଦର୍ପଣ-୧୦/୭)

ଯେଉଁଠାରେ ବାରମ୍ବାର ବ୍ୟବହୃତ ଶବ୍ଦ ଅର୍ଥଗତ ସାମ୍ୟ ରକ୍ଷା କରି ଭିନ୍ନ ଭିନ୍ନ ଅଭିପ୍ରାୟର ଦ୍ୟୋତକ ହୁଅନ୍ତି, ସେଠାରେ ଲାଟାନୁପ୍ରାସ ହୁଏ ।

ଉଦାହରଣ-

ବିଷମ ବିଶିଖ ବିଶିଖକୁ ଲାଖ
ସେ ହୋଇଲା ଏବେ ଆସି । (ଲା.ବ)

ଏଠାରେ 'ବିଶିଖ' ଶବ୍ଦଟି ଅର୍ଥ ସାମ୍ୟ ରଖି ପୁନରାବୃତ୍ତି ତାତ୍ପର୍ଯ୍ୟଗତ ପ୍ରଭେଦ ଦର୍ଶାଉଥିବାରୁ ଲଟାନୁପ୍ରାସ ହେଲା ।

### (୫) ଅନ୍ତ୍ୟାନୁପ୍ରାସ :

''ବ୍ୟଞ୍ଜନଂ ଚେଦ୍ୟଥାବସ୍ଥଂ ସହାଦ୍ୟେନ ସ୍ୱରେଣତୁ
ଆବର୍ତ୍ତ୍ୟନ୍ତେଽନ୍ତ୍ୟଯୋଜ୍ୟତ୍ୱା ଦନ୍ତ୍ୟାନୁପ୍ରାସ୍ ଏବ ତତ୍ ।''

(ସାହିତ୍ୟ ଦର୍ପଣ-୧୦/୬)

ପଦ ବା ପାଦରେ ଶେଷରେ ଥିବା ବ୍ୟଞ୍ଜନବର୍ଣ୍ଣ ତାହାର ପୂର୍ବ ଓ ପରବର୍ତ୍ତୀ ସ୍ୱରବର୍ଣ୍ଣ ସହିତ ଆବୃତ୍ତି ହେଲେ ଅନ୍ତ୍ୟାନୁପ୍ରାସ ଅଳଙ୍କାର ହୁଏ ।

ଉଦାହରଣ-

(କ) ଏମନ୍ତ ମନେ ପ୍ରସରି ନାରୀ କି ନାରୀ ସେ ସରି
ଧଇର୍ଯ୍ୟ-କରି-କେଶରୀ ନୁହେଁ ବିସ୍ମରି ।

ପାଶେ ଥିଲେ ଦିନ ସରି ତାପମାନ ଅପସରି
ସେତ ରସିକା କେଶରୀ ମୁଁ କି ତା ସରି ?
କଥନେ ଯା ଗୁଣ ନ ସରି
ସ୍ୱର୍ଗେ ବଡ଼ଭୋଗ ହୋଇ ସେ ଅପସରୀ । (ପ୍ରେମସୁଧାନିଧି)

(ଖ) ହା ହା ସେ ନରେନ୍ଦ୍ର କୁମାରୀ
ଅବନୀ ଶିରୀ ସୁକୁମାରୀ
ପଲ୍ୟଙ୍କ ଅଙ୍କେ ଶୋଇଥିଲା
ସୁକୃତ ଦୂତୀ ଭେଟାଇଲା । (ଲାବଣ୍ୟବତୀ)

୬. ଆଦ୍ୟାନୁପ୍ରାସ

ପାଦ ବା ପଦର ଆରମ୍ଭରେ କୌଣସି ବ୍ୟଞ୍ଜନବର୍ଣ୍ଣର ପୁନରାବୃତ୍ତି ଘଟିଲେ ଆଦ୍ୟାନୁପ୍ରାସ ହୁଏ । ଯଥା-

ବିଷ୍ଣୁପଦୀ ବିଷ୍ଣୁପଦ ଈ କାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚିତ
ବିଶାରଦ ସେ ସାମନ୍ତ ମତରେ ଦାସ ସେବିତ
ତାଙ୍କୁ ନ ଶୁଣନ୍ତେ ରଘୁନାଥ କଥିତ
ବିଷଧର ପ୍ରାୟେକି ତୁହି
ବେଳେନେତ୍ର ତାଳି ଶୁଣ ଉଦାର ନୋହି । (ବୈ.ବି)

ଏଠାରେ ପ୍ରତ୍ୟେକ ପାଦର ଆରମ୍ଭରେ 'ବ' ବ୍ୟବହୃତ ହୋଇଥିବାରୁ ଆଦ୍ୟାନୁପ୍ରାସ ହେଲା ।

**(୭) ମହାନୁପ୍ରାସ :** ପାଦ ମଧ୍ୟରେ ଶବ୍ଦର ବହୁଳ ବ୍ୟବହାରକୁ ମହାନୁପ୍ରାସ କୁହାଯାଏ । ଯଥା-

ମାଳା କରି କଲେ କେବଳ କର
ହେଳା କରିଦେଲେ ବିଷୟ ବାର ।
ପାନ କରି ମାତ୍ର କଲେ ଅଧର
ଧ୍ୟାନ କରି କଲେ ଭାବ ବିଚର ।
ଦାନ କରିଦେଲେ ସବୁ ଚୁମ୍ବନ
ଭିନ୍ନ କରିଦେଲେ ଝୀନ ବସନ ।
ଘାତ କରି ଯହିଁ ଦଶନ ନଖ
ଜାତ କରି ତହିଁ ପରମ ସୁଖ । (କୋ.ବ୍ର.ସୁ-୨ୟ ଛାନ୍ଦ)

**ଅନୁପ୍ରାସର ଅନ୍ୟାନ୍ୟ ଦୃଷ୍ଟାନ୍ତ-**

ପରମ ଦ୍ରବ୍ୟ ପୀରତି ପରମ ସୁଖ ସୁରତି
ରତିରୁ ଜାତ ପୀରତି, ପ୍ରୀତିରୁ ରତି
ରାମାରୁ ରମ୍ୟ ମୂରତି ନାହିଁ ତା'ର କୀରତି
ଏହୁଁ ତିନି ହେଁ ହରନ୍ତି ଚିତ୍ତ ଧୃରତି
କାମଯମ ମତି କରତି
ଯା ଲୋକନେ ଲୋକେ କି ପାରିବେ ବରତି । (ପ୍ରେ.ସୁ. ୭/୮)

**ଯମକ :**

''ସତ୍ୟର୍ଥେ ପୃଥଗର୍ଥାୟାଃ ସ୍ୱରବ୍ୟଞ୍ଜନ ସଂହତେଃ
କ୍ରମେଣ ତେନୈବାବୃତ୍ତିର୍ଯମକଂ ବିନିଗଦ୍ୟତେ ।''(ସାହିତ୍ୟ ଦର୍ପଣ-୧୦/୧୮)

ଭିନ୍ନାର୍ଥ ବୋଧକ ଏକପ୍ରକାର ଶବ୍ଦର ବାରମ୍ବାର ଆବୃତ୍ତି ଘଟିଲେ ଯମକ ଅଳଙ୍କାର ହୁଏ । ଯମକ ଅଳଙ୍କାରକୁ ବୈୟାକରଣିକମାନେ ଗୁରୁତ୍ୱ ପ୍ରଦାନ କରି ଆସିଛନ୍ତି । ଭଞ୍ଜ ସାହିତ୍ୟରେ ନଅପ୍ରକାର ଯମକ ଲକ୍ଷ୍ୟ କରାଯାଇଥାଏ । ସେଗୁଡ଼ିକ ହେଲା- ଆଦ୍ୟଯମକ, ମଧ୍ୟଯମକ, ପ୍ରାନ୍ତଯମକ, ଆଦ୍ୟପ୍ରାନ୍ତଯମକ, ମାଳଯମକ, ସର୍ବଯମକ, ଯୋଡ଼ିଯମକ, ମହାଯମକ, ଓ ତ୍ରିଭଙ୍ଗଯମକ ।

**କ. ଆଦ୍ୟଯମକ-** ପଦ ବା ବାକ୍ୟର ଆରମ୍ଭରେ ଭିନ୍ନାର୍ଥବୋଧକ ଦୁଇ ଶବ୍ଦର ପୁନରାବୃତ୍ତିକୁ ଆଦ୍ୟଯମକ କୁହାଯାଏ ।

ଉଦାହରଣ-

ବିରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ
ରାଜୀବ ରାଜୀବ ନୟନା ଏଥି ଖେଳା କରଇ । (ଲାବଣ୍ୟବତୀ-୬/୧୯)

ବିରାଜି-ଶୋଭାପାଇ
ବିରାଜି-ପକ୍ଷୀସମୂହ
ରାଜୀବ-ମାଛ
ରାଜୀବ-ପଦ୍ମ

ଖ. ପଥରେ ପଥରେ ନାରୀ କରି କଲେ ମୋଦ
ଦାସ ବତ୍ସଳ ଦାସରେ ଧୁଆଇଲେ ପାଦ ଯେ । (ଲାବଣ୍ୟବତୀ)

ଗ. ରଜନିକର ମାଗିଲା ଖେଳିଲା
ରଜନିକର ସ୍ନେହେ ତା ଛାଡ଼ିଲା । (କୋ.ବ୍ର.ସୁ)

ଘ. ଲକ୍ଷଣ ଲକ୍ଷଣବନ୍ତ ଯା ପାଦେ ସେବେ
ଭଞ୍ଜ ଭଞ୍ଜ ବୀରବର ସନ୍ତାପ ଏବେ । (ପ୍ରେ.ସୁ)

ଙ. ସଲିଳେ ଉଡୁପ ଦେଖରେ ହୋଇଅଛି ଶୋଭନ
ସଲୀଳେ ଉଡୁପ ବଦନୀ ଖେଳିବାକୁ ମୋ ମନ । (ଲା.ବ)

ପ୍ରଥମ ପାଦ - ସଲିଳେ - ଜଳରେ
ଉଡୁପ - ନୌକା

ଦ୍ୱିତୀୟ ପାଦ - ସଲୀଳେ - ଲୀଳା ସହିତ
ଉଡୁପ - ଚନ୍ଦ୍ର

ଚ. ଅନନ୍ତ ଅନନ୍ତ ଯାହା ମହିମାମାନ
ଜଗତି ଜଗତୀରେ ଲୀଳା ରଚନ
ସୀତା ଶିତାମ୍ବୁଜ ମୁଖ ମତ୍ତଭ୍ରମର
ରାମରାମ କଦଳୀ କମ୍ପନେ ସମୀର । (ପ୍ରେ.ସୁ)

| | |
|---|---|
| ଅନନ୍ତ-ଅସୀମ | ଜଗତି-ପୃଥିବୀ |
| ଅନନ୍ତ-ଶେଷଦେବ | ଜଗତୀ-କୋଠାଘର |
| ସୀତା-ଜନକଙ୍କ କନ୍ୟା | ରାମ-ବନ |
| ଶିତ-ଧଳା, ଶ୍ୱେତ | ରାମ-ପରଶୁରାମ |

ଛ. ବିପଦ ବିପଦ ଚଞ୍ଚୁ ଘାତରେ ବିହାନ୍ତେ
ବୀରସେ ବିରସେ ତମ କାମଶର କୃତେ । (ବୈ.ବି)

| | |
|---|---|
| ବିପଦ-ବିପତ୍ତି | ବୀରସେ-ସେହି ବୀର (ରାମଚନ୍ଦ୍ର) |
| ବିପଦ-ପକ୍ଷୀର ପାଦ | ବିରସେ-ଦୁଃଖରେ |

ଜ. ବିଦିତ ମିଥିଳା ନୃପତି ନାମ ଜନକ ତାର
ବିଦିଗ ଦିଗରେ ହୋଇଛି ଖ୍ୟାତ ଯଶ ଯାହାର ।
ବିଦଗ୍ଧ ଯଜ୍ଞକର୍ମରେ ସର୍ବଦାରେ ସେ ଅଛି
ବିଦଗ୍ଧ ଚିତ୍ତ ପ୍ରପାପ ନୋହି ବାରେ ଦୁହିତୀ । (ବୈ.ବି.-୩ୟ ଛାନ୍ଦ)

ଝ. ସୁରଭୀ ସୁରଭୀ ଆଶ୍ରିତ ଯହିଁ ଲବଙ୍ଗଲତା
ସୁନାରୀ ସୁନାରୀ ପରାୟେ ଧବ ଅଗ୍ରତେ ସ୍ଥିତା ।
ସରଳସରଳ ହୃଦୟ ତହୁଁ ନିର୍ଯ୍ୟାସ ଜାତ
ସ୍ୟନ୍ଦନ ସ୍ୟନ୍ଦନ ପରାୟେ ରଥାଙ୍ଗରେ ଶୋଭିତ ।
ସକଳ କୋକିଳ ସଙ୍କୁଳ କରି ଶାଖା ମଣ୍ଡନ
ସକଳ ରୂପରେ କରନ୍ତି କାମୀ ଧୈର୍ଯ୍ୟ ଖଣ୍ଡନ । (ସୁ.ପ.୫/୨୩-୨୫)

ଅର୍ଥାତ୍ ସୁବାସରେ ପରିପୂର୍ଣ୍ଣ ଚମ୍ପାଗଛ ଉପରେ ଲବଙ୍ଗଲତା ଆଶ୍ରିତ । ସ୍ୱାମୀ ସମ୍ମୁଖରେ ଉତ୍ତମା ନାରୀ ରହିଥିଲା ପରି ଧବଗଛ ଆଗରେ ସୁନାରିବୃକ୍ଷ ଶୋଭିତ । ସରଳ ଶାଲୁଆ ବୃକ୍ଷରୁ ଅଠା ଜାତ ହେଉଛି । ଶତାଙ୍ଗ ଗଛ ଥିବା ସଦୃଶ ଦେଖାଯାଉଛି । ଦେବତା ବୃକ୍ଷ ମଧ୍ୟ ସେଠାରେ ରହିଛି । ବୃକ୍ଷର ଶାଖା ଗୁଡ଼ିକରେ କୋକିଳମାନେ ରାବୁଛନ୍ତି । ଫଳରେ କାମୀ ଲୋକମାନଙ୍କର ଧୈର୍ଯ୍ୟ ଖଣ୍ଡନ ହେଉଛି ।

ଞ. କୁମୁଦ କୁମୁଦ ବିଦୁ ଯଶ ଉଦିତ
ଜନକ ଜନକ ତୋଷ କରେ ବିଦିତ ।
ଅନନ୍ତ ଅନନ୍ତ ଯାହା ମହିମାମାନ
ଜଗତିରେ ଜଗତୀରେ ଲୀଳା ରଚନା
ସୀତା ଶିତାମ୍ବୁଜ ମୁଖ ମତ୍ତ ଭ୍ରମର
ରାମ ରାମ କଦଳୀ କମ୍ପନେ ଶରୀର ।
ଲକ୍ଷ୍ମଣ ଲକ୍ଷ୍ମଣବନ୍ତ ଯା ପାଦେ ସେବେ
ଭଞ୍ଜ ଭଞ୍ଜ ବୀରବର ସନ୍ତାପ ଏବେ । (ପ୍ରେ.ସୁ. ୧/୧୪)

ଟ. ସୁନାରୀ ଭୂଷା ନିର୍ମାଣି ସୁନାରୀ କମାର ଜାଣି
ପ୍ରବାଳ ବସେ ନିର୍ମାଣ । ପ୍ରବାଳ ତୋରଣା ଗଣ ଯେ ।

(କୋ.ବ୍ର.ସୁ-୩୨ଶ ଛାନ୍ଦ)

**ମଧ୍ୟଯମକ :**

ଗୋଟିଏ ଶବ୍ଦ ପୃଥକ୍ ପୃଥକ୍ ଅର୍ଥରେ ପାଦର ମଧ୍ୟରେ ବ୍ୟବହୃତ ହେଲେ ମଧ୍ୟଯମକ ହୁଏ । ଯଥା-

କ. ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ । (ଲା.ବ)

ଅର୍ଥାତ୍- ନଳିନି-ହେ ପଦ୍ମିନି — ଭ୍ରମରେ-ଭ୍ରମରମାନେ
ନଳିନୀ-ପୁଷ୍କରିଣୀ — ଭ୍ରମରେ-ଭ୍ରାନ୍ତିବଶତଃ
ନଳିନୀ-ପଦ୍ମ — ଭ୍ରମରେ-ଜଳ ଭଉରୀମାନଙ୍କ ଦ୍ୱାରା

ଖ. ନବୀନ ଜୀମୂତ ଜୀମୂତସ୍ତନା କିଏ ଉଦିତ
ଏ ନୀଳ କମଳ କମଳ ବିନ୍ଦୁ ବହି ତେମନ୍ତ । (ଲା.ବ-୬/୨୧)

ଗ. ସଫଳ ରସାଳ ରସାଳ-ତରୁ ବକୁଳବନ୍ତ
ସକ୍ରୀଡିତ କରି ବିଡାଳେ ବିଡାଳେ ଆରୋହିତ
ସପ୍ତକା ସୁବାସ ସୁବାସ ମଲ୍ଲୀ ସେହି ପ୍ରକାର
ଶ୍ୱସନ ହରିଣ ହରିତାମ୍ବର କରେ ପ୍ରହର । (ସୁ.ପ.୫/୨୬/୨୭)

ସଫଳ ରସାଳ-ଫଳପୂର୍ଣ୍ଣ ବିଡାଳ-ବିରାଡି
ରସାଳ ତରୁ-ଆମ୍ବଗଛ ବି-ଡାଳେ-ଡାଳରେ

ଘ. ସପ୍ତଲା ସ୍ୱବାସ ସୁବାସ ମଲ୍ଲୀ ସେହି ପ୍ରକାର
ଶ୍ୱସନ ହରି ତା ହରିତାମ୍ବର କରେ ପ୍ରଚ୍ଛର । (ସୁ.ପ.-୫ମ ଛାନ୍ଦ)

ଙ. ବିଧାତା ଅନୁକୂଳ ଥିବ । ଯେ ଅକୂକୂଳ ପୁଂସ ହେବ
ଶୋଭାଗୁଣ କୂଳ ବୟସେ । ସମେ ମିଳବ ଭାଗ୍ୟ ବଶେ ।
(କୋ.ବ୍ର.ସୁ-୫ମ ଛାନ୍ଦ)

ଚ. ଚନ୍ଦ୍ରକୁ କହେ କୁମାର ମାରକୁ କି
ଏହି ନିକଟେ ଲସାଇବି
ଥିବ ଜୀବ ଜୀବ-ବଲ୍ଲଭୀ ଲଭିବା
ଯାଏ କି ଭାଗ୍ୟ ଦିଶାଇବି । (ପ୍ରେ.ସୁ).

**ପ୍ରାନ୍ତ ଯମକ-** ପ୍ରତ୍ୟେକ ପାଦର ଶେଷରେ ଭିନ୍ନ ଭିନ୍ନ ଅର୍ଥରେ ଏକଶବ୍ଦ ବ୍ୟବହାର ହେଲେ ପ୍ରାନ୍ତଯମକ ଅଳଙ୍କାର ହୋଇଥାଏ । ଯଥା-

କ. ବିଶିଷ୍ଟରେ ଅନୁକୂଳ ପୁଂସ ଦୀନବନ୍ଧୁ
ବିନୋଦରେ ସଙ୍ଗେ ଘେନି ହରେ ଦିନବନ୍ଧୁ । (ବୈ.ବି)

ଏଠାରେ ଦୀନବନ୍ଧୁ ଅର୍ଥାତ୍ ଦରିଦ୍ରମାନଙ୍କ ବନ୍ଧୁ (ରାମଚନ୍ଦ୍ର)
ଦିନବନ୍ଧୁ ଅର୍ଥାତ୍ ଦିବସର ବନ୍ଧୁ (ସୀତା)

ଖ. କିମ୍ବା ଶଙ୍କର ବୋଲି ସଦାଶିବଙ୍କୁ
ନକଲେ ସେବା କଲେ ସଦାଶିବଙ୍କୁ ଯେ ।
ଥିଲେ ମନରୁ କାମଭାବ କୁମାରି
ଦୁଃଖ ଲଭନ୍ତା କିମ୍ବା ରାଜକୁମାରୀ ।
ଅବଶ୍ୟ ପିଣ୍ଡୁ ଥରେ ଯିବ ଜୀବନ
ତା' ଲାଗି ଗଲା ଜାଣୁ ଜୀବ ଜୀବନ ଯେ ।
ଏହି ସଂଶୟ ହୁଏ ଗୁଣି ତିଳକ
ଗଲେ ତ ନ ଦେଖିବି ଗୁଣି ତିଳକ । (ପ୍ରେ.ସୁ.)

ଗ. ବଶ ପ୍ରକାଶିବ ସୁମନସର ସୁମନଶର
ମହୀକି ଆସିଲା ସୁମନସର ସୁମନଶର । (ଲା.ବ-୭/୨୪)

ଏଠାରେ- ସୁମନସର-ଦେବତାମାନଙ୍କର
ସୁମନସର-କାମଦେବଶର
ସୁମନସର-ଦେବସରୋବର/କୁସୁମଭରା ସରୋବର
ସୁମନ-ଫୁଲ ସର-ସମୂହ

(ଘ) ସୁବାହା କୁସୁମ ମଣ୍ଡିତ ମହୀ ତରୁଣୀ କରେ
ସୌଗନ୍ଧ ନ ଥିଲେ ଚିତ୍ତକୁ ଲୋଭିତ ରଣୀ କରେ ।
ସବୃତ ଗୁଳ୍ମରେ ମରିଚ ନାଗବଲ୍ଲୀ ଚମରୀ
ଶୋଇ ତହିଁ ତଳେ ରୋମନ୍ଥ କରୁଛନ୍ତି ଚମରୀ ।।
ଷଡପ ଲାଙ୍ଗଳୀପାଦପ ଶିଖେ ରଚି ସୁଗୃହ
ଶ୍ରମୀ ହୋଇଛନ୍ତି ଅର୍ଭକ ପାଳନାରେ ସ୍ୱଗୃହ । (ସୁ.ପ.୫/୩୦-୩୨)

ଅର୍ଥାତ୍ ଗଙ୍ଗଶିଉଳି ଗଛରେ ଫୁଲଫୁଟି ସୁଗନ୍ଧ ଚହଟୁଛି । ତାହା ମହୀ-ତରୁଣୀର ଶୋଭାକୁ ବର୍ଦ୍ଧନ କରୁଛି । ଲତାବୁଦାର ଚତୁର୍ଦ୍ଦିଗରେ ମରିଚ, ପାନ ଲତା ମାଡ଼ିଛି । ତାହା ଚଉଁରୀ ପ୍ରାୟ ଶୋଭିତ । ତା' ତଳେ ଚମରୀ ଗାଈ ଶୋଇରହି ପାଟି ପାକୁଳୁଛି । ସଲପ ବୃକ୍ଷ ଓ ନଡ଼ିଆ ଗଛମାନଙ୍କରେ ପକ୍ଷୀମାନେ ନୀଡ ତିଆରି କରି ଶିଶୁମାନକୁ ପାଳନ କରୁଛନ୍ତି ।

(ଙ) ଅବଶ୍ୟ ପିଣ୍ଡୁ ଥରେ ଯିବ ଜୀବନ
ତା'ଲାଗି ଗଲା ଜାଣୁ ଜୀବ ଜୀବନ
ଏହି ସଂଶୟ ହୋଏ ଗୁଣି ତିଳକ
ଗଲେ ତ ନଦେଖିବି ଗୁଣିତିଳକ । (ପେ.ସୁ.-୯/୩)

**ଆଦ୍ୟପ୍ରାନ୍ତ ଯମକ :** ଭିନ୍ନାର୍ଥବୋଧକ ଏକ ଶବ୍ଦ ପାଦର ଆଦ୍ୟ ଓ ପ୍ରାନ୍ତରେ ବ୍ୟବହୃତ ହେଲେ ଆଦ୍ୟପ୍ରାନ୍ତ ଯମକ ଅଳଙ୍କାର ହୁଏ ।

ଯଥା-

କ. ଭୁବନ ଏଥିରେ ପୂରିତ ମୋହେ ସର୍ବଭୁବନ
ଜୀବନବନ୍ଧୁ ଏ ନିଶ୍ଚୟ ପ୍ରାଣୀଙ୍କର ଜୀବନ । (ଲା.ବ-୬/୧୨)

ଖ. ବସନ୍ତରେ ବିରହୀ ଅବଶ
ବସନ୍ତ ଦୂତଭାଷୀରେ ବଶ
ବସଇ ଉଠଇ ପିକକୁ କହଇ ଯୁଗସମ
ରାଜନୀ ଦିବସ ହେ କୋକିଳ ।
ଜୀବବନ୍ଧୁ ବୋଲୁଁ ବୋଲୁଁ ଜୀବ
ଜୀବଧବପୁରକୁ କି ଯିବ

ଜୀବଞ୍ଜୀବ-ନେତ୍ରୀଲାଗି ଗଲା ବୋଲି
ସତେ ଏ ଭାଗ୍ୟ କି ଅରଜିବ ହେ କୋକିଳ ।
ବନଜାକ୍ଷୀ ମୋ ଜୀବନ
ବନପ୍ରାୟେ ତୋ ବିନା ଭବନ
ବନ ନ ରହଇ ଦଣ୍ଡେ ନୟନରୁ କରି କରି
ତା ଭାବ ଭାବନା ହେ କୋକିଳ । (ପ୍ରେ.ସୁ-୧୧ ଛାନ୍ଦ)

ଗ. ସୁମନଶରେ ମହୋଜ୍ଜ୍ୱଳ ଯେ ଅଶୋକ ବିଟପୀ
ସୁମନଶରେ ଶୋକବତୀ ଦେଖି ହେବେ ବିଟପୀ ।
ସୁମନବାଳୀରେ ନ ଦିଶେ ପୂର୍ଣ୍ଣ ଫୁଟି ସୁମନା
ସୁମନାବାଳୀ ଯା ସୁଗନ୍ଧ ଲାଗି ହେବ ସୁମନା ।

(ସୁ.ପ. ୫/୩୫/୩୬)

**ମାଳଯମକ:** ଭିନ୍ନାର୍ଥବୋଧକ ସମୋଚ୍ଚାରିତ ଶବ୍ଦ ସମୂହ ପାଦ ମଧ୍ୟରେ ବାରମ୍ବାର ପ୍ରୟୋଗହେଲେ ମାଳଯମକ ଅଳଙ୍କାର ହୋଇଥାଏ ।

କ. ବିରଚଇ ମାଳଯମକରେ କବି ମନେ
ବୁଲେ ରାମ ରାମ ରାମ ନେତ୍ରୀ ଘେନି ବନେ ଯେ ।
ବୃହତ୍‌ଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ
ବୃନ୍ଦ ତମାଳ ମାଳ ମାଳତୀଲତା ଯହିଁ ଯେ ।
ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗେ ରଙ୍ଗଣୀ ଶୋଭିତ ଯେ । (ବୈ.ବି)

ଖ. ଖଞ୍ଜ ନୟନୀ କଟକ କଟକ କଟକ ଶୋଭିନୀ
ଖେଦକ ଘେନିବ ହାଟକ ହାଟକ ହାଟକ ସୁମନ ମୋହିନୀ ।

(ଯମକରାଜ ଚଉତିଶା)

**ସର୍ବଯମକ:** ଭିନ୍ନାର୍ଥବୋଧକ ଶବ୍ଦ ପ୍ରତ୍ୟେକ ପାଦରେ ସର୍ବତ୍ର ବ୍ୟବହୃତ ହେଲେ ସର୍ବଯମକ ହୋଇଥାଏ । ଯଥା-

କ. ବଇଦେହୀ ସୁମନା ସୁମନା ଏ ସୁରଭି
ବଇଦେହୀ ସୁମନା ସୁମନା ଏ ସୁରଭି ଯେ ।
ଦିବ୍ୟ ଲୋକରେ ପ୍ରିୟକ ମାଧବୀ ସଂଘାତ
ଦିବ୍ୟଲୋକରେ ପ୍ରିୟକ ମାଧବୀ ସଂଘାତ ଯେ ।

ବାଳିକା କନକକାନ୍ତି କନକ କନକ
ବାଳିକା କନକ କାନ୍ତି କନକ କନକ । (ବୈ.ବି)

ଖ. ଅହିମକର ତାପନାଶେ ଶୋଭା ସାରସ ଚକ୍ରେ
ଅହିମକର ତାପନାଶେ ଶୋଭା ସାରସ ଚକ୍ରେ । (ଲା.ବ-୭/୨୩)

ଏଠାରେ-ଅହି-ସର୍ପ | ମକର-ମଗର
ସାରସଚକ୍ର-ପଦ୍ମସମୂହ | ଅହିମକର-ସୂର୍ଯ୍ୟ
ସରସଚକ୍ର-ହଂସମଣ୍ଡଳୀ

ଗ. ବରାହବରେ ପ୍ରକାଶମାନ ଯେ ଦନ୍ତରେ
ବରାହବରେ ପ୍ରକାଶମାନ ଯେ ଦନ୍ତରେ । (ବୈ.ବି)

ବରାହବରେ-ଶ୍ରେଷ୍ଠବରାହମାନେ
ବରାହବରେ-ଘୋର ଯୁଦ୍ଧରେ ।
ଦନ୍ତରେ-ଦାନ୍ତଦ୍ୱାରା | ଦନ୍ତରେ-କୁଞ୍ଜମଧ୍ୟରେ
ପ୍ରକାଶମାନ-ଦୀପ୍ତିମାନ | ପ୍ରକାଶମାନ-ପ୍ରକାଶିତ

ଘ. ସିନ୍ଧୁ ଜାତ କୂଳେ ପ୍ରବଳ ତରଙ୍ଗେ ବଡ଼ଭାରଙ୍ଗେ ଭ୍ରମବିଧି
ସିନ୍ଧୁ ଜାତ କୂଳେ ପ୍ରବଳ ତରଙ୍ଗେ ବଡ଼ଭାରଙ୍ଗେ ଭ୍ରମବିଧି ।
ଚିଉରେ ସର୍ବଯମକ ଭାବ ଇଛି
ମେଳ ତ୍ରିବେଣୀ ରଙ୍ଗ ଦିଶେ କି ବିଷେ ଅକାଳେ ପ୍ରଳୟ ହେଉଛି ।
(କୋ.ବ୍ର.ସୁ)

ଙ. ସନ୍ତାନ ପାଇ ବିହରନ୍ତି ଯହିଁ ଖଞ୍ଜନ ଚକ୍ର
ସନ୍ତାନ ପାଇ ବିହରନ୍ତି ଯହିଁ ଖଞ୍ଜନ ଚକ୍ର ।
ସୁକାନ୍ତି ମାଧବୀ ମୋହନ କରେ ମଧୁସୂଦନ
ସୁକାନ୍ତି ମାଧବୀ ମୋହନ କରେ ମଧୁସୂଦନ ।
ସାରସ କଦମ୍ବ ଯୋଗରେ ଯହିଁ ଶୋଭା ଅନନ୍ତ
ସାରସ କଦମ୍ବ ଯୋଗରେ ଯହିଁ ଶୋଭା ଅନନ୍ତ । (ସୁ.ପ-୫ମ ଛାନ୍ଦ)

ଚ. ସନ୍ତାନ ପାଇଁ ବିହରନ୍ତି ଯହିଁ ଖଞ୍ଜନଚକ୍ର
ସନ୍ତାନ ପାଇଁ ବିହରନ୍ତି ଯହିଁ ଖଞ୍ଜନଚକ୍ର ।
ସୁକାନ୍ତି ମାଧବୀ ମୋହନ କରେ ମଧୁସୂଦନ
ସୁକାନ୍ତି ମାଧବୀ ମୋହନ କରେ ମଧୁସୂଦନ ।

ସାରସ କଦମ୍ବ ଯୋଗରେ ଯହିଁ ଶୋଭା ଅନନ୍ତ
ସାରସ କଦମ୍ବ ଯୋଗରେ ଯହିଁ ଶୋଭା ଅନନ୍ତ ।

(ସୁ.ପ.୫/୩୭-୩୯)

**ମହାଯମକ :** ଯେଉଁ ଯମକରେ ପଦର ପ୍ରତ୍ୟେକ ଧାଡ଼ିରେ ଅକ୍ଷରମାନଙ୍କର ବହୁବାର ସମାନତା ଥାଏ, କିନ୍ତୁ ଅର୍ଥ ପୃଥକ୍ ପୃଥକ୍ ହୋଇଥାଏ, ତାକୁ ମହାଯମକ କୁହାଯାଏ । ଯଥା-

କ. ସୁରୁଚି କେଶର କେଶର କେଶର ତରୁ ତହିଁ
ସଞ୍ଚରି ପରାଗ ପରାଗ ପରା ଗଗନେ ଶୋହି ।
ସନ୍ତୁଷ୍ଟ ମଧୁର ମଧୁର ମଧୁର ବଶେ ଆଳି
ସାଦରେ ଫୁଲ ଫୁଲ ଫୁଲ ଚୁମ୍ବୀ ଚୁମ୍ବନ୍ତି ମିଳି । (ସୁ.ପ-୫ମ ଛାନ୍ଦ)

ଖ. ଶରଦରେ ବଞ୍ଚାଇବା କଥା ଅସମ୍ଭବ
କାଳକଣ୍ଠ କାଳକଣ୍ଠ କାଳକଣ୍ଠ ରବ ।
ସୁଧାକର ସୁଧାକର ସୁଧାକର ପୁର
ରମଣି ରମଣି ରମଣି ତ କାରାପୁର । (ପ୍ରେ.ସୁ)

ଗ. ବସନ୍ତ ବସନବଶ ମହାଯମକରେ
ବସନ୍ତ ବସନ୍ତ ପକ୍ଷୀ ବସନ୍ତ ଦ୍ରୁମରେ ଯେ ।
ବିଥୀ ବିଥୀ ଶୋଭା ଦିଶି କୁମୁଦ କୁମୁଦ
ବିଲୋକ ହାସ ପ୍ରକାଶି କୁମୁଦକୁ ମୁଦ ଯେ ।

ଘ. "ଗଉରୀବର ଗଉରୀ ବର ନିତମ୍ବା ବିମ୍ବାଧରୀ
ଗଉରୀ ବର ଗଉରୀବର କୃପାରୁ ମୁଁ ତୋହରି
ସାରସଦୃଶା ସାର ସଦୃଶା କାହିଁ ପାଇବା ଗୁଣେ
ସୁମନାବର ସୁମନା ବର ପୁରେ ନ ଥିବ ଜଣେ ।

(କୋ.ବ୍ର.ସୁ-୧୭ଶ ଛାନ୍ଦ)

ଙ. ସରୁଚି କେଶର କେଶର କେଶର ତରୁ ତହିଁ
ସଞ୍ଚରି ପରାଗ ପରାଗ ପରା ଗଗନେ ଶୋହି ।
ସନ୍ତୁଷ୍ଟ ମଧୁର ମଧୁର ମଧୁର ବଶେ ଆଳି
ସାଦରେ ଫୁଲ ଫୁଲ ଫୁଲ ଚୁମ୍ବୀ ଚୁମ୍ବନ୍ତି ମିଳି ।

(ସୁ.ପ.୫/୨୮-୨୯)

**ଯୋଡ଼ି ଯମକ :** ଯେଉଁଠାରେ ଏକପ୍ରକାର ଶବ୍ଦ ଏକାଧିକ ବାର ଯୋଡ଼ି ଯୋଡ଼ି ହୋଇ ରହିଥାଏ, ସେଠାରେ ଯୋଡ଼ି ଯମକ ହୁଏ ।

ଉଦାହରଣ -

କ) ରହିଁଲେ ଅଳି ଅଳି ମାଳତୀ ଆଳୀ ଆଳୀ ଦମ୍ଭକୁ ନସମ୍ଭାଳି ଭାଳି
ଜ୍ଞାନ କଟାଳି ଟାଳି ପ୍ରେମକୁଶଳୀ ଶଳୀମୁଖେ ଦେବ ବକାଳୀ କାଳି
ହେ ଜଳଧର ! ହେଲା ବିରହ ବଳି ବଳୀ । ଥିବେ ସଜନୀ ପାଳି ପାଳି
ସେବି ମୁଁ ଶୂଳୀ ଶୂଳୀ ଲଭି ରସାଳୀ ଶାଳୀ ବୋଲି ଏ ଦୁଃଖ ଭାଳି ଭାଳି ।
(ରସିକ ହାରାବଳୀ- ୧୪/୯)

ଏଠାରେ ଏକାଭଳି ଶବ୍ଦ ଯୋଡ଼ି ଯୋଡ଼ି ହୋଇ ପ୍ରୟୋଗ ହୋଇଥିବାରୁ ଯୋଡ଼ି ଯମକ ଅଳଙ୍କାର ହୋଇଛି ।

(ଖ) ଘେନି ଘନ କାଳ କାଳ ମଣି ବିଦ୍ୟୁଜ୍ଜାଳ ଜାଳ
ଅଗ୍ନି ବୃଷ୍ଟି ମହୋଜ୍ଜ୍ୱଳ ଜଳ
ରସିକ ବିକଳ କଳନା କି ବୋଲେ ଚଳଚଳ
ପ୍ରିୟା ପାଶେ ଖତ ମାଳ ମାଳ ହେ । (ପେମସୁଧାନିଧି)

**ତ୍ରିଭଙ୍ଗ ବା ତ୍ରିବୃତ୍ତ ଯମକ :** ପାଦ ମଧ୍ୟରେ ତିନିସ୍ଥାନରେ ଭାଙ୍ଗିଭାଙ୍ଗି ହୋଇ ଯମକ ହେଲେ ତ୍ରିଭଙ୍ଗ ବା ତ୍ରିବୃତ୍ତ ଯମକ ହୋଇଥାଏ । ଯଥା-

କ. ରାମା ଶିଶିରେ ଘୋର ନିଶିରେ ଦୁଃଖରାଶିରେ ଭାସି
ବସି ଏକାନ୍ତ ମାନସେ କାନ୍ତସ୍ୱରୂପ କାନ୍ତ ଘୋଷି
ରହି ବିଦେଶ କି ହୃଦଦେଶ ଦେଲା ସନ୍ଦେଶ ନାହିଁ
କେଉଁ ସୁନ୍ଦରୀ ମନ୍ଦ ଉଦରୀ ପ୍ରୀତି ଆଦରି ସେହି ।
ନବ ଯୁବତୀ ସେ ରସବତୀ ସୁଗୁଣବତୀ ସେ ତ
ସେ ଅନୁସରି କି ମୋହସରି ଏଣୁ ବିସ୍ମରିସତ ।
ବିଧିବଶର ବିଷମ ଶର ଏ ଅବସର କାହିଁ
ଜାଣେ ଚିତ୍ତର ମହାକାତର କରମନ୍ତର ସେହି । (ପ୍ରେ.ସୁ)

ଖ. ଘେନ ସୁଭଗତି ମୋର ଶୁଭଗତି ଲଭଗତି ତୁହି ସତରେ ।
(କୋ.ବ୍ର.ସୁ- ୨୨ଶ ଛାନ୍ଦ)

**ସମସ୍ତ ପାଦ ଅଳଙ୍କାର :**

ଯେଉଁଠାରେ କୌଣସି ପଦର ପ୍ରତ୍ୟେକ ପାଦ ଶେଷରେ ଗୋଟିଏ ମାତ୍ର ଶବ୍ଦ ପୁନଃ ପୁନଃ ଆବୃତ୍ତି ହୋଇ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରେ ସେଠାରେ ସମସ୍ତପାଦ ଅଳଙ୍କାର ହୁଏ । ଉଦାହରଣ-

ବିକଶିତ ହୋଇଛନ୍ତି　　କେଶରୀ କେଶରୀ
ବିଲସେ ଶାଖାରେ ଦେଖ　କେଶରୀ କେସରି ଯେ
ବିଦାରି ଯାଇଛି କରୀ　　କେଶରୀ କେଶରୀ
ବିହୀନ ହୋଇଛି ମାତ୍ର　　କେସରୀ କେଶରୀ ଯେ ।

(ବୈଦେହୀଶ ବିଳାସ-୧୯/୧୪)

| | |
|---|---|
| ଏଠାରେ କେଶରୀ-ପୁନ୍ନାଗ ଗଛ | କେଶରୀ - ପକ୍ଷୀ ବା ବାନର |
| କେଶରୀ- ନାଗେଶ୍ୱର | କେ ସରି - କେଉଁମାନେ ସମାନ |
| କରୀ କେଶରୀ- ହସ୍ତୀ | କେଶରୀ - ସିଂହ |
| କେସରୀ - ଉତ୍ତମ ଘୋଡ଼ା | କେଶରୀ- ଘୋଟକ ଶ୍ରେଷ୍ଠ |

**ଶ୍ଳେଷ :**

'ଶ୍ଲିଷ୍ଟୈଃ ପଦୈରନେକାର୍ଥଭିଧାନେ ଶ୍ଳେଷ ଇଷ୍ୟତେ ।'

(ସାହିତ୍ୟଦର୍ପଣ,୧୦/୧୧)

ଅର୍ଥାତ୍ ଭିନ୍ନାର୍ଥବୋଧକ ଶବ୍ଦ ଥରେ ମାତ୍ର ବ୍ୟବହୃତ ହୋଇ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କଲେ ଶ୍ଳେଷ ଅଳଙ୍କାର ହୁଏ । ଯେଉଁ ଶବ୍ଦ ଏକାଧିକ ଅର୍ଥ ପ୍ରକାଶ କରେ, ତାହାକୁ ଶ୍ଲିଷ୍ଟ ପଦ କୁହାଯାଏ ।

ସାଧାରଣତ ଶ୍ଳେଷ ଅଳଙ୍କାର ତିନିପ୍ରକାରର । ସାହିତ୍ୟଦର୍ପଣକାର ଲେଖିଛନ୍ତି ।

'ପୁନସ୍ତ୍ରିଧା ସଭଙ୍ଗୋଽଭଙ୍ଗସ୍ତଦୁଭୟାତ୍ମକଃ ।' (ସା.ଦ. ୧୦/୧୨)

ଅର୍ଥାତ୍ ଶ୍ଳେଷ ୩ ପ୍ରକାରର; ଯଥା-

**୧. ଅଭଙ୍ଗଶ୍ଳେଷ**

**୨. ସଭଙ୍ଗ ଶ୍ଳେଷ**

**୩. ଭଙ୍ଗାଭଙ୍ଗ ଶ୍ଳେଷ**

**୧. ଅଭଙ୍ଗ ଶ୍ଳେଷ-** ଯଦି ପଦ ମଧ୍ୟରେ ବ୍ୟବହୃତ ହୋଇଥିବା ଶ୍ଲିଷ୍ଟ ଶବ୍ଦ ଖଣ୍ଡିତ ନ ହୋଇ ଏକାଧିକ ଅର୍ଥ ବହନ କରେ, ତେବେ ସେଠାରେ ଅଭଙ୍ଗ ଶ୍ଳେଷ ହୁଏ । ଉଦାହରଣ -

କ) ବିଭ୍ରାଜିତ ବାରି ଝରି ତାରା ଭବ ଯହିଁ
ବିଶେଷିତ ଜ୍ୟୋର୍ତିବିଦ ଋକ୍ଷପତି ତହିଁ ।' (ବୈ.ବି )

ଏହି ଉଦାହରଣରେ ବ୍ୟବହୃତ ଶ୍ଲିଷ୍ଟ ପଦ ଗୁଡ଼ିକ ଶରତ କାଳ ପକ୍ଷରେ ଏବଂ ପ୍ରଭୁ ରାମଚନ୍ଦ୍ରଙ୍କର ଅଭିଷେକ ଅର୍ଥରେ ବୁଝାଏ । ଯେପରି-

ଶରତକାଳ ପକ୍ଷରେ - ବିଭ୍ରାଜିତ-ପ୍ରକାଶିତ
ବାରିଝରି-ଜଳଝରଣା
ତାରାଭବ-ନକ୍ଷତ୍ର ମାନଙ୍କର ପ୍ରକାଶ
ଋକ୍ଷପତି -ଚନ୍ଦ୍ର

ଅଭିଷେକ ଅର୍ଥରେ- ବିଭ୍ରାଜିତ-ଶୋଭିତ
ବାରିଝରି-ବାରିପୂର୍ଣ୍ଣକୁମ୍ଭ
ତାରାଭବ-ଅଙ୍ଗଦ
ଜ୍ୟୋର୍ତିବିଦ-ଜ୍ୟୋତିଷୀ, ଋକ୍ଷପତି-ଜାମ୍ବବାନ

ଖ) 'ବିକଶିତ କୁମୁଦାଦି ସୁମନ ରଭସେ
ବିମଳ ଅଗସ୍ତି ଭରଦ୍ୱାଜ ବାକ୍ୟ ଘୋଷେ ।' (ବୈ.ବି.)

ଏଠାରେ ମଧ୍ୟ ଶ୍ଳିଷ୍ଟ ପଦଗୁଡିକ ଦ୍ୱି-ଅର୍ଥ ବହନ କରନ୍ତି । ପ୍ରଥମରେ ଶରତକାଳ ଏବଂ ଦ୍ୱିତୀୟରେ ଶ୍ରୀରାମଙ୍କ ଅଭିଷେକ । ଯଥା-

ଶରତକାଳ ଅର୍ଥରେ- ବିକଶିତ-ପ୍ରସ୍ଫୁଟିତ
କୁସୁମାଦି ସୁମନ-କଇଁ ପ୍ରଭୃତି ପୁଷ୍ପ
ରଭସେ-ବେଗରେ
ବିମଳ-ପରିଷ୍କାର
ଅଗସ୍ତି-ଅଗସ୍ତି ନାମକ ନକ୍ଷତ୍ର
ଭରଦ୍ୱାଜ-ଭଦଭଦଳିଆ ପକ୍ଷୀ
ବାକ୍ୟଘୋଷେ- ଗାନ କରେ

ଅଭିଷେକ ଅର୍ଥରେ- ବିକଶିତ ହୃଷ୍ଟ
କୁମୁଦାଦି-କୁମୁଦ, ଅଙ୍ଗଦ ପ୍ରଭୃତି କପିବୀର
ସୁମନେ-ଉତ୍ତମ ମନରେ
ବିମଳ- ନିର୍ମଳ ମନରେ
ଅଗସ୍ତି, ଭରଦ୍ୱାଜ-ଋଷିଦ୍ୱୟ
ବାକ୍ୟଘୋଷେ-ବେଦଗାନକରେ

ଗ) ସ୍ୱର୍ଣ୍ଣଦୀପରାୟେ ପାପ ନାଶନରେ କ୍ଷମ
ସୁଗନ୍ଧ ପାରିଜାତକ ଫୁଲେ ମନୋରମ ଯେ ।
ସୁବଳ ଶଇଳ ସ୍ୱର୍ଗ ଅରଣ୍ୟ ପରାୟେ
ସେ ରାମ ହରିବିଳାସ ଅତି ଶୋଭାପାଏ ଯେ ।
(ସୁଭଦ୍ରାପରିଣୟ ୧/୨୬-୨୭)

ଅର୍ଥାତ୍ ସେ ସ୍ଥାନଟି ସ୍ୱର୍ଗଗଙ୍ଗା ପ୍ରାୟ ପାପ ବିନାଶନ ପାଇଁ ଅନୁକୂଳ । ସୁଗନ୍ଧରେ ପରିପୂର୍ଣ୍ଣ ପାରିଜାତକ ଫୁଲରେ ତାହା ଅତୀବ ରମଣୀୟ ।

ସୁବଳ ପର୍ବତ ପ୍ରାୟ ସେ ସ୍ଥାନ ଅତ୍ୟନ୍ତ ମନୋରମ । ସେହି ଅରଣ୍ୟ ସ୍ୱର୍ଗ ତୁଲ୍ୟ ଅଟେ । ସେ ସ୍ଥାନରେ ବଳରାମ ଓ ହରି (ଶ୍ରୀକୃଷ୍ଣ) ବିଳାସ କରୁଛନ୍ତି । ଫଳରେ ତାହା ଅତ୍ୟନ୍ତ ଶୋଭାମୟ ଦେଖାଯାଉଛି ।

**୨) ସଭଙ୍ଗ ଶ୍ଳେଷ :** ଯେଉଁଠାରେ ଶ୍ଳିଷ୍ଟପଦ ଖଣ୍ଡିତ ହେବା ଯୋଗୁଁ ଏକାଧିକ ଅର୍ଥ ପ୍ରକାଶ ପାଏ, ସେଠାରେ ସଭଙ୍ଗ ଶ୍ଳେଷ ଅଳଙ୍କାର ହୁଏ । ଯଥା-

କ) ସଉଧ ସଦନେ ଘର କୁଣ୍ଡଳୀରେ ଶୋଭା
ସେନାନୀ ଗଉରୀ ଇଶେ ପ୍ରକାଶ ପ୍ରତିଭା ଯେ । (ସୁ.ପ.୧/୨୪)

ଖ) 'ସୁଦର୍ଶନ କ୍ଷଣି ପୁରୁଷେ ହୁଏ ସ୍ଥିରୀପ୍ରତୀତ
ସିନ୍ଦୂର ତିଳକ ଶୋଭାରେ ମୋହେ ପ୍ରଥମୁଁ ମତ ।
ସୁବାସ ଫୁଲ ମଲ୍ଲୀ କଢ଼ି ପତ୍ରାବଳୀରେ ଶୋଭା
ସୁମନା ରସଦା କନକ ସାରରୁଚି ଦୁର୍ଲଭା ।' (ସୁ.ପ.-୫/୪-୪୧)

**ଭଙ୍ଗାଭଙ୍ଗ ଶ୍ଳେଷ-** ଯେଉଁ ପଦରେ ଅଭଙ୍ଗ ଓ ସଭଙ୍ଗ ଉଭୟ ଶ୍ଳେଷ ରହିଥାଏ ଏବଂ ଏକାଧିକ ଅର୍ଥ ପ୍ରକାଶ କରୁଥାଏ, ସେଠାରେ ଭଙ୍ଗାଭଙ୍ଗ ଶ୍ଳେଷ ହୁଏ । ଉଦାହରଣ-

'ବାବୁ ନାକଶିରୀ ଦାନ ଯୋଗ୍ୟ ଯୋଷାକୁ
ବିହର କାନନ କର ଆଲିଙ୍ଗନକୁ । (ବୈ.ବି.)

ଏଠାରେ ପ୍ରଥମ ପଦରେ 'ନାକଶିରୀ' ଓ 'ଦାନ' ପଦ ଦୁଇଟି ଶ୍ଳିଷ୍ଟପଦ । ଏ ପଦ ଦୁଇଟି ଭିନ୍ନ ଭିନ୍ନ ଅର୍ଥପ୍ରକାଶ କରୁଅଛି ।

ନାକଶିରୀ-ସ୍ୱର୍ଗସମ୍ପଦ ଓ ନାସିକାର ସୌନ୍ଦର୍ଯ୍ୟ

ଦାନ- ଦେବା ଏବଂ ଛେଦନ କରିବା

ଏହି ପଦ ଦୁଇଟି ଖଣ୍ଡିତ ନ ହୋଇ ଭିନ୍ନ ଭନ୍ନ ଅର୍ଥ ପ୍ରକାଶ କରୁଥିବାରୁ ଏହା ଅଭଙ୍ଗ ଶ୍ଳେଷ ।

ଏଠାରେ ଦ୍ୱିତୀୟ ପାଦରେ ଥିବା 'ବିହର' ଓ 'କାନନ' ପଦ ଦୁଇଟିର ଅର୍ଥ କାନନରେ=ବନର, ବିହର=ଭ୍ରମଣ କର ।

କିନ୍ତୁ କାନନ ପଦଟି ଖଣ୍ଡିତ ହେଲେ 'ବିହର କାନ' ଓ 'ନକର' ଆଲିଙ୍ଗନ ଅର୍ଥ ପ୍ରକାଶ କରେ । ଏଠାରେ ଶ୍ଳିଷ୍ଟ ପଦକୁ ଭାଙ୍ଗିବା ଦ୍ୱାରା ଭିନ୍ନାର୍ଥ ପ୍ରକାଶ ପାଉଥିବାରୁ ଏହା ସଭଙ୍ଗ ଶ୍ଳେଷ । ଏଠାରେ ପ୍ରଥମ ପାଦରେ ଅଭଙ୍ଗ ଶ୍ଳେଷ ଓ ଦ୍ୱିତୀୟ ପାଦରେ ସଭଙ୍ଗ

ଶ୍ଳେଷ । ତେଣୁ ଏହା ସାମଗ୍ରିକ ଭାବେ ଭଙ୍ଗଭଙ୍ଗ ଶ୍ଳେଷ । ଏହି ପଦଟିର ଦୁଇଟି ଅର୍ଥ ନିମ୍ନରେ ପ୍ରଦାନ କରାଗଲା-

ପ୍ରଥମ ଅର୍ଥ- ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହୁଛନ୍ତି-'ବାବୁ ଲକ୍ଷ୍ମଣ ! ଏହି ଯୋଷା ସ୍ୱର୍ଗସମ୍ପଦ ଦାନ କରିବାରେ ସମର୍ଥ । ଏହାକୁ ଆଲିଙ୍ଗନ କର ଓ କାନନରେ ବିହାର କର ।

ଦ୍ୱିତୀୟ ଅର୍ଥ - ରମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଛନ୍ତି- 'ବାବୁ ଲକ୍ଷ୍ମଣ ! ଏହି ଯୋଷାର ନାସିକାର ସୌନ୍ଦର୍ଯ୍ୟକୁ ଛେଦନ କରିବା ଯୋଗ୍ୟ । ଏହାର କାନକୁ ମଧ୍ୟ ଛେଦନ କର । ଏହାକୁ ଆଲିଙ୍ଗନ କର ନାହିଁ ।

**ପର୍ଯ୍ୟାୟ ଶ୍ଳେଷ-** ଯେଉଁଠାରେ ବାକ୍ୟର ପ୍ରତିପାଦିତ ଅର୍ଥ ବିଚିତ୍ରତା ପ୍ରତିପାଦନ କରିବା ଉଦ୍ଦେଶ୍ୟରେ ଅନ୍ୟ ଏକ ଭଙ୍ଗୀରେ କଥିତ ହୋଇ ଏକାଧିକ ଅର୍ଥ ପ୍ରକାଶ କରେ, ସେଠାରେ ପର୍ଯ୍ୟାୟ ଶ୍ଳେଷ ଅଳଙ୍କାର ହୁଏ ।

ଉଦାହରଣ- 'ସୁରଭୀକାଳ ପରି ସେ ଶୋଭା ସୁମନରେ
ସରସ୍ୱାନ ପ୍ରାୟେ ମହୋଜ୍ଜ୍ୱଳ ଯାଦବରେ ଯେ ।' (ସୁ.ପ-୧/୨୫)

ଅର୍ଥାତ୍ ସେହି ସ୍ଥାନ ବସନ୍ତକାଳରେ ପୁଷ୍ପମାନଙ୍କ ଦ୍ୱାରା ଶୋଭାପାଉଛି । ସରସ୍ୱାନ ଅର୍ଥାତ୍ ସାଗର ଗର୍ଭରେ ଜଳଜନ୍ତୁ ଅବସ୍ଥାନ କଲାପରି ଯାଦବଗଣ ସେଠାରେ ରହି ଶୋଭା ପାଉଛନ୍ତି ।

**ବର୍ଣ୍ଣଶ୍ଳେଷ-** ଯେଉଁଠାରେ ବର୍ଣ୍ଣ ପ୍ରଭେଦରୁ ପୃଥକ୍ ପୃଥକ୍ ଅର୍ଥ ପ୍ରକାଶ ପାଏ ବର୍ଣ୍ଣଶ୍ଳେଷ ଅଳଙ୍କାର ହୁଏ ।

ଯଥା - ସ୍ୱଭାବ କାକ ଭଲ୍ଲୁକ ଖଳ ଏହୁବେନି
ସନ୍ତୋଷ ଏ ଦୋଷୋଦମ୍ଭେ ସଭୟ ଏ ଘେନି ଯେ ।
ସୈଂହିକେୟ ବିରୋଧୁଁ କି ବିନାଶ ବିଧୁର
ସମସ୍ତ ଦେବଙ୍କ ମିତ୍ର ଶିରେ ଧରେ ହର ଯେ । (ସୁ.ପ-୧/୧୯୨୦)

ଅର୍ଥାତ୍ ଭଲ୍ଲୁକ ଓ କାକ ସ୍ୱଭାବରେ ଖଳ । ସମସ୍ତେ ନିଜ ନିଜ ଗୁଣରେ ମୁଗ୍ଧ । ଏମାନଙ୍କୁ କିନ୍ତୁ ଅନ୍ୟମାନେ ଭୟ କରନ୍ତି । ସୈଂହୀକେୟ ଅର୍ଥାତ୍ ଗ୍ରହ ଚନ୍ଦ୍ରକୁ ବିରୋଧ କଲେ ଯେ ଚନ୍ଦ୍ରର କ୍ଷତି ହୁଏ ନାହିଁ । ସେ ସମସ୍ତ ଦେବତାଙ୍କ ମିତ୍ର ହେତୁ ଶିବତାଙ୍କୁ ମସ୍ତକରେ ଧାରଣ କରିଛନ୍ତି ।

**ବ୍ୟଙ୍ଗଶ୍ଳେଷ** - ଯେଉଁ ପଦରେ ଶବ୍ଦମାନଙ୍କୁ ହାସ ପରିହାସ ଭାବରେ ପ୍ରକାଶ କରାଯାଏ, ସେଠାରେ ବ୍ୟଙ୍ଗଶ୍ଳେଷ ହୁଏ ।

ଯଥା- 'ସେ ହାଟେ ଉରଜଙ୍କ ଯୁବତୀ
ସିନ୍ଦୂର ସମ୍ପୁଟକେ ବିକନ୍ତି
ଓଷ୍ଠ ଉରଜ ଘୋଡାଇଛନ୍ତି ଅତି ଯତନେ ଯେ ।

ସିହାଂଣ କେହି ଯେବେଟି କହି
ଏ ସମ୍ପୁଟକ କିଣିବି ମୁହିଁ
ଶୁଣି ପଣନ୍ତ ହସିଲା ହୋଇ ଦିଏ ଲପନେ ଯେ ।
ସେ ସ୍ଥଳକୁ ନାଗରୀ କାମିନୀ ଆସି ଯେ
ସ୍ୱରୂପରେ ନିନ୍ଦନ୍ତି ରମ୍ଭା ଉର୍ବଶୀ ଯେ
ସ୍ନେହାନୁବନ୍ଧ ଯାହା ଯାହାର ଭେଟ ହୋଇଲେ ତାହା ତାହାର
ଗହଳେ ଯାନ୍ତି ନଦୀ ସାଗର ପରାୟେ ମିଶି ଯେ ।' (ସୁ.ପ.-୬/୧୦)

**ଛଳଶ୍ଳେଷ** - ଯେଉଁଠାରେ ବକ୍ତାର ବ୍ୟବହୃତ ବାକ୍ୟ ଯଦି ଭିନ୍ନଅର୍ଥ ପ୍ରକାଶ କରେ ତେବେ ସେଠାରେ ଛଳଶ୍ଳେଷ ଅଳଙ୍କାର ହୁଏ ।

ସାୟଂକାଳ ଉତ୍ତାରେ ଚନ୍ଦ୍ର ଦେଖି ନଭରେ ସୁମୁଖୀ ସଶଙ୍କ ହୋଇଲା
ସମ୍ବର୍ତ୍ତକାଳ ଯାଇ ପୁଣି କଷ୍ଟେକ ହୋଇ ରାବଣ ଜନମ ହୋଇଲାରେ
ସହଚରି । ସଜ ଏ ବାଳୀ ବିନାଶରେ ।
ସନ୍ତୋଷ ଦାତା ନିଶାଚରେ ।
ସୁନୀତି ସୁତ ପରଯାଏ ବିଶେଷ କରି ଦୀପ୍ତି ଲାଗିଛି ସହଚରୀରେ ।

(ସୁ.ପ.୮/୨୬)

**ଭାଷାଶ୍ଳେଷ-**

ଯେଉଁଠାରେ ଭିନ୍ନ ଭିନ୍ନ ଭାଷା ଅନୁଯାୟୀ ଶବ୍ଦଗୁଡିକ ଭିନ୍ନଭିନ୍ନ ଅର୍ଥ ପ୍ରକାଶ କରେ, ସେଠାରେ ଭାଷା ଶ୍ଳେଷ ହୁଏ ।

ଯଥା- 'ଶମ୍ଭୁ ତୋ ଉରଜ ପାଣିକି ଦେଉଥିବ ମୋ ଚିତ୍ତ
ତିଳକ ଶୋଭାକୁ କାଳକ ଲକ୍ଷ ନାହିଁ ଜଗତ ।' (ର.ପ. ୧୪/୧୭)

**ରୂପକ ଶ୍ଳେଷ** - ଉପମାନ ଓ ଉପମେୟର ପରସ୍ପର ଅଭେଦ କଥିତରୁ ଏକାଧିକ ଅର୍ଥ ପ୍ରକାଶିତ ହେଲେ ରୂପକ ଶ୍ଳେଷ ଅଳଂକାର ହୁଏ ।

ଯଥା-(କ) ସ୍ୱଭାବରେ ମଦାଳସା ଉରୁରମ୍ଭା ଚନ୍ଦ୍ରକଳା ମନ୍ଦହାସେ
ସିହାଣୀ ରହାଣୀ ମନୋରମା ଭ୍ରୁରୁ ଚିତ୍ରଲେଖା ପ୍ରାୟେ ଦିଶେ ।
ସରସ ମୃଦୁବଚନେ ମଞ୍ଜୁ ଘୋଷା ତିଳୋତ୍ତମା ସହଜରେ
ସ୍ରଷ୍ଟା ପ୍ରମାଦକୁ ନିର୍ମାଣ କାଳରେ ଶୋଭା ରହିଁ ମୋହ ହୋଇ
ସପୀଡିତ କାମେ ହେବାରୁ ଭ୍ରମରୁ ହୁଡୁଥିଲା କୁଚ ଦୁଇ ।

(ସୁ.ପ. ୨/୩)

(ଖ) ସୁଧର୍ମା ସଭାରେ ବସି ଶୁକ ଋଷି କହିଲେ ଅମର ଚୟକୁ
ସାଜିଛି ଏମନ୍ତ ରଥ ମନ ରଥ ମନୋରଥ ଜଗଜ୍ଜୟକୁ
ସାରଥି, ନେତ୍ର କେତେ ଗତି ହୁଅନ୍ତି
ସରଶନା ଘଣ୍ଟି ପ୍ରକଟି କଟିରେ ରଣ ରଣ ଏକା କହନ୍ତି ।

(ସୁ.ପ.୪/୧)

(ଗ) ବୁଧେ ରୂପକ ଶ୍ଳେଷ ମିଶା
ବୁଝ କବି ରଚନା ଭାଷା ।
ବଢାଇ ତୋଷ ବତୀ ପୁଣି
ବିଭର୍ତ୍ତି ତରୁକି ତରୁଣୀ ।
ବନ୍ଧ୍ୟା ନୁହଁନ୍ତି ଫଳବତୀ
ବୋଧି ସମୟେ କାନ୍ତ ପ୍ରୀତି ।
ବ୍ୟଭିଚାରୀ ପରାୟ ଶୋହି
ବଲ୍ଲୀଧବ ସମୀପେ ରହି
ବଞ୍ଚାଇ କୁସୁମ ବିକାଶେ
ବିଳାପେ ସେ ମଧୁପେ ରସେ । (ବୈ.ବି)

**ଦ୍ୱିଅର୍ଥ ଶ୍ଳେଷ-** ଯେଉଁଠାରେ ଗୋଟିଏ ବାକ୍ୟ ଦୁଇଟି ଅର୍ଥ ପ୍ରକାଶ କରେ ସେଠାରେ ଦ୍ୱିଅର୍ଥ ଶ୍ଳେଷ ଅଳଙ୍କାର ହୁଏ । ଉଦାହରଣ-

ବନ୍ଦଇ ଦୀନ ବାନ୍ଧବ ହରି    ଯେ ତମ ଚକ୍ର ଖଣ୍ଡନ କାରି
ସଦା କମଳାନନ୍ଦ ବିସ୍ତାରି ସ୍ୱଭାବେ ଇନ ଯେ
ବିଭୁ ଅନନ୍ତ ଅଙ୍କ ବିହାରୀ    କରପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ ।
ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ
ବଇକୁଣ୍ଠ ପକ୍ଷକ ଲୋକ ତୋଷିତ ଯେ
ବିକାଶ ଅଖଣ୍ଡିତ ମଣ୍ଡଳେ    ସିଂହଭାବରେ କ୍ରିଡ଼ୀତ କାଳେ
ଭବେ ତରଣୀ ହୋଇ ମଞ୍ଜୁଳ ଗିରି ଉଦିତ ଯେ । (ବୈ.ବି-୧/୧)

(i) **ପ୍ରଥମତଃ, ବିଷ୍ଣୁଙ୍କ ପକ୍ଷରେ** - ଯେଉଁ ବିଷ୍ଣୁ ନିଜର ଚକ୍ରଦ୍ୱାରା ରାହୁର ମସ୍ତକଚ୍ଛେଦନ କରିଥିଲେ, ଧର୍ମ ସଂସ୍ଥାପନ କରି ଯେ ସାଧୁଜନଙ୍କର ଆନନ୍ଦ ବର୍ଦ୍ଧନ କରନ୍ତି, ଯେ (ନିଜ ନାଭିରୁ ଜାତ ହୋଇଥିବା ପଦ୍ମରେ ସ୍ଥାନଦେଇ) ବ୍ରହ୍ମାଙ୍କୁ ଆନନ୍ଦିତ କରାନ୍ତି, ଯେ (ନିଜର ପତ୍ନୀ) ଲକ୍ଷ୍ମୀଙ୍କର ଆନନ୍ଦବିସ୍ତାର କରନ୍ତି, ଯେ ସ୍ୱଭାବତଃ ଶ୍ରୀପତି ଭାବରେ ପରିଚିତ, ଯିଏ ସମସ୍ତ ଲୋକଙ୍କର ପ୍ରଭୁ, ଯେ ଶେଷଦେବଙ୍କର ଅଙ୍କରେ

ଶୟନ କରନ୍ତି, ଯାହାଙ୍କୁ ଦେବତାମାନେ ପୂଜା କରନ୍ତି, ପକ୍ଷୀରାଜ ଗରୁଡ଼ ଯାହାଙ୍କର ସମ୍ମୁଖରେ ବିରାଜିତ, ଯେ ବିଷ୍ଣୁଭକ୍ତମାନଙ୍କର ଆନନ୍ଦଦାୟକ, ଯେ ସମସ୍ତ ବ୍ରହ୍ମାଣ୍ଡରେ ଅଖଣ୍ଡଭାବରେ ପରିବ୍ୟାପ୍ତ, ଯେ ଏକଦା ନୃସିଂହ ଅବତାର ଧାରଣ କରି ଲୀଳା ସଂରଚନା କରିଥିଲେ, ଯେ ସଂସାର ସାଗର ପାରିହେବା ନିମିତ୍ତ ନୌକା ସ୍ୱରୂପ, ଯେ ନୀଳଗିରିରେ ବିଜେକରନ୍ତି, ସେହି ଦୀନବାନ୍ଧବ ବିଷ୍ଣୁଙ୍କୁ ମୁଁ ବନ୍ଦନା କରୁଅଛି ।

**(ii)** **ଦ୍ୱିତୀୟତଃ, ସୂର୍ଯ୍ୟଙ୍କ ପକ୍ଷରେ** – ଯେ ଅନ୍ଧକାର ସମୂହକୁ ବିନାଶ କରନ୍ତି, ଯେ (କମଳ) ପଦ୍ମଫୁଲର ଆନନ୍ଦବର୍ଦ୍ଧନ କରନ୍ତି, ଯାହାଙ୍କର ତେଜ ଜଳ, ସ୍ଥଳ, ଆକାଶ ସର୍ବତ୍ର ପ୍ରସାରିତ ହୁଏ, ଯେ ଆକାଶ ମଣ୍ଡଳରେ ଯାତାୟାତ କରନ୍ତି, ଯାହାଙ୍କର ଶୁଭ୍ର କିରଣ ଉଲ୍ଲୁକ ପ୍ରଭୃତି ପକ୍ଷୀମାନଙ୍କର ଆନନ୍ଦ ହରଣ କରିଥାଏ, ପଣ୍ଡିତମାନେ (ସାୟଂକାଳରେ) ଯାହାଙ୍କୁ ପୂଜାର୍ଚ୍ଚନା କରନ୍ତି, ଅରୁଣ ସାରଥିଭାବରେ ଯାହାଙ୍କର ସମ୍ମୁଖରେ ବିରାଜିତ, ଯେ ଇନ୍ଦ୍ରଙ୍କୁ ସାହାଯ୍ୟ କରନ୍ତି, ଯେ ଭୂଲୋକର ସନ୍ତୋଷ ବିଧାନ କରନ୍ତି, ଯେ ଅଖଣ୍ଡମଣ୍ଡଳାକାରରେ ବିରାଜିତ, ଯେ ସିଂହ ରାଶିରେ ଅବସ୍ଥାନ କରି ବିମଳ ଦୀପ୍ତି ବିସ୍ତାର କରନ୍ତି, ଯେ ନିଜର ପୁତ୍ର ଯମକୁ ବାତ୍ସଲ୍ୟରେ ଖେଳାଇଥାନ୍ତି, ସଂସାରରେ ଯିଏ ତରଣୀ ଭାବରେ ଅଭିହିତ, ସେହି ଦିବସର ବନ୍ଧୁ ସୂର୍ଯ୍ୟଦେବଙ୍କୁ ମୁଁ ବନ୍ଦନା କରୁଅଛି ।

**ଚ୍ୟୁତଦତ୍ତାକ୍ଷର ଶ୍ଳେଷ-**

ଯଥା- ସୁଯୋଗେ ସୁର ଦଇତ ମନ୍ଥନର ବେଳେ
ସମ୍ଭୁତ ସୁନ୍ଦରୀ ଶିରୀ ହେଲା ଏତେବେଳେ ଯେ
ସ୍ୱନ ଶୁଣି କୁମାରୀର କେହି କେହି ଭାଳେ
ସତ୍ୱରେ ପୁଛିଲେ ପିକ ଡାକୁଛି କି ସାଳେ ଯେ ।

**'ଶ୍ଳେଷ' ଅଳଙ୍କାରର ଅନ୍ୟାନ୍ୟ ଦୃଷ୍ଟାନ୍ତ-**

କ) ସମାନ ପୌଲସ୍ତ୍ୟ ରାଜା ଦୁର୍ଯ୍ୟୋଧନ ମନ୍ଦୋଦରୀରେ ସ୍ନେହବନ୍ତ
ସାନନ୍ଦ ଶୁକ ଉକ୍ତିକି ଶୁଣିବାରେ ପୁଷ୍କେ ଅତ୍ୟନ୍ତ ରାଜିତ
ସେବିତ, ସୁମନ ବୃନ୍ଦ ଯେ ନିରତ
ସୁନାସୀର ବିନୟୀ ଯା ଦ୍ୱାରସ୍ଥ ପାଶେ ଭେଟ ହୋଇବାର ନିମିତ୍ତ ।

(ସୁ.ପ.୪/୨୩)

(ଖ) ସମ୍ଯାରେ ଅତି ଭୂପତି ତତି, ରୈବତ ସ୍ଥିତ ସେବନ୍ତି ଦନ୍ତୀ ସୁଦନ୍ତୀ କ୍ଷିତିପତି
ଆକୃତି ଋରୁଚଟକ ଯେ ।

ସୁରନିଳୟ ମଳୟ ନିଶା, ନବୀନ ଜଳଧର ସଦୃଶା,
ଚନ୍ଦ୍ରରେ ମନୋରମ ମନୀଷା ନନ୍ଦକାରକ ଯେ ।

ସୁଛଟକରେ ହାଟ ବସିଛି ତହିଁ ଯେ । ସର୍ବଦ୍ରବ୍ୟ ସମ୍ଭୂତ ନଥିଲା ନାହିଁ ଯେ ।
ସର୍ପିକ୍ଷୀରରେ ବ୍ରଜପସରା ଦିଶୁଛି ଅଧୋଭୁବନପରା
ମାଳିପସରା ତ୍ରିଦିବ ତୋରା, ସୁମନ ଶୋହି ଯେ । (ସୁ.ପ୍ର ୬/୮)

ଗ) 'ସେଠାରୁ ଯାଇ ନୃପ କଳାପ, ଦେଖିଲେ ଶୋଭା ସଭା ମଣ୍ଡପ
ବହିଛି ଆକାଶର ସ୍ୱରୂପ, ତାରେ ଜ୍ୱଳିତ ଯେ ।
ସତମ ବୁଧ ରେବତୀପତି ଶଉରୀଗୁରୁ କହି ଅଛନ୍ତି
ମଙ୍ଗଳ କେତୁ ଯହିଁ ମିଳନ୍ତି ମିତ୍ର ତୋଷିତ ଯେ ।
ସନମାନ ପାଇଣ ବସିଲେ ସର୍ବେ ଯେ ।
ସତ୍ୟବଚସ ଗଣ ପ୍ରବେଶ ଜବେ ଯେ ।
ଜଟା କୌପୁନୀ ହରିଣାଜିନ ଦଣ୍ଡକରକ ମାଳା ମଣ୍ଡନ
କୁଣ୍ଡଳ କର୍ଣ୍ଣ ଭସ୍ମ ଲେପନ ସେ ଅବୟବେ ଯେ ।' (ସୁ.ପ.୬/୧୬)

(ଘ) ଶୋହେ ବରହିଶିଖା ଗିରି ଶିଖରେ ତେଣୁ ବହେ କୃଷ୍ଣ ଅବତାର
ସଦୀପିତବନ୍ତ ହଂସପଦ ହୋଇ ହରିଲେ ଜୀବନ ନିକର ।
ସମୀର, ସମେଳେ ରଜନି କରରେ
ସବୁଦେବ ଦୀପେ ଆକୁଳ ଦେଲା ସେ ଚକ୍ରଗତି ନାକରେ ।
ସୁବନ୍ତୀ ଜରତୀ ପରାୟେ ଦିଶିଲେ ଦିନ ହୁଏ ଘନରସରେ
ଶୃଗାଳ ଆଦି ରସନା ପ୍ରକାଶିଲେ ବିପରୀତ ନାରୀ ପ୍ରକାରେ
ସ୍ଫୁଟରେ, ସନ୍ତୋଷ ବିହୀନ ମଲ୍ଲିକା
ସ୍ଫୁଟରେ ହରଷ ହୋଇଲେ ମଲ୍ଲିକା କଲେ ଭୋଗୀ କଣ୍ଠେ ମାଳିକା ।
(ସୁ.ପ.୧୪/୩)

ଅର୍ଥାତ୍ ଗିରିଶିଖର ଦେଶରେ ଅଗ୍ନି ଶିଖା ଜଳି ତହିଁ ଧୂଆଁ ବାହାରିଲା । ଫଳରେ ସେଠାରେ କୃଷ୍ଣବର୍ଣ୍ଣ ଆଚ୍ଛାଦିତ ହେଲା । ସୂର୍ଯ୍ୟକିରଣ ପ୍ରଖର ହେବାର ଜଳାଶୟରୁ ଜଳ ଶୁଖିଗଲା । ପବନ ବହିବାରୁ ଧୂଳିକଣା ଉଡିବାକୁ ଲାଗିଲା । ଆକାଶରୁ ଚକାଭଉଁରୀ ଖେଳି ପବନ ବହିଲା । ଫଳରେ ମନ୍ଦିରର ଦୀପ ସମୂହ ଲିଭିଗଲା ।

ଙ) ''ସୁଦନ୍ତୀ ବୋଲେ ଦେଖ ଧବ, ଶକ୍ରନନ୍ଦନ ଜିତ ସମରଭାବ
ଶରେ ଲୀନ ରକ୍ଷ ରାମ ଲକ୍ଷ୍ମଣ, ସମ୍ପଦ ଅତି ରାତ୍ରିରେ ଗଣ
ସୁକମ୍ପିତ ଯହିଁ, ସୁକୂଳ ତାଳିମ୍ବ ଜାମ୍ବବ ତହିଁ ।'' (ସୁ.ପ. ୧୬/୧୯)

ଚ) ''ଜୟଜୟ ଜୟ ରାମ ଜନକ ସୁଖଦ
ଭୀମ ହରଷ ଦାନରେ ସଦା ବିଶାରଦ ହେ ।'' (ଲା.ବ.୧/୧)

ଛ) "କୁନ୍ତଳ ଦେଶରେ ଚୂଡ଼ା ଶୋଭା କରାଇଲା
ବିଦର୍ଭରେ ହାସକୁ ପ୍ରଭୁତ୍ୱ ପଣ ଦେଲା ଯେ ।
ମାଳବରେ କଣ୍ଠକୁ ମଣ୍ଡିତ କଲା ନେଇ
ଚୋଳରେ ଶୋଭିତ କଲା ଉରଜକୁ ତହିଁ ଯେ ।"
କାଞ୍ଚିରେ ରଞ୍ଜନ କଲା ମଧ୍ୟକୁ ନିରତ
କନକ କଟକେ କଲା ପାଦକୁ ପୂଜିତ ଯେ ।"
(ଲା.ବ. ୨/୭୬,୭୭,୭୮)

(ଜ) "ସହଚରୀଏ ଛଳେ କି କରିବ ସେ ବଳେ ରହିଲାଣି ରକ୍ଷବେଷ୍ଟନେ
ସ୍ୱାଭାବିକ ଏକଥା ଯେତେ ଘେନୁ ସେ ବୃଥା ଏ ଦୋଷାକର ଘେନ ମନେରେ ।
ସହଚରୀ । ସୁବର୍ଣ୍ଣ ପଦ୍ମିନୀରୁ ହରେ
ସଂନ୍ଦଗ୍ଧ ଦ୍ୱିଜ ଚକ୍ର କରେ
ସେବେ ନିତି ବାରୁଣୀ କପାଳୀ ସଙ୍ଗେ ପୁଣି ଜାତ ହୋଇଛି ସାଗରରେ ।
(ସୁ.ପ. ୮/୨୭)

(ଝ) ସଉଧ ସଦନେ ଘନ କୁଣ୍ଡଳୀରେ ଶୋଭା
ସେନାନୀ ଗଉରୀ ଈଶେ ପ୍ରକାଶ ପ୍ରତିଭା ଯେ । (ସୁ.ପ. ୧/୨୪)

(ଞ) ସୀତା ସହିତେ ସିତ କଳେବର
ସଦା ପରମାନନ୍ଦ ସୁଖକର ।
ସିଦ୍ଧି ସେବନୀୟ ହରିତାମ୍ବର
ସେନାନୀ ବିନୟ ବଚନେ ସ୍ଥିର ସେ ।
ସ୍ମରେ ଚିତ୍ତ ଶିବରାମ ଯେ ।
ସପ୍ତବିଂଶ ପଦେ ଛାନ୍ଦ ଉପଇନ୍ଦ୍ର ଭଞ୍ଜ କହେ ମନୋରମ ଯେ ।
(ସୁ.ପ. ୭/୨୭)

(ଟ) ଚମ୍ପା ସେ ରସ-ଯୋଷା ଶିରେ ବହି
ଶିବ ତହିଁରେ ଗୁରୁତର ସ୍ନେହୀ
ଜନ ମନୋହର ସୁବାସ ଅଛି
ଭ୍ରମର ଅବଲମ୍ବ ନାହିଁ କିଛି । (କୋ.ବ୍ର.ସୁ-୨ ୟ ଛାନ୍ଦ)

**ମଣ୍ଡୂକପ୍ଲୁତିଗତି :-** ବେଙ୍ଗ ଯେପରି ଡେଇଁ ଡେଇଁ ଗତି କରେ ସେହିପରି ଅକ୍ଷର ଅକ୍ଷର ଡେଇଁ ଅକ୍ଷରଗୁଡ଼ିକୁ ସଜ୍ଜିତ କଲେ ମଣ୍ଡୂକପ୍ଲୁତିଗତି ଚିତ୍ରାଳଙ୍କାର ହୁଏ ।

ଉଦାହରଣ-

ଦେଖ ରବି ଅସ୍ତ ସୁଖ ଦାନି ରେ
ଆସୁ ତୋ ଆଳୀ ପ୍ରାଣ ରଖ ମୋ ରେ ।
ପାଶେ ଆସ ମୋ ତା କୁ ବୋଲି କରି
ବିଙ୍କେ କରା ରହିଛି ନେତ୍ର ଡେରି । (ଚି.କା.ବ-୨/୫୩-୫୪)

**ଶାର୍ଦ୍ଦୁଳ ବିକ୍ରୀଡ଼ିତ :** ଏହାର ନିୟମ ହେଉଛି ପ୍ରଥମ ପାଦର ପ୍ରଥମ ବର୍ଣ୍ଣ ସହିତ ଦ୍ୱିତୀୟ ପାଦର ପ୍ରଥମ ବର୍ଣ୍ଣ- ଏହିପରି କ୍ରମରେ ତଳ ଉପର କରି ପଢ଼ିଲେ ପ୍ରକୃତ ଅର୍ଥ ପ୍ରତୀତି ହୋଇଥାଏ ।

ଉଦାହରଣ-

କହେ ଚିବୁକ ଧରିକରି କରେ
ଘଟୁକୁ ଶାର୍ଦ୍ଦୁଳ ବିକ୍ରୀଡ଼ିତରେ ।
କ ବ ର ଶୋହେ ରେ ତୋ ମାନସରେ
ର ସ ସା ଭି ଳା ସି ରତି ରୂପରେ ।
ବର ରସ ରସାଶୋଭି ହେଳାରେ
ତୋଷି ମାର ନତି ସରୁ ରେ ପରେ ।
ହୋଇବାରୁ ସୁରେଶ ଯାର ଢାର
ହୋଇଥିଲେ ସେ ପଥରେ ପଥର ।
କରୁ ତହିଁରେ ଆସେ ଆସପଦ
ଗଳା ଶାପର ଅପବାଦ ବାଦ ।
ଚିନ୍ତି ସେହି ଚରଣ କଞ୍ଜ-କଞ୍ଜ
ହୁଏ ଦୁଃଖ ଉପେନ୍ଦ୍ର ଭଞ୍ଜ ଭଞ୍ଜ । (ଚି.କା.ବା/୧/୬୪-୬୯)

**ଲୋମ ବିଲୋମ ମହାପଦ୍ମବନ୍ଧ :**

ଉଦାହରଣ-

ସରିନାହିଁ କାଳ କାହିଁ ନାରୀଶ ।
ସଦା ତୋ ମୁଦମୁଦ ମୁଁ ତୋ ଦାସ ।
ସରସବଦୀ ଅତୀବ ସରସ ।
ସଦରକ୍ଷାର ସାର ସାର ହସ ।
ସରୂପା ଖରରେ ରଖ ପାରୁଶ ।
ସଭାବ ଲାଜ ଲାଜ ଭାବ ଭାଷ ।
ସତୀର ହିଁ ଦର୍ପ ବହି ରତୀଶ ।
ସଭରସା ରଖ ରଭସ ।

ସ୍ତୁତି ପୁରୁଷର ଲୋମ ବିଲୋମ
ସରସିଜ ବନ୍ଧରେ ମନୋରମ । (ସୁଭଦ୍ରା ପରିଣୟ/୧୧/୮-୧୨)

**ଅନ୍ତର୍ଲିପିକା:**

ଉଦାହରଣ -

କହଇ ଏକ ପୁରୁଷ ଶୁଣ ଚନ୍ଦ୍ରମୁଖୀ ।
ବୁଝାଏ ଅନ୍ତର୍ଲିପିକା ତ୍ରିଅକ୍ଷର ଲେଖି ।
ପାତ୍ରଯୋଗ୍ୟ ହୁଏ କିସ ଜାଣିଲେଟି ନର । (ବିଚାର)
ରାଗଦ୍ରବ୍ୟକୁ କି ବୋଲି ବୋଲନ୍ତି ସଂସାର । (କଟୁକ)
ବିଷ୍ଣୁ ହେଲେ କି ରୂପ ତୃତୀୟ ଅବତାରେ । (ଶୂକର)
କେହୁ ପୁଣି ବଢ଼ କୋମଳତା ଉପମାରେ । (ବାରିଜ)
ବରଷା ପ୍ରବେଶେ କି କରନ୍ତି ଖଗବଂଶ । (ନିବାସ)
କୂଟେ କୁରୁକୁଳକୁ କେ କରାଇଲା ନାଶ । (ଶକୁନି)
ସୁବର୍ଣ୍ଣକୁ ତୁଳ କଷ କରେ କେଉଁ ଜାତି । (ସୁନାରି)
ଦୁର୍ଗାରୂପ କେଉଁ ଦୈତ୍ୟ ନିମିତ୍ତେ ପାର୍ବତୀ । (ମହିଷ)
ଶରୀର ମଧ୍ୟରେ ନିଷ୍ଠେ କେ ଅଟଇ ସାର । (ପବନ)
ପକ୍ଷମାନ କାହାର କାଟିଲେ ବଜ୍ରଧାର । (ଅଚଳ)
ଆଦିତ୍ୟକୁ ଦେଖି ଦେଖି କେହୁ ହୁଏ ବିକଶିତ । (ବନଜ)
କାହାକୁ ପ୍ରଶଂସା ପଛେ କରନ୍ତି ଜଗତ । (ସଜ୍ଜନ)
ଜଗନ୍ନାଥଙ୍କର କାହାଠାରେ ପକ୍ଷପାତ । (ଭକତ)
କି ବୋଲନ୍ତି ଶିବ ଥାଇ ପ୍ରେତଙ୍କ ସଙ୍ଗତ । (ପ୍ରେତେଶ)
ମଧ୍ୟବର୍ଣ୍ଣ ବାହାର ହୋଇବା ଭାଷା ଜାଣି ।
ସ୍ନେହେ ଆଲିଙ୍ଗନ କଲା କୁରଙ୍ଗ ଈକ୍ଷଣୀ ।
ବୋଇଲା ମନକୁ ଆସେ ବାହାରୁଛି ଏତେ ।
ଚାଟୁ କରିବାକୁ ନାହିଁ ବଚନ ଜଗତେ । (ଚି.କା.ବା/୨/୬୧/୭୦)

**ଗୋମୂତ୍ର ଛନ୍ଦ :**

ଉଦାହାରଣ :

ବୋଲନ୍ତି ଗୋମୂତ୍ର ଛନ୍ଦେ ହସ ହସ ହୋଇ
ବୀଣା ପ୍ରତିଭାରେ ଅନା ତୋଳାକୁ ଖେଳାଇ ଯେ
ବାରବାର ତାରତର ମଣିଗଣ ଜ୍ୟୋତି
ବିରତର ସୁରତର ଏଣୀ ଏଣ ପ୍ରୀତି ଯେ ।
ବଶ ରତ୍ନନିଧି ଗୁଞ୍ଜା ସଂଗ ଅସନରେ

ବସ ଯତ୍ନ ବିଧି କୁଞ୍ଜ ଭୃଙ୍ଗ ପ୍ରସନ୍ନରେ ଯେ
ବାଦୀ ବାତ ବେଣୁ ଥାଇ ଥାଉ ପ୍ରେମଶୀଳା
ବେଦିବତ ମଣୁଥାଇ ପାଇ ରାମ ଶୀଳା ଯେ ।
(ବୈଦେହୀଶ ବିଳାସ- ୧୯ଶ ଛନ୍ଦ)

**ଅନ୍ତର୍ଲିପି :-** ଏଠାରେ ପ୍ରତ୍ୟେକ ପାଦରେ ଥିବା ପ୍ରଶ୍ନର ଉତ୍ତର ବା ସମାଧାନ ରୂପେ ଯେଉଁ ପଦଗୁଡ଼ିକ ବାହାରେ, ସେହି ପଦମାନଙ୍କର ଆଦ୍ୟ ଅକ୍ଷରକୁ ମିଶାଇ ପଢ଼ିଲେ ଯେଉଁ ବାକ୍ୟ ଗଠିତ ହୁଏ, ତାହାକୁ ଅନ୍ତର୍ଲିପି କୁହାଯାଏ ।

(କ) ବ୍ୟଥା କରିବନି ପାଦ ପ୍ରକାଶି ବସିଲେ
ବସାଇ ଜାନୁରେ ଅନ୍ତର୍ଲିପିଏ ଭାଷିଲେ ଯେ ।

ବିହାର ସ୍ଥାନ କେ ମୀନ ମାନଙ୍କ ଅଟଇ (ବନ)
ବାୟସରେ କେହୁ ପ୍ରତିପାଳିତ ହୁଅଇ ଯେ । (ପିକ)

ବିଭାବରୀ ପ୍ରକାଶେ କି କରେ ପକ୍ଷୀ ଆଳି (ରୁତ)
ବିରୁପାକ୍ଷ ନେତ୍ରାନଳେ କେହୁ ଗଲା ଜଳି ଯେ । (ମାର)

ବିଷ୍ଣୁକୋଳେ ସର୍ବକାଳେ କେହୁ ମନୋହର (ରମା)
ବିଶ୍ୱରେ କରୁଛି କେହୁ ପର ଉପକାର ଯେ । (ତରୁ)

ବାନରଙ୍କର ପ୍ରସିଦ୍ଧ ନାମ କେ ଜଗତେ (କପି)
ବିଘରେ ଗ୍ରହଗଣନା ସଂଖ୍ୟା ପୁନଃ କେତେ ଯେ । (ନବ)

ବୟସୀ ସ୍ୱୟମ୍ବରେ କନ୍ୟାକୁ କିସ କହି (ବର)
ବୋଲାଇ ଜୀବ ମଧ୍ୟରେ ସାରସତ୍ୱ କେହି ଯେ । (ନର)

ବୋଲନ୍ତି ଯବନେ ଇଷ୍ଟଦେବରେ କି ଭାଷ (ପିର)
ବସୁଧାପତି ପ୍ରଜାଙ୍କଠାରୁ ଘେନେ କିସ ଯେ । (କର)

ବାମନ ମୂର୍ତ୍ତି ନନ୍ଦନ ବୋଲାନ୍ତି କାହାର (ଶର)
ବାଞ୍ଛା ସଂସାରୁ କି ହୋଏ ଗୁରୁ ଶିଷ୍ୟଠାର ଯେ । (ତର)

ବିଧିରେ ଯୁଦ୍ଧରେ କେଉଁ ବଚନ ଚହଳ (ମାର)
ବସନ୍ତ ହୋଇଲେ କିସ କରଇ କୋକିଳ ଯେ । (ରବ)

ବିପ୍ରଲବଧା ପ୍ରଭାତେ କି କରେ ଉପକାନ୍ତେ (ମାନ)
ବ୍ରହ୍ମାଣ୍ଡେ ଜୀବନ ମୁକ୍ତ ଅଟଇ କେ ସତେ ଯେ । (ତପୀ)

ବେଦେକେ ଆଉ ଅଥର୍ବ ଯଜୁଃ ସାମ ତେଜି (ଋକ୍)
ବସନ୍ତେ କେ କେ ବିଯୋଗୀ ଶତ୍ରୁ କହ ହେଜି ଯେ ।

ବନପିକ ରୁତ ମାର ବୋଲେ ବଇଦେହୀ
ବିଶେଷେ ତୋଷ ଚୁମ୍ବନ ଆଲିଙ୍ଗନ ବିହି ଯେ ।' (ବୈ.ବି/୧୯/୨୦-୨୫)

(ଖ) ଅବନୀଶିରୀ ସୁନ୍ଦରୀ । ଇଶ୍ୱରୀ ନବ କିଶୋରୀ
ଲୀଳା ବିଳାସୀ ଭୃତ୍ୟଚିତ୍ତ ଉଲ୍ଲାସୀ ନାଗରୀ ରସସାଗରୀ ।
ଆନନ୍ଦଦାୟିନୀ କାମେ । ଜ୍ଞାନ ହାରିଣୀ ତା ବାମେ
କୁଳସୁନ୍ଦର ବଦନାକୁ ଚଉଦ ବ୍ରହ୍ମାଣ୍ଡରେ ନାହିଁ ସମେ ।
ତୋଷ ରାଜହଂସ ଚିତ୍ତ । ରହିଥିଲେ ଯହିଁ ସତ ।
କାଣୁ କାଣୁ ମଣି ମାନସରୋବରେ ବରଷାରେ ଉପଗତ ।
ହାଟକ ଝଟକ ଦେହା । ଇନ୍ଦୁହାସୀ ଗୁରୁସ୍ନେହା
ଛାଡ଼ିବ ଗୁମାନ ମାନସୁଁ ମଦନ ତୁ ହୋଇଲା କ୍ଷଣି ସାହା ।
ତାରକା ଶୋଭୀ ବାଳାକୁ । ହାର କରିବି ଗଳାକୁ
କରିଛି ମନେ ଗୁଣବନ୍ତ ବାଳିକା ରତନ ରସ କଳାକୁ ।
ରଘୁନାଥଙ୍କୁ ଜଣାଇ । ଏତେ ପଢ଼ିଦେଲା ଯହିଁ
ଅନ୍ତର ଲିପିରେ କି ମନ୍ତର ଏଥି ରସିକ ଅଛି ଲିହି । (ଲା.ବ/୨୫/୧୬-୨୧)

ଉପର୍ଯ୍ୟୁକ୍ତ ପାଦ ଗୁଡ଼ିକର ପ୍ରଥମ ଅକ୍ଷରମାନଙ୍କୁ ମିଶାଇ କରି ପଢ଼ିଲେ ହେବ-

**"ଅଇଲି ଆଜ୍ଞାକୁ ତୋର । ଯାହା ଇଛା ତାହା କର ।"**

(ଗ) ମନ୍ତ୍ରୀଜା ପୁଚ୍ଛିଲା ଢେମାକୁ ଚରିବର୍ଣ୍ଣେ ଏସନ
ଏକାକ୍ଷରେ ଖ୍ୟାତ ଧରଣୀ କର ଭୂଷା ତ୍ରିବର୍ଣ୍ଣ ।
ବୟସ ନାମ ଖ୍ୟାତ ମୁନି ଯାହା କରେ ସେ ହେବ
ପ୍ରାକର୍ମ ଦ୍ୱିବର୍ଣ୍ଣେ ବିଲୋମେ ରାମ କୁମର ଥିବ
ବ୍ୟସ୍ତେ ବସନ୍ତାଦି ଫୁଲେକ ପୁଣି ତଟର ନାମ
ସମସ୍ତ ପଢ଼ିଲେ ହୋଇବ ଜଳେ ଥିଲା କୁସୁମ । (ଲାବଣ୍ୟବତୀ-୬/୨୫-୨୭)

**ଏହାର ଉତ୍ତର ହେବ - "କୁବଳୟ"**

**ବହିର୍ଲିପି-** ପ୍ରତ୍ୟେକ ପାଦରେ ରହିଥିବା ପ୍ରଶ୍ନର ଉତ୍ତର ସମାଧାନ ପାଇଁ ଯେଉଁ ପଦମାନ ବାହାରେ ସେହି ପଦମାନଙ୍କର ଆଦ୍ୟ, ମଧ୍ୟ ଓ ପ୍ରାନ୍ତ ଅକ୍ଷରମାନଙ୍କୁ ଧାଡ଼ିକରି ପଢ଼ିଲେ ଯେଉଁ ବାକ୍ୟ ପ୍ରକାଶ ପାଏ ତାହାକୁ ବହିର୍ଲିପି କୁହାଯାଏ ।

ବହିର୍ଲିପି କହି ବେନି ବେନି ବର୍ଣ୍ଣ ଲେଖି
ବାମ ନାଶି ଦକ୍ଷିଣ ବର୍ଣ୍ଣକୁ ଭଜସଖି ଗୋ ।

ବନ୍ଦ୍ୟକେ ଜଗତେ (ଶିବ) କେହୁ ତିଳକର ସ୍ଥାନ (ଭାଲ)

ବସି ରାଜା କି କରି (ସଭା) ବେଶ୍ୟାର କି ରଞ୍ଜନ ଯେ । (ରୂପ)

ବ୍ୟୋମକେଶ ମୋହିନୀ କେ (ଚଣ୍ଡୀ) ଶିଶୁ କେ ପାଳଇ (ମାଆ)

ବଢ଼ ଖେଳରେ କେ ଘେନ (ପଶା) ଘନ କି ମୁଞ୍ଚଇ ଯେ । (ନୀର)

ବହେ ଉତ୍ତୁଙ୍ଗ ଶୃଙ୍ଗ କେ (ଗିରି) ବିପ୍ର କି ହୁଅନ୍ତି ଯେ (ବ୍ରତ)

ବିଷ୍ଣୁ ଆୟୁଧ କେ ଚକ୍ର ବିନା (ଗଦା) କେ ଅଗମ୍ୟ (ବନ)

ବ୍ରହ୍ମା କି ପାଳନ୍ତି (ଲୋକ) କେହୁ ରଚନ୍ତି ସଂଗ୍ରାମ ଯେ (ବୀର)

ବୁଝି ମୈଥିଳୀ ଭାଷିତ ଗୁରୁ କରି ନାହିଁ
ବୋଲେ ରାଘବ ଅଗୁରୁ ବିଦ୍ୟା ସିନା ସେହି ଯେ ।' (ବୈ.ବି/୧୯/୨୬-୨୮)

ଅର୍ଥାତ୍ ରାମଚନ୍ଦ୍ର ବହିର୍ଲିପିରେ ସୀତାଙ୍କୁ କହୁଛନ୍ତି-

**'ବଲ୍ଲଭା ପଣ୍ଡିତା ସାର, ବିପରୀତ ଦାନକର' ।**

(ଶବ୍ଦମାନଙ୍କର ଦକ୍ଷିଣ ପଟର ଅକ୍ଷର ଗୁଡ଼ିକୁ ଏକାଠି ମିଶାଇବାରୁ ଏହି ଅର୍ଥ ପ୍ରକାଶିତ ହେଲା) ।

**ସର୍ବତୋଭଦ୍ର:** ଏହାର ନିୟମ ହେଉଛି ଶେଷରୁ ଆଦ୍ୟକୁ ଏବଂ ଆଦ୍ୟରୁ ଶେଷକୁ ପଢ଼ିଲେ ପଦ ସମାନ ହୁଏ । ପ୍ରତି ପାଦର ଅକ୍ଷର ଗୁଡ଼ିକୁ ଉପରୁ ତଳକୁ ଏବଂ ତଳୁ ଉପରକୁ ପଢ଼ିଲେ ଦ୍ୱିତୀୟ ପାଦର ବର୍ଣ୍ଣ ଅନୁରୂପ ତୃତୀୟ ଓ ଚତୁର୍ଥ ପାଦର ବର୍ଣ୍ଣମାନଙ୍କର ପାଠରେ ସର୍ବତୋଭଦ୍ର ହୋଇଥାଏ ।

ହ ର ସ ର ରସ ରହ
ରତ ରସ ସର ତ ର
ଶର ଧର ରଧ ରସ
ର ସ ରସ ସ ର ସର ।

ଠଠଠ

# ଚତୁର୍ଥ ପରିଚ୍ଛେଦ

## ଭଞ୍ଜ ସାହିତ୍ୟରେ ଅର୍ଥାଳଙ୍କାର :

ଅର୍ଥାଳଙ୍କାର କାବ୍ୟର ଚାରୁତା ସମ୍ପାଦନରେ ବେଶ୍ ସହାୟକ । କାବ୍ୟାମୋଦୀ ବିଜ୍ଞଜନଙ୍କୁ ଅର୍ଥାଳଙ୍କାର ଅପୂର୍ବ କାବ୍ୟିକ ଆନନ୍ଦ ପ୍ରଦାନ କରିଥାଏ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଅର୍ଥାଳଙ୍କାର ପ୍ରୟୋଗରେ ଅଭୁତପୂର୍ବ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି । କବି ଉପେନ୍ଦ୍ର ତାଙ୍କ କାବ୍ୟକୃତିରେ ଯେଉଁ ଅର୍ଥାଳଙ୍କାରଗୁଡ଼ିକୁ ବିନ୍ୟାସ କରିଛନ୍ତି, ତନ୍ମଧ୍ୟରେ ରହିଛି- ଉପମା, ରୂପକ, ବ୍ୟତିରେକ, ବିଭାବନା, ଭ୍ରାନ୍ତି, ସନ୍ଦେହ, ଦୃଷ୍ଟାନ୍ତ, ସ୍ମରଣ, ସମାଧି, ନିରୁକ୍ତି, କାବ୍ୟଲିଙ୍ଗ, ପରିକର, ଉଲ୍ଲେଖ, ପ୍ରତୀପ, ଲଳିତ, ଅନୁଜ୍ଞା, ଉଦାତ୍ତ, ଦୀପକ, ମୀଳିତ, ଉଲ୍ଲାସ, ସାର, ପରିଣାମ, ଅନ୍ୟୋନ୍ୟ, ଯଥାସଂଖ୍ୟ, ଅପ୍ରସ୍ତୁତ ପ୍ରଶଂସା, ବିଷମ, ସମ, ଅତିଶୟୋକ୍ତି, ଅନନ୍ୱୟ, ଦୀପକ, ପ୍ରକର୍ଷଣ, ତଦ୍‌ଗୁଣ, ଅତଦ୍‌ଗୁଣ, ଲୋକୋକ୍ତି, ଭାବିକ, ଅନୁଗୁଣ, ଭାବବଶଳତା, ଅବଜ୍ଞା, ଅନୁଜ୍ଞା, ଐତିହ୍ୟ, ସମ୍ଭବ, ଅଧିକ, ଛଳ, ବିରୋଧାଭାସ, ପର୍ଯ୍ୟାୟ, ପ୍ରେୟସ୍, କାବ୍ୟାସ୍ତୁତି, ନିଦର୍ଶନ, ଭାବସନ୍ଧି, ହେତୁ, ବ୍ୟାଘାତ, ପିହିତ, ଏକାବଳୀ, ଉତ୍ତର, ଗୂଢ଼ୋକ୍ତି, ସହୋକ୍ତି, ସୂକ୍ଷ୍ମ, ସମୁଚ୍ଚୟ, ଉଦାହରଣ, କାରଣମାଳା, ରତ୍ନାବଳୀ, ଅସମ, ସମାସୋକ୍ତି, ପ୍ରୌଢ଼ୋକ୍ତି, ଅର୍ଥାପତି, ଉନ୍ମୀଳିତ, ଅପହ୍ନୁତି, ତୁଲ୍ୟଯୋଗିତା, ଅସଙ୍ଗତି, ବିଶେଷକ, ବିପ୍‌ସା, ଶବ୍ଦପାଣ୍ଡିତ୍ୟ, ରସବତ୍, ଉର୍ଜସ୍ୱୀ, ଆଶୀଃ, ଆକ୍ଷେପ, ପ୍ରସ୍ତୁତାଙ୍କୁର, ଅର୍ଥାନ୍ତରନ୍ୟାସ, ଉତ୍‌ପ୍ରେକ୍ଷା, ପରିବୃତ୍ତ ବିକଳ୍ପ, ଶ୍ଳିଷ୍ଟ, ରସାଭାସ, ପ୍ରଶ୍ନୋତ୍ତର, ସ୍ମୃତିମାନ, ସିଂହାବଲୋକନ, ବ୍ୟାଘ୍ରଗତି, ଗୋମୂତ୍ରଛନ୍ଦ, ଅନ୍ତର୍ଲିପି, ବହିର୍ଲିପି, ଶୃଙ୍ଖଳା, ସ୍ଫୁଟ, ଆଶୟ ଇତ୍ୟାଦି । ଏଠାରେ ପ୍ରସଙ୍ଗକ୍ରମେ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କ ଉକ୍ତିଟି ସ୍ମରଣ କରାଯାଇପାରେ । ସେ ଲେଖିଛନ୍ତି- ''ଅର୍ଥାଳଙ୍କାରର ଶତାଧିକ ବିଭାଗ । ଉପେନ୍ଦ୍ରଙ୍କ ରଚନାରୁ ପ୍ରତି ଅଳଙ୍କାରର ଅନେକ ଦୃଷ୍ଟାନ୍ତ ଖୋଜି ବାହାର କରାଯାଇପାରିବ । କିନ୍ତୁ କେତେଗୁଡ଼ିଏ ଅଳଙ୍କାରର ବହୁଳ ପ୍ରୟୋଗ ଦେଖି ଅନୁମାନ କରାଯାଇପାରେ ଯେ

ସେହି ସେହି ପ୍ରୟୋଗ ପ୍ରତି କବିଙ୍କର ଏକ ସ୍ୱାଭାବିକ ପ୍ରବଣତା ଥିଲା । ରୂପ ତଥା ଅନ୍ୟାନ୍ୟ ବର୍ଣ୍ଣନାରେ ସାଙ୍ଗ ରୂପକ ଅଥବା ପରଂପରିତ ରୂପକ, ବ୍ୟତିରେକ, ଅପହ୍ନୁତି, ପ୍ରତୀପ ଏବଂ ଅତିଶୟୋକ୍ତି, ସମାସୋକ୍ତି, ମାଳୋପମା, ମାଳୋତ୍ପ୍ରେକ୍ଷା, କାବ୍ୟଲିଙ୍ଗ, ଅପ୍ରସ୍ତୁତ ପ୍ରଶଂସା, ଏବଂ ଅର୍ଥାନ୍ତରନ୍ୟାସ ଅଳଙ୍କାର ଗୁଡ଼ିକରେ ତାଙ୍କ କାବ୍ୟରାଜି ବହୁଳଭାବରେ ବିଭୂଷିତ ହୋଇଛି । କବିଚିତ୍ତର ଏହି ପ୍ରବଣତାର ବିଶ୍ଲେଷଣ କଲେ ତାଙ୍କ କଳ୍ପନା ବିଳାସର ବୈଶିଷ୍ଟ୍ୟ ଅବଶ୍ୟ ହୃଦୟଙ୍ଗମ କରିହେବ ।''

**ଭଂଜ ସାହିତ୍ୟରେ ଅର୍ଥାଳଙ୍କାର :**

**ବ୍ୟତିରେକ-**

''ଆଧିକ୍ୟ ମୁପମେୟସ୍ୟୋପମାନାନ୍ନ୍ୟୂନତାଥବା ବ୍ୟତିରେକଃ'' ।

(ସାହିତ୍ୟ ଦର୍ପଣ-୯/୫୨)

ଯେଉଁ ରଚନାରେ ଉପମାନଠାରୁ ଉପମେୟର ଆଧିକ୍ୟ ପ୍ରତିପାଦିତ ହୁଏ, ସେଠାରେ ବ୍ୟତିରେକ ଅଳଂକାର ହୁଏ ।

ଦୃଷ୍ଟାନ୍ତ -

(କ) ବିହୁଁ ସମୁଦ୍ର ମନ୍ଥନୁ ଚନ୍ଦ୍ର ଜନମ ଯେଉଁକାଳେ
ବିହୀନ କ୍ଷୀଣ କଳଙ୍କ ଜାଣ ନିର୍ମଳ ହୋଇଥିଲେ ।
ବଦନେ ଜାନକୀର ସମାନ ମନ ଜାଣିଟି ବିହି
ବିମ୍ବ ବେଷ୍ଟନ ନୋହିଲା ବର୍ଣ୍ଣ ଭାବେଟି କାଟିଦେଇ । (ବୈ.ବି)

ଏଠାରେ ଉପମାନ ଚନ୍ଦ୍ରଠାରୁ ଉପମେୟ ସୀତାଙ୍କ ମୁଖର ଆଧିକ୍ୟ ପ୍ରତିପାଦିତ ହେବାରୁ ବ୍ୟତିରେକ ଅଳଙ୍କାର ହେଲା ।

(ଖ) କମ୍ବୁକଣ୍ଠ ଦେଖି ଅତି ଆର୍ତ୍ତରୁ
ସମନୋହେ ବୋଲି ଡାକେ ପ୍ରାତରୁ ।
ନେତ୍ର ସଙ୍ଗେ ଲକ୍ଷିବେ କି ସୁମରି
ମୀନ ଜଳହୀନରେ ଯାଏ ମରି
ହୋଇ ହାସରେ କୁସୁମ ବିଜିତ
ମକରନ୍ଦ ଛଳେ ଅଶ୍ରୁ ତେଜିତ
ରମ୍ଭା ଉପମା ପଦ ପ୍ରଦେଶକେ
ଆଉ କେହୁ ସମ ହେବ ଅଂଶକେ । (ଲବଣ୍ୟବତୀ-୩/୪-୫)

ଏଠାରେ ଲାବଣ୍ୟବତୀର କଣ୍ଠକୁ ଦେଖି କମ୍ବୁ ଅର୍ଥାତ୍ ଶଙ୍ଖ ସମାନ ହୋଇ ନପାରି ପ୍ରାତଃକାଳରେ ସ୍ୱର ସୃଷ୍ଟି କରିଥାଏ । ସୁତରାଂ ଲାବଣ୍ୟବତୀର କଣ୍ଠର ଆଧିକ୍ୟ ପ୍ରତିପାଦିତ ହେବାରୁ ଏଠାରେ ବ୍ୟତିରେକ ଅଳଙ୍କାର ହେଲା ।

ଏଠାରେ ଉପମାନ 'ଚନ୍ଦ୍ର' ଠାରୁ ଉପମେୟ 'ସୀତା'ଙ୍କ ମୁଖର ଆଧିକ୍ୟ ପ୍ରତିପାଦିତ ହୋଇଥିବାରୁ ବ୍ୟତିରେକ ଅଳଂକାର ହେଲା ।

(ଗ) ନିର୍ମାଣିବା କାଳେ ରସ ନିଧିକି
କେଡ଼େ ଶ୍ରମ ହୋଇଥିବ ବିଧିକି
ମୁଖ ଅକଳଙ୍କ ଚନ୍ଦ୍ରୁଁ ଅଧିକ
କରେ ସାରସ ଆଦରଶ ଧିକ । (ରସିକ ହାରାବଳୀ)

ଏଠାରେ ଉପମେୟ-ମୁଖ, ଉପମାନ-ଚନ୍ଦ୍ର, ପଦ୍ମ, ଦର୍ପଣ

(ଘ) ଚନ୍ଦ୍ରକୁ ନିନ୍ଦା କରୁଛି ମୁଖହାସ କାନ୍ତି
ସାରଙ୍ଗକୁ ନିନ୍ଦୁଛି ନୟନଭ୍ରୂରୁଗତି ।
ନାଶାମଧ୍ୟଓଷ୍ଠ ନିନ୍ଦେ ତରୁଣ ହରିକି
ଅପବାଦ ଅପସରି ଲକ୍ଷ୍ୟ ସେ ନାରୀକି । (ଲାବଣ୍ୟବତୀ)

**ଭ୍ରାନ୍ତିମାନ ଅଳଙ୍କାର-**

"ସାମ୍ୟାଦତସ୍ମିଂସ୍ତଦ୍‌ବୁଦ୍ଧି ଭ୍ରାନ୍ତିମାନ୍ ପ୍ରତିଭାତ୍‌ଥିତଃ ।"(ସାହିତ୍ୟ ଦର୍ପଣ-୧୦/୩୬)

ସାଦୃଶ୍ୟବଶତଃ ଏକ ପଦାର୍ଥରେ ଅନ୍ୟପଦାର୍ଥର ଭ୍ରମଜାତ ହେଲେ ତାହାକୁ ଭ୍ରାନ୍ତି/ଭ୍ରାନ୍ତିମାନ ଅଳଙ୍କାର କୁହାଯାଏ ।

ଉଦାହରଣ-

(କ) ଅପୂର୍ବ ଅମ୍ବୁଜ ମୁଖକୁ ଯହିଁ ଭୃଙ୍ଗଚକୋର
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଯହିଁ କାତର ।
କେଶ ଦରଶନେ ରଥାଙ୍ଗ ଧାଇଁ ଆହାର ବଶେ
ବିଚ୍ଛେଦ ଭୟରୁ ପଳାଇଗଲେ ନ ରହି ପାଶେ । (ଲା.ବ)

(ଖ) "ବକ୍ଷସ୍ଥଳେ କେଉଁବାଳା କିଙ୍କିଣୀକି ଲମ୍ବାଇଲା
ଯପସରିକି ଖଞ୍ଜିଲା ମଧ୍ୟ ଦେଶରେ
ବେଶକାରୀ କେ କାହାର ସିନ୍ଦୂର ଦେଲା ପୟର
ଚିତା ଲଲାଟରେ ଲେଖେ ଲାକ୍ଷାରସରେ
ବିବନ୍ଧ କରି କରି ଚିକୁର
ବେଗେ କଙ୍କତିକାରେ ଶାମଳେ ଯମର । (ବୈ.ବି.-୯/୧୦)

**ସାମାନ୍ୟ ଅଳଙ୍କାର-** "ସାମାନ୍ୟଂ ପ୍ରକୃତସ୍ୟାନ୍ୟତାଦାତ୍ମ୍ୟଂ ସଦୃଶୈର୍ଗୁଣୈଃ ।
(ସାହିତ୍ୟ ଦର୍ପଣ-୧୦/୮୯)

ସାଦୃଶ୍ୟବଶତଃ ଦୁଇଗୋଟି ସମାନବସ୍ତୁର ବିଶେଷ ଅଲକ୍ଷ୍ୟ ହେଲେ ସାମାନ୍ୟାଳଙ୍କାର ହୋଇଥାଏ । ଯଥା-

ନାରୀ ନଦୀ ବାରି ନୋହିଲେ ତହିଁ ଘଡ଼ିଏ ଯାଏଁ
ହାସ କୁମୁଦ ନେତ୍ରମୀନ ମୁଖ କମଳପ୍ରାୟେ ।
ଜଘନ ପୁଲିନ ଉରଜ ଚକ୍ରବାକ ମିଥୁନ
ରୋମାବଳୀ ଅଳି ଆବଳୀ ଗତି ହଂସ ସମାନ । (ଲା.ବ)

**ବିଶେଷ ଅଳଙ୍କାର-**

''ବିନା ପ୍ରସିଦ୍ଧମାଧାରମାଧେୟସ୍ୟ ବ୍ୟବସ୍ଥିତିଃ
ଏକାତ୍ମା ଯୁଗପଦ୍‌ବୃତ୍ତିରେକସ୍ୟାନେକଗୋଚରା
ଅନ୍ୟତ୍‌ପ୍ରକୁର୍ବତଃ କାର୍ଯ୍ୟମଶକ୍ୟସ୍ୟାନ୍ୟବସ୍ତୁନଃ
ତଥୈବ କରଣଂ ଚେତି ବିଶେଷ ସ୍ତ୍ରିବିଧ ସ୍ମୃତଃ ।''

(କାବ୍ୟପ୍ରକାଶ-୧୦/୧୩୫-୧୩୬)

ଯେଉଁଠାରେ ସାଦୃଶ୍ୟବଶତଃ ଦୁଇଟି ବସ୍ତୁ ମିଶି ଯାଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ପାରସ୍ପରିକ ଭେଦର ସୂଚନା ମିଳେ, ସେଠାରେ ବିଶେଷ ଅଳଙ୍କାର ହୁଏ ।

ଉଦାହରଣ-

ଛଦ୍ମ ନୁହଇ ଏ ପୁଣ । ସଦ୍ମରତନେ ନିର୍ମାଣ ।।
ପଦ୍ମ ପ୍ରକାଶରୁ ଜାଣି । ଦିବା ରଜନୀ ଯେ ।। (କୋ.ବ୍ର.ସୁ)

ଏଠାରେ ବର୍ଣ୍ଣିତ ଯେ ପୁଷ୍ପପୁରର ଅଟ୍ଟାଳିକାଗୁଡ଼ିକ ନାନା ରତ୍ନରେ ନିର୍ମାଣ ହେତୁ ଅତି ଉଜ୍ଜ୍ୱଳ ଦେଖାଯାଉଛି । ସେହି ଆଲୋକରେ ଦିନରାତି ବାରି ହେଉନି । ଦିବା ଓ ରଜନୀର ଭେଦ କେବଳ ପଦ୍ମ ଫୁଟିଲାରୁ ଜଣାଯାଉଛି ।

**ସନ୍ଦେହ ଅଳଙ୍କାର-**

''ସନ୍ଦେହଃ ପ୍ରକୃତେଽନ୍ୟସ୍ୟ ସଂଶୟଃ ପ୍ରତିଭୋତ୍‌ଥିତଃ ।''

(ସାହିତ୍ୟ ଦର୍ପଣ-୧୦/୩୫)

ଯେଉଁଠାରେ ଉପମେୟ ଓ ଉପମାନର ପାର୍ଥକ୍ୟ ନିରୂପଣରେ ଗାଢ଼ ବିଚାର ଆବଶ୍ୟକ ହୁଏ ସେଠାରେ ସନ୍ଦେହ ଅଳଙ୍କାର ହୁଏ । ଯଥା-

ଭାଳୁଛି ନୁହଇ ମାର          ଅଛି ଫୁଲ ଧନୁଶର
ନୁହେଁ ସୁଧାକର ତହିଁ କଳଙ୍କ ଅଛି
ଆଉ ଦେବତାମାନଙ୍କୁ          କିମ୍ପା ଆଣିବା ମନକୁ
ମୋହରି ସୁକୃତ ଏ ପୁରୁଷ ହୋଇଛି

ମୋର ପୁଣି ସୁକୃତ କେତେ
ଏମନ୍ତ ଶୋଭା ଜାତ ହେବାରୁ ଜଗତେ । (ଲା.ବ)

**ଅର୍ଥାନ୍ତରନ୍ୟାସ-**

''ସାମାନ୍ୟଂ ବା ବିଶେଷେଣ ବିଶେଷସ୍ତେନ ବା ଯଦି
କାର୍ଯ୍ୟଂ ଚ କାରଣେନେଦଂ କାର୍ଯ୍ୟେଣ ଚ ସମର୍ଥ୍ୟତେ ।''

(ସାହିତ୍ୟ ଦର୍ପଣ-୧୦/୬୧)

ଯେଉଁଠାରେ ବିଶେଷ ଦ୍ୱାରା ସାମାନ୍ୟର ଓ ସାମାନ୍ୟ ଦ୍ୱାରା ବିଶେଷର ସମର୍ଥନ ହୁଏ, ସେଠାରେ ଅର୍ଥାନ୍ତରନ୍ୟାସ ଅଳଙ୍କାର ହୁଏ । ଏହା ଚାରିପ୍ରକାର ଅଟେ । ଯଥା-

(କ) ସାମାନ୍ୟ ଦ୍ୱାରା ବିଶେଷର ସମର୍ଥନ

(ଖ) ବିଶେଷ ଦ୍ୱାରା ସାମାନ୍ୟର ସମର୍ଥନ

(ଗ) କାର୍ଯ୍ୟଦ୍ୱାରା କାରଣର ସମର୍ଥନ

(ଘ) କାରଣଦ୍ୱାରା କାର୍ଯ୍ୟର ସମର୍ଥନ

ଉଦାହରଣ-

ଦୂରେ ଥିଲେ ପାଶେଥିଲା ପରିଥିବୁ ଘେନି
କେତେଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର । (ପ୍ରେମସୁଧାନିଧି)

ଏଠାରେ ନାୟକ ତା'ର ପତ୍ରରେ ନାୟିକାକୁ ସମ୍ବୋଧନ କରି ଉଭୟଙ୍କ ପ୍ରୀତିର ଦୃଢତା ପ୍ରତିପାଦନ କରୁଛି । ଚନ୍ଦ୍ର ଓ କୁମୁଦିନୀର ପ୍ରୀତି ଅଭେଦ । ଏହି ଉଦାହରଣ ମାଧ୍ୟମରେ ଦୂରରେ ଥିବା ପ୍ରିୟତମ ଓ ପ୍ରିୟତମାର ପ୍ରୀତିର ଦୃଢତା ପ୍ରତିପାଦିତ ।

**ଅନ୍ୟୋନ୍ୟ ଅଳଙ୍କାର-**

''ଅନ୍ୟୋନ୍ୟମୁଭୟୋରେକ କ୍ରିୟାୟାଃ କାରଣଂ ମିଥଃ ।''

(ସାହିତ୍ୟ ଦର୍ପଣ-୧୦/୭୨)

ଯଦି ପରସ୍ପର କାର୍ଯ୍ୟରେ ପରସ୍ପରର ଉପକାର ସାଧିତ ହୁଏ, ତେବେ ସେଠାରେ ଅନ୍ୟୋନ୍ୟ ଅଳଙ୍କାର ହୁଏ । ଯଥା-

କ. ତଥାପି ଭୂଷଣ ନୁହେଁ ଦୂଷଣେ । ତୁହି ଚନ୍ଦ୍ରମା ସେ ରଜନୀ ଜାଣ
ପରସ୍ପରେ କରେ ଶୋଭା ଅଧିକା । ସୁକୁମାରୀ ବୋଲି ନ କର ଶଙ୍କା ।
ଏଥୁ ହେବ ଭାରା । ପୟୋଧର ତୋ ଧରାଧର ପରା । (କୋ.ବ୍ର.ସୁ)

ଏଠାରେ ବର୍ଣ୍ଣନା କରାଯାଇଛି ଯେ ଅଳଙ୍କାର ଧାରଣ ଦ୍ୱାରା ନାୟିକାର ଶୋଭା ବଢ଼ିଛି ଓ ନାୟିକାର ଅଙ୍ଗରେ ଅଳଙ୍କାରର ସୌନ୍ଦର୍ଯ୍ୟ ବୃଦ୍ଧି ଘଟିଛି । ସେଥିପାଇଁ କବି ଚନ୍ଦ୍ରମା ରଜନୀର ଶବ୍ଦପ୍ରୟୋଗ କରିଛନ୍ତି । କାରଣ ଚନ୍ଦ୍ରଦ୍ୱାରା ରାତ୍ରି ଓ ରାତ୍ରିଦ୍ୱାରା ଚନ୍ଦ୍ରର ଉପକାର ଘଟିଛି । ଏଠାରେ ନାୟିକାକୁ ଚନ୍ଦ୍ରମା ଓ ଅଳଙ୍କାରକୁ ରଜନୀ ଅର୍ଥରେ ଗ୍ରହଣ କରାଯାଇଛି ।

ଖ. ଫୁଲ ଭ୍ରମର ବାଞ୍ଛଇ ଭ୍ରମର ଫୁଲ ଇଚ୍ଛଇ
ମଧୁ ଦେଇ ଫୁଲ ତୋଷ କରେ
ଅନୁସରଇ ଭ୍ରମର ତୋର ମୋର ଏ ପ୍ରକାର
ସ୍ନେହ ନ ତୁଟିବ ଜୀଇଁବାରେ ରେ
ଜୀବେଶ୍ୱରି । ନିଷ୍ଠାକରି ଜାଣେ ମୁଁ ଏ କଥା
ମାଜିଲା ମୁକୁର ପରି ନିର୍ମଳ ତୋ ହୃଦ ଗୋରି
ପ୍ରତିବିମ୍ବେ ମୋର ହୃଦ ବ୍ୟଥାରେ । (ଲା.ବ-୩୮/୧୪)

ଏଠାରେ ଭ୍ରମର ଓ ଫୁଲର ପରସ୍ପର କାର୍ଯ୍ୟରେ ପରସ୍ପରର ଉପକାରିତା ବର୍ଣ୍ଣିତ । ତେଣୁ ଅନ୍ୟୋନ୍ୟାଳଙ୍କାର ହୋଇଛି ।

**ଅର୍ଥାପତ୍ତି ଅଳଙ୍କାର-**

''ଦଣ୍ଡାପୂପିକୟାନ୍ୟାର୍ଥାଗମୋଽର୍ଥାପତ୍ତିରିଷ୍ୟତେ ।'' (ସାହିତ୍ୟ ଦର୍ପଣ-୧୦/୮୨)

ଯେଉଁଠାରେ ଗୋଟିଏ ବିଷୟର କଥନରେ ଅନ୍ୟଏକ ବିଷୟ ସହଜରେ ନିଷ୍ପନ୍ନ ହୁଏ ସେଠାରେ ଅର୍ଥାପତ୍ତି ଅଳଙ୍କାର ହୁଏ ।

ଉଦାହରଣ-

ଯେଉଁପୁରେ ପଢେ ଶୁକ-ବି-ଯାକ
ଶୁକ ବିରଚିତ ଚରିତ ଶ୍ଳୋକ
ସୁକବିମାନେ ତା' ଅର୍ଥ କରିବା
ବିଚିତ୍ର କରି କାହିଁକି ଘେନିବା । (କୋ.ବ୍ର.ସୁ)

ଏହିପଦରେ ଶୁକ ବିରଚିତ ଶ୍ଳୋକ କଥନ ଫଳରେ ସୁକବିମାନଙ୍କର ବିଷୟ ନିଷ୍ପନ୍ନ ହୋଇଥିବାରୁ ଅର୍ଥାପତ୍ତି ଅଳଂକାର ହୁଏ ।

**ପରିସଂଖ୍ୟା ଅଳଙ୍କାର :**

''ପ୍ରଶ୍ନାଦପ୍ରଶ୍ନତୋ ବାପି କଥିତାଦ୍‌ବସ୍ତୁନୋ ଭବେତ୍
ତାଦୃଗନ୍ୟ ବ୍ୟପୋହଶ୍ଚେଚ୍ଛବ୍ଦଃ ଆର୍ଥୋଽଥବା ତଦା ।''(ସାହିତ୍ୟ ଦର୍ପଣ)

ଯେଉଁଠାରେ ଗୋଟିଏ ବସ୍ତୁଦ୍ୱାରା ଅନ୍ୟ ଏକ ବସ୍ତୁର ନିଷେଧ ପ୍ରକାଶ ପାଇଥାଏ, ସେଠାରେ ପରିସଂଖ୍ୟା ଅଳଙ୍କାର ହୁଏ ।

ଯଥା- ବଜ୍ରଜାତି ବିନା ଗଜ ନ ଆଣନ୍ତି ବନୁଁ
ଅଶ୍ୱଶାଳେ ବନ୍ଧାନୋହେ ସିନ୍ଧୁ ଜାତି ବିନୁଁ ।
ମୂଷିକରେ ନେପାଳୀ ପାଳନା ସଆଦରେ
ଗନ୍ଧମାର୍ଜାର ପୋଷିତ ବିଡ଼ାଳ ପଦରେ ।
ମାଳିଆଳୀ ଦକ୍ଷିଣାବର୍ତ୍ତକ ବିନା କମ୍ବୁ
ନ ଘେନନ୍ତି ଦେବାକୁ ହର ଚରଣେ ଅମ୍ବୁ ।
ଏକମୁଖୀ ରୁଦ୍ରାକ୍ଷ ଗ୍ରହଣ ଯୋଗୀ କରେ
ବାଳକେ କିଣନ୍ତି ଦ୍ରାକ୍ଷା କେବଳ କୋଳିରେ । (ଲା.ବ)

**ଉଲ୍ଲେଖ ଅଳଙ୍କାର :**

''କ୍ୱଚିଦ୍‌ଭେଦାଦ୍ ଗ୍ରହୀତୃଣାଂ ବିଷୟାଣାଂ ତଥା କ୍ୱଚିତ୍
ଏକସ୍ୟାନେକଧୋଲ୍ଲେଖଃ ଯଃ ସ ଉଲ୍ଲେଖ ଉଚ୍ୟତେ ।''

(ସାହିତ୍ୟ ଦର୍ପଣ-୧୦/୩୭)

ଏକ ବସ୍ତୁ ଧର୍ମଭେଦରେ ଅନେକ ପ୍ରକାର ଉଲ୍ଲିଖିତ ହେଲେ ଉଲ୍ଲେଖ ଅଳଙ୍କାର ହୋଇଥାଏ । ଯଥା-

(କ) କର୍ତ୍ତାପରି ବ୍ୟାକରଣେ । ପାଣିନୀୟ ମନେ ଗୁଣେ
କରିବା ଏହା ସଙ୍ଗତି । ହେବ ବ୍ୟୁତ୍ପତ୍ତି ଯେ ।
ମୀମାଂସା ବେଦ ବେଦାନ୍ତେ । ଟୀକା ପୁସ୍ତକ ଏ ସତେ ।
ଜୈମିନି ବିଖନ ବ୍ୟାସ । ପ୍ରଶଂସି ତୋଷ ଯେ । (କୋ.ବ୍ର.ସୁ.୪/୩)

ଏହି ପଂକ୍ତିରେ ରାଜକୁମାରଙ୍କୁ ବ୍ୟାକରଣ ଶାସ୍ତ୍ର ପ୍ରଣେତା ପାଣିନୀ ବୋଲି ବର୍ଣ୍ଣନା କରାଯାଇଛି । ପୁନଶ୍ଚ ଜୈମିନି, ବ୍ରହ୍ମା ଓ ବ୍ୟାସଦେବ ପ୍ରଭୃତି ନିଜ ନିଜ ରଚିତ ଗ୍ରନ୍ଥର ଟୀକା ପୁସ୍ତକ ବୋଲି ଏହାକୁ ପ୍ରଶଂସା କରାଯାଇଛି । ରାଜକୁମାର ଏଠାରେ ଧର୍ମ ଭେଦରେ ବିଭିନ୍ନ ଭୂମିକାରେ ଉଲ୍ଲିଖିତ ହୋଇଥିବାରୁ ଏହା ଉଲ୍ଲେଖାଳଙ୍କାର ହେଲା ।

(ଖ) ବେଦ ବେଦାନ୍ତେ ବିଧାତା, ବ୍ୟାକରଣେ ହର
ସଙ୍ଗୀତରେ ନାରଦ, ଶୃଙ୍ଗାର ଶାସ୍ତ୍ରେ ମାର ।
ଅଶ୍ୱାରୋହେ ମିହିର ଭୈରବ ପରି ଗତି
କବିପଣେ ପଣ୍ଡିତ ଜ୍ୟୋତିଷେ ବୃହସ୍ପତି
ଧନୁର୍ଦ୍ଧରେ ଅର୍ଜ୍ଜୁନ, ଗଦାରେ ବୃକୋଦର

ଦାନୀରେ କର୍ଣ୍ଣ, ମାନୀରେ କୁରୁଦଣ୍ଡ ଧର
ବଳିଷ୍ଠରେ ବଳୀ, ଧାର୍ମିକରେ ଯୁଧିଷ୍ଠିର
ସୁନ୍ଦର ପଣରେ ତାକୁ ସେହି ପଟାନ୍ତର । (ଲା.ବ)

**ଉଲ୍ଲାସ ଅଳଙ୍କାର :**

"ଅନ୍ୟଦୀୟଗୁଣଦୋଷପ୍ରଯୁକ୍ତମନ୍ୟସ୍ୟ ଗୁଣଦୋଷୟୋରାଧାନମୁଲ୍ଲାସଃ ।"

(ରସ ରଙ୍ଗାଧର-ପୃ-୬୮୩)

ଯେଉଁଠାରେ ଜଣକର ଗୁଣ ବା ଦୋଷଦ୍ୱାରା ଅନ୍ୟଠାରେ ଗୁଣ ବା ଦୋଷର ପ୍ରାପ୍ତିହେବା ବର୍ଣ୍ଣିତ ହୁଏ ଉଲ୍ଲାସ ଅଳଙ୍କାର ହୁଏ ।

ଯଥା- ବାଟେ ସେ ବନରେ ପଡ଼ିଥିଲା ଦିବ୍ୟଶିଳା
ବିଶୋଢଁ ରାମ ଚରଣ ଲାଗି ଯେ ଅବଳା । (ବୈ.ବି.୭/୩)

ଏଠାରେ ରାମଙ୍କ ପାଦସ୍ପର୍ଶରେ ଶିଳାରୂପିଣୀ ଅହଲ୍ୟା ସ୍ୱରୂପ ପ୍ରାପ୍ତ ହେବା ବର୍ଣ୍ଣିତ । ତେଣୁ ଏଠାରେ ଜଣକର ଗୁଣଦ୍ୱାରା ଅନ୍ୟର ଗୁଣପ୍ରାପ୍ତି ଘଟିବାରୁ ଉଲ୍ଲାସ ଅଳଙ୍କାର ହୋଇଅଛି ।

**ବିଭାବନା ଅଳଙ୍କାର :**

"ବିଭାବନା ବିନା ହେତୁଂ କାର୍ଯ୍ୟୋତ୍ପତ୍ତିର୍ଯ୍ୟଦୁଚ୍ୟତେ ।"

(ସାହିତ୍ୟ ଦର୍ପଣ-୧୦/୬୫)

"ହେତୁଂ ବିନାପି କାର୍ଯ୍ୟଂ ଯତ୍ରୋକ୍ତଂ ସ୍ୟାଦ୍ ବିଭାବନା ସା ତୁ ।"

(ଅଳଙ୍କାର କୌସ୍ତୁଭ)

କାରଣ ନଥାଇ କାର୍ଯ୍ୟର ଉତ୍ପତ୍ତି ବର୍ଣ୍ଣିତ ହେଲେ ବିଭାବନା ହୁଏ । ବିବାହ ସମ୍ପର୍କରେ ରସିକ ହାରାବଳୀର ନାୟକ ଶ୍ରବଣକରି ଅତ୍ୟନ୍ତ ଉଲ୍ଲସିତ ହୋଇଛି । ନାନା ଭାବନା ତା' ମନକୁ ଆସିଛି ।

ଯେପରି-

ଚଞ୍ଚଳା ଖେଳା କରିବା ଖଦୀ ପୀତବାସ
ତୃଷିତ ଦ୍ୱିଜ ଚାତକ ଜଳପାନେ ତୋଷ ହେ । (କୋ.ବ୍ର.ସୁ)

**ସମ୍ଭାବନା ଅଳଙ୍କାର :**

"ଅନ୍ୟର ସାଧନ ଅର୍ଥେ ଯଦ୍ୟର୍ଥ କଳ୍ପନା
ଆଦୃତ ହୋଇଛି ଯହିଁ ତହିଁ ସମ୍ଭାବନା ।"

ଅର୍ଥାତ୍ ଯେଉଁଠାରେ ଏକ ବସ୍ତୁର ସିଦ୍ଧି ଉଦ୍ଦେଶ୍ୟ-'କଳ୍ପନା' ଅର୍ଥାତ୍ ଯଦି ଏହିପରି ହୁଏ, ତେବେ ସେହିପରି ହେବ, ଏପରି ତର୍କଥାଏ, ସେଠାରେ ସମ୍ଭାବନା ଅଳଙ୍କାର ହୁଏ । ଉଦାହରଣ-

''ଚିକୁର ଶୋଭୀ ମୁକୁର ପ୍ରତିବିମ୍ବେ ଆଲିଙ୍ଗନେ ଯେବେ ଆସିବ
ମୃଗତୃଷ୍ଣାଜଳ ତୃଷାକୁ ନାଶିବ ସ୍ୱପ୍ନ ତେବେ ସତ ଦିଶିବ
କହେ ସଚିବ, ସୁତା ସବୁ ବଢ଼ ଦଇବ
କାହା ମନେ ଥିଲା ଅଗାଧ ସମୁଦ୍ର ଚଳୁ ଭିତରେ ସମ୍ଭାଇବ ।''
(ଲାବଣ୍ୟବତୀ)

ଏହା ସମ୍ଭାବନା ଅଳଙ୍କାର । ସ୍ୱପ୍ନର ଅସତ୍ୟତା ସିଦ୍ଧି ଉଦ୍ଦେଶ୍ୟରେ ଯେବେ ମୁକୁର ପ୍ରତିବିମ୍ବେ ଆଲିଙ୍ଗନେ ଆସିବ, ତେବେ ମୃଗତୃଷ୍ଣା ଜଳତୃଷ୍ଣା ନାଶିବ । ଏଠାରେ ଏହି ଯଦ୍ୟର୍ଥର କଳ୍ପନା କରାଯାଇଛି ।

(ଖ) କର୍ପୂର ଭୂମିରେ କୁଙ୍କୁମାଳଦାଳ ରଚି ମଧୁପୟଃ ସେଚନ
ମନମଥ ମାଳୀ ସ୍ୱର୍ଣ୍ଣ ନବବଲ୍ଲୀ କରାଇବ ଯେବେ ଉତ୍ପନ୍ନ
ତେବେ ସେ, ସୁକୁମାର ତାକୁ ଜେମାର
ଅଣ୍ଣୁ ପ୍ରମାଣରେ ସମାନ ହୋଇଲେ ହୋଇବ ହୁଏ ଏ ବିଗ୍ଭର ।

ଏଠାରେ କବି ଯଦ୍ୟର୍ଥର କଳ୍ପନା କରି ଆହୁରି ବୈଚିତ୍ର୍ୟ ଦେଖାଇ ଅଛନ୍ତି 'ଅଣୁପ୍ରମାଣରେ ସମାନ ହୋଇଲେ ହୋଇବ' – ଏହି ଅଂଶଟି ମଧ୍ୟ ସମ୍ଭାବନାର ଅପେକ୍ଷା ରଖେ ।

**ଉନ୍ମୀଳିତ ଅଳଙ୍କାର :**

''ହେତୋଃ କୁତୋଽପି ବୈଶିଷ୍ଟ୍ୟାତ୍ ସ୍ଫୂର୍ତ୍ତିରୁନ୍ମୀଳିତଂ ମତମ୍ ।''
(ଚନ୍ଦ୍ରାଲୋକ-୫/୩୫)

ଦୁଇଟି ବସ୍ତୁ ଏକ ପରି ଜଣାଯାଉଥିଲେ, କୌଣସି କାରଣରୁ ପ୍ରଭେଦ ଧରାଯାଉଥିଲେ ଉନ୍ମୀଳିତ ଅଳଙ୍କାର ହୁଏ ।

ଉଦାହରଣ-

(କ) ''ଉଛିଦେଲେ ପୀତାମ୍ବରକୁ ଉରୁସନ୍ଧିକି ରୁନ୍ଧି
ପିନ୍ଧି ନିତମ୍ବିନୀ ନିବିଡ଼େ ନୀବୀ ବନ୍ଧକୁ ବାନ୍ଧି ।
ତୋରା ହୋଇଲା ଗୋରା ଦେହ ଆଲିଙ୍ଗନକୁ ପାଇ
ଧଡ଼ି ନ ଥିଲେ ଶାଢ଼ୀ ଥିଲା ପରି ଦିଶନ୍ତା ନାହିଁ ।''(ଲାବଣ୍ୟବତୀ)

(ଖ) ବିଷ୍ଣୁପଦୀ ବିଷ୍ଣୁପଦ ଇକାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚିତ
ବିଶାରଦ ସେ ସାମନ୍ତ ମତରେ ଦାସ ସେବିତ
ତାକୁ ନ ଶୁଣନ୍ତେ ରଘୁନାଥ କଥିତ ।
ବିଷଧର ପ୍ରାୟେକ ତୁହିଁ
ବଳେ ନେତ୍ରଢାଳି ଶୁଣ ଉଦାସ ନୋହି । (ବୈ.ବି)

ଏଠାରେ ବିଷ୍ଣୁପଦୀ(ଗଙ୍ଗା) ଏବଂ ବିଷ୍ଣୁପଦ (ଆକାଶ) ମଧ୍ୟରେ ଇକାର ଭେଦ ରହିଛି । ତେଣୁ ଏହା ଉନ୍ମୀଳିତ ଅଳଙ୍କାର ।

**ଦୀପକ ଅଳଙ୍କାର :**

"ଅପ୍ରସ୍ତୁତ ପ୍ରସ୍ତୁତୟୋର୍ଦୀପକଂ ତୁ ନିଗଦ୍ୟତେ
ଅଥକାରକମେକଂ ସ୍ୟାଦନେକାସୁ କ୍ରିୟାସୁ ଚେତ୍ ।"
(ସାହିତ୍ୟ ଦର୍ପଣ-୧୦/୪୨)

ଯେଉଁଠାରେ ପ୍ରସ୍ତୁତ ତଥା ଅପ୍ରସ୍ତୁତ ପଦାର୍ଥର କ୍ରିୟା ବା ଗୁଣର ସାମ୍ୟ ପ୍ରଦର୍ଶିତ ହୋଇଥାଏ, ସେଠାରେ ଦୀପକ ଅଳଙ୍କାର ହୁଏ । ଯଥା-

ଚେତି ଚତୁରୀ ରହିଁଲା ନିଶି ନାଶେ
ପାଶେ ନାହିଁ ଦିବ୍ୟ ତରୁଣ
ମାରି ହୃଦେ ହାତ ନାଥ ନାଥ ବୋଲି
ଅତି ଉଚ୍ଚେ କଲା କାରୁଣ୍ୟ ।
ଖୋଜେ ଅଧୀରେ, ଚେତନା ହତ ସେ ବିଧିରେ
ଶେଯ ଲେଉଟାଇ କବରୀ ଫିଟାଇ
କର ଭରି କୁଚ ସନ୍ଧିରେ । (ଲାବଣ୍ୟବତୀ)

ଏହି ଉଦାହରଣରେ 'ମାରି ହୃଦେ ହାତ', 'ଖୋଜେ ଅଧିରେ', 'ଶେଯ ଲେଉଟାଇ', 'କବରୀ ଫିଟାଇ', 'କରଭରି କୁଚ ସନ୍ଧିରେ' ପ୍ରଭୃତି କ୍ରିୟାଗୁଡ଼ିକର ଗୋଟିଏମାତ୍ର କାରକ ହେଉଛି ଚତୁରୀ ଲାବଣ୍ୟବତୀ । ତେଣୁ ଏଠାରେ ଦୀପକ ଅଳଙ୍କାର ହେଲା ।

**ଦୃଷ୍ଟାନ୍ତ-** "ଦୃଷ୍ଟାନ୍ତସ୍ତୁ ସଧର୍ମସ୍ୟ ବସ୍ତୁନଃ ପ୍ରତିବିମ୍ବନମ୍ ।"(ସାହିତ୍ୟ ଦର୍ପଣ-୧୦/୫୧)

ଯେଉଁଠାରେ ସାଧାରଣ ଧର୍ମବାଚକ ପଦଦ୍ୱୟ ଆପାତତଃ ଭିନ୍ନାର୍ଥବୋଧକ ହେଲେ ହେଁ ଯେଉଁ କ୍ଷେତ୍ରରେ ସାଧାରଣଧର୍ମର ବିମ୍ବ-ପ୍ରତିବିମ୍ବ ଭାବଦ୍ୱାରା ବାକ୍ୟ ଦୁଇଟିର ଉପମାନ ଓ ଉପମେୟ ଭାବ ପ୍ରକାଶିତ ହୁଏ, ସେଠାରେ ଦୃଷ୍ଟାନ୍ତ ଅଳଂକାର ହୋଇଥାଏ ।

ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁନାହିଁ କିଛି କାହିଁ ଆନ ପ୍ରତିକାର
ନୂଆ ଅନ୍ଧ ପ୍ରାୟେ ହୋଇ
ଅନୁକ୍ଷଣେ ଆକୁଳ ବଢୁଛି ପ୍ରାଣସହି । (ପ୍ରେମସୁଧାନିଧି)

**ନିଷ୍ଚୟଗର୍ଭ ସନ୍ଦେହ**-ଯେଉଁଠାରେ ସନ୍ଦେହର ଉତ୍‌ଥାପନ ଓ ତାହାର ନିରାକରଣ ପୁନଃ ପୁନଃ ସମ୍ପାଦିତ ହୁଏ, ସେଠାରେ 'ନିଷ୍ଚୟଗର୍ଭ ସନ୍ଦେହ' ଅଳଙ୍କାର ହୁଏ ।

ଯଥା- ଭାଳୁଛି ନୁହଇ ମାର ନାହିଁ ଫୁଲ ଧନୁଶର
ସୁଧାକର ନୋହେ ତହିଁ କଳଙ୍କ ଅଛି
ଆଉ ଦେବତା ମାନଙ୍କୁ କିପାଁ ଆଣିବା ମନକୁ
ମୋହରି ସୁକୃତ ଏ ପୁରୁଷ ହୋଇଛି ।
ମୋର ପୁଣି ସୁକୃତ କେତେ
ଏମନ୍ତ ଶୋଭା ଜାତ ହେବାରୁ ଜଗତେ ।
ନିକଟେ ଗୋକୁଳେ ହରି ମୋହନ ରୂପକୁ ଧରି-
ଥିଲେ ନାଶ କରିଛନ୍ତି ଅବନି ଭାର ।
ଏତେ ବେଗେ ଅବତାର କିମ୍ବା ହୋଇବ ତାଙ୍କର
କି ମୂର୍ତ୍ତିମନ୍ତ ଉପମା ଦ୍ରବ୍ୟଙ୍କ ସାର ।
ଏ ରୂପେ ବିଚାରୁ ସୁକେଶୀ
କ୍ଷୀର ନୀର ପ୍ରାୟ ମନ ପୁରୁଷେ ମିଶି ।
(ଲା.ବ-ଏକାଦଶ ଛାନ୍ଦ)

**ଯଥାସଂଖ୍ୟ**- ''ଯଥାସଂଖ୍ୟମନୁଦେଶ ଉଦ୍ଦିଷ୍ଟାନାଂ କ୍ରମେଣ ଯତ୍ ।''
(ସାହିତ୍ୟ ଦର୍ପଣ-୧୦/୩୭)

ଯେଉଁଠାରେ କ୍ରମରେ କୁହାଯାଇଥିବା ବସ୍ତୁଗୁଡ଼ିକର ଅନ୍ୟବସ୍ତୁଗୁଡ଼ିକ ସହ ସେହି କ୍ରମରେ ସଂପର୍କ ସ୍ଥାପିତ ହୋଇଥାଏ, ସେଠାରେ ଯଥାସଂଖ୍ୟ ଅଳଂକାର ହୁଏ । ଦୃଷ୍ଟାନ୍ତ ସ୍ୱରୂପ-

(କ) 'ବୈଦେହୀ ଶ୍ରୀରାମ କିସେ କରିଣୀ କରୀ
ବିନୋଦ ନଦୀରେ କୁଞ୍ଜ କୁଟୀରେ କରି ।' (ବୈ.ବି)

ଏଠାରେ ବୈଦେହୀଙ୍କ ସହିତ କରିଣୀ ଓ ଶ୍ରୀରାମଙ୍କ ସହିତ କରୀର ସମ୍ବନ୍ଧ କ୍ରମାନ୍ୱୟରେ ସ୍ଥାପିତ ହୋଇଅଛି ।

(ଖ) 'ଗୋରୋଚନା ପ୍ରକାରେ ଯହିଁରେ ମୃଗମଦ
ନିତିଜୀର୍ଣ୍ଣ ବସନକୁ ବିକନ୍ତି ପୁଳିନ୍ଦ ।
କୁଙ୍କୁମ ଉକୁଟାଇ ହୁଅନ୍ତି ନାରୀ ଯହିଁ
ହରିଦ୍ରାରେ ଆଦର କରିବେ କାହିଁପାଇଁ ।' (ଲାବଣ୍ୟବତୀ)

(ଗ) ଧନୁର୍ଦ୍ଧରେ ଅର୍ଜ୍ଜୁନ, ଗଦାରେ ବୃକୋଦର
ଦାନୀରେ କର୍ଣ୍ଣ, ମାନୀରେ କୁରୁଦଣ୍ଡଧର ।
ବଳିଷ୍ଠରେ ବଳୀ, ଧାର୍ମିକରେ ଯୁଧିଷ୍ଠିର
ସୁନ୍ଦରପଣରେ ତାକୁ ସେହି ପଟାନ୍ତର ।' (ଲାବଣ୍ୟବତୀ)

(ଘ) ବୃଷା ବୃଷାସନ-ବାସୁକୀ ବିଧାନ ନୁହେଁ ଏ ଉଚିତେ
ବନ୍ଧାସୁତେ କଇଳାସ ଉପାଡନ୍ତେ ଜାଣନ୍ତି ସେ ମୋତେ ।' (ବୈ.ବି)

ଅର୍ଥାତ୍ ବୃଷା (ଇନ୍ଦ୍ର) ସୁତେବନ୍ଧ ଇନ୍ଦ୍ରଜିତ ନାମକ ପୁତ୍ରଦ୍ୱାରା ବନ୍ଧା ହୋଇଥିଲେ । ବୃଷାସନ (ଶିବ) ଓ ବାସୁକୀ କଇଳାସ ଉପାଡନ୍ତେ ମୋତେ ଜାଣନ୍ତି । ରାବଣର ଏହି ଭକ୍ତିରେ କ୍ରମ ସୁରକ୍ଷିତ ଥିବାରୁ ଯଥାସଂଖ୍ୟା ଅଳଙ୍କାର ହୋଇଛି ।

**ବିଷମ** -

''ଗୁଣୌ କ୍ରିୟେ ବା ଚେସ୍ୟାତାଂ ବିରୁଦ୍ଧେ ହେତୁ କାର୍ଯ୍ୟୟୋଃ
ଯଦାରବ୍ଧସ୍ୟ ବୈଫଲ୍ୟ ମନର୍ଥସ୍ୟ ଚ ସମ୍ଭବଃ
ବିରୂପୟୋଃ ସଂଘଟନା ଯା ଚ ତଦ୍ ବିଷମଂ ମତମ୍ ।''
(ସାହିତ୍ୟ ଦର୍ପଣ-୧୦/୬୯,୭୦)

କାର୍ଯ୍ୟ ଓ କାରଣର ଗୁଣ ତଥା କ୍ରିୟା ବିରୁଦ୍ଧ ରୂପେ ବର୍ଣ୍ଣିତ ହେଲେ କିମ୍ବା ପରିସ୍ଥିତିର ବର୍ଣ୍ଣନାରେ ବିରୁଦ୍ଧ ଭାବ ପ୍ରତୀତ ହେଲେ ଏହି ଅଳଙ୍କାର ହୋଇଥାଏ ।

ଯଥା- 'ଶୁକ ଏ ଦଶାକୁ ତାର ଅନାଇ ବିରହେ
ଧାତାରୁ ଦାରୁଣ ହୋଇ ନାହିଁ ତ ସଂସାରେ
ଏତେ ଦୁଃଖ ତ ଏହାର
ଏତେ ଏତେ ବୁଦ୍ଧି କଲା କେବଣ ବୁଦ୍ଧିର ।

ଭୋଗି ଭୋଗକୁ ଯୋଖିଲା ମଳୟ ଅନିଳ
ଶିବଭାଗେ କଲା ସିନ୍ଧୁ ମନ୍ଥନେ ଗରଳ
ଦେଲା ରାହୁକୁ ଅମୃତ
କଳାନିଧି ପରାଦ୍ରବ୍ୟେ କଳଙ୍କ ଅଙ୍କିତ
ତୀର୍ଥରାଜ ଜଳକଲା ଲବଣ ସହିତ

ଧର୍ମେ ନୀଚ ପରାଭବ ବିହିଲା ଯେମନ୍ତ
ତଥା କୋମଳ ପିଣ୍ଡକୁ
ବିହିଲା ଉଦ୍ଦଣ୍ଡ ଫୁଲ କୋଦଣ୍ଡ ଦଣ୍ଡକୁ ।''(ଲାବଣ୍ୟବତୀ)

**କାବ୍ୟଲିଙ୍ଗ-** ''ହେତୋର୍ବାକ୍ୟପଦାର୍ଥତ୍ୱେ କାବ୍ୟଲିଙ୍ଗଂ ନିଗଦ୍ୟତେ ।''

(ସାହିତ୍ୟ ଦର୍ପଣ-୧୦/୫୨)

କୌଣସି ବାକ୍ୟାର୍ଥ ଅଥବା ପଦାର୍ଥ ଅନ୍ୟଗୋଟିଏ ଅର୍ଥପ୍ରତି ଗୂଢ଼ଭାବରେ କାରଣ ବୋଲି ବିବେଚିତ ହେଲେ କାବ୍ୟଲିଙ୍ଗ ଅଳଂକାର ହୁଏ ।

ଉଦାହରଣ-

କ) ‘ବାନ୍ଧବୀପରା ମୋ ନାହିଁ ସୁନ୍ଦରୀ
ବାସେ ଦେହ ସଜ ସରୋଜ ପରି
ବାମଦେବାରି ହୃଦେ ଯୋଖି ଶର
ବନ୍ଧୁ ମୋହି ହୋଇ ଧରିବ କର
ବାଜିବ କି ଲାଖ, ବିଶୀର୍ଣ୍ଣ ହେବ ଗୁଣ ଶିଳୀମୁଖେ ।’ (ବୈ.ବି)

ଖ) ‘ଦହି ତାକୁ ବାଡ଼ବାରେ ଦେବ ଏ ପ୍ରକାଇ
ଏ ଦର ବଶରୁ ଦୂରୁ ଦୂରିତ ପଳାଇ ହେ ।’ (କୋ.ବ୍ର.ସୁ-ଛା-୧/୧୧)

ଅର୍ଥାତ୍ ଶ୍ରୀକ୍ଷେତ୍ରରେ ମହୋଦଧିରେ ସ୍ନାନ କଲେ ସବୁ ପାପ ଦଗ୍ଧିଭୂତ ହୋଇ ବାଡ଼ବାଗ୍ନିରେ ଲୀନ ହୋଇଯିବ । ଏହା ମୁକ୍ତିର ହେତୁ ବୋଲି ବର୍ଣ୍ଣିତ । ତେଣୁ କାବ୍ୟଲିଙ୍ଗ ଅଳଂକାର ହେବ ।

**ଅତ୍ୟୁକ୍ତି-** ପଦରେ ବର୍ଣ୍ଣିତ ବିଷୟ ଲୋକୋତ୍ତର ଓ ଅଯଥାର୍ଥ ହେଲେ ଅତ୍ୟୁକ୍ତି ଅଳଙ୍କାର ହୁଏ । ଯଥା-

(କ) ଗୋରୋଚନା ପ୍ରକାରେ ଯହିଁରେ ମୃଗମଦ
ନିତି ଜୀର୍ଣ୍ଣ ବସନକୁ ବିକନ୍ତି ପୁଳିନ୍ଦ ।
କୁଙ୍କୁମ ଉକୁଟାଇ ହୁଅନ୍ତି ନାରୀ ଯହିଁ
ହରିଦ୍ରାରେ ଆଦର କରିବେ କାହିଁପାଇଁ । (ଲାବଣ୍ୟବତୀ)

(ଖ) ଗୃହେ ମଣିମୟ ଘଳ ବଉଳା ଝରା ପ୍ରବାଳ
ମହାରଜତରଚ୍ଚିତ ବାଡ଼ ନିର୍ମିତ ଯେ ।
ମାଣିକ୍ୟ ମର୍କତ ମିହ୍ନା ପିତୁଳି ଚିତ୍ର ରଚନା
ଲତା ମହୀରୁହ ଡାଳୀ ତହିଁରେ ଝଳି ଯେ ।

କଳଶହୀରା ବୈଦୁର୍ଯ୍ୟ ପ୍ରକାଶମାନ ସେ ତେଜ
କି ଶ୍ୱେତ ପୀତ ପତାକା ଏମନ୍ତ ଶଙ୍କା ଯେ ।
ନୀଳମଣି ସ୍ଫଟିକର ଯହିଁ ପାବଛ ଚତ୍ୱର
ମୁକୁତାଗୁଚ୍ଛା ଚାମର, ବିତାନ ତାର ଯେ । (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)

## ବିରୋଧାଭାସ-

''ବିରୋଦ୍ଧାନାଂ ପଦାର୍ଥାନାଂ ଯତ୍ର ସଂସର୍ଗଦର୍ଶନମ୍
ବିଶେଷ ଦର୍ଶନାୟେବ ସ ବିରୋଧଃ ସ୍ମୃତୋଯଥା ।'' (କାବ୍ୟାଦର୍ଶ, ୨/୩୩)

''ଗୁଣସ୍ୟ ବା କ୍ରିୟାୟା ବା ବିରୁଦ୍ଧାନ୍ୟକ୍ରିୟାଭିଧା
ଯା ବିଶେଷାଭିଧାନାୟ ବିରୋଧଂ ତଂ ବିଦୁର୍ବୁଧାଃ ।''
(କାବ୍ୟାଳଙ୍କାର-ଭାମହ ୩/୨୫)

''ବିରୁଦ୍ଧାଭାସତ୍ୱଂ ବିରୋଧଃ ।'' (ଅଳଙ୍କାର ସର୍ବସ୍ୱ)

କୌଣସି ବର୍ଣ୍ଣନାରେ ବ୍ୟବହୃତ ହୋଇଥିବା ଶବ୍ଦ ଦେଖିବା ମାତ୍ରେ ଆପାତତଃ ପରସ୍ପର ବିରୋଧୀ ପରି ଜଣାପଡୁଥିଲେ ମଧ୍ୟ ଯଦି ବାସ୍ତବରେ ସେହି ଅର୍ଥରେ କୌଣସି ବିରୋଧଭାବ ନଥାଏ, ତେବେ ସେଠାରେ ବିରୋଧାଭାସ ଅଳଙ୍କାର ହୋଇଥାଏ । ଯଥା-

(କ) 'ବିବର୍ଜିତ ପଳାଶୀରେ ପଳାଶୀରେ ଘନ
ବିନାତପ ପ୍ରଭାତପ ପ୍ରଭାରେ ପ୍ରଧାନ ଯେ ।
ବିଭୂତି ବାଞ୍ଛକ ନୋହି ବିଭୂତି ବାଞ୍ଛକ
ବର୍ଜିତ କାମ-ଉଦୟ କାମ ଉଦୟକ ଯେ ।' (ବୈ.ବି)

ଏଠାରେ- ପଳାଶୀ-ମାଂସାଶୀ, ବୃକ୍ଷ
ତପପ୍ରଭା-ତପସ୍ୟାର କାନ୍ତି, ସୂର୍ଯ୍ୟ କିରଣର କାନ୍ତି
ବିଭୁତି- ଐଶ୍ୱର୍ଯ୍ୟ, ଭସ୍ମ
କାମଉଦୟ ରହିତ-ନିଷ୍କାମ
କାମଉଦୟକ- କାମ ଉଦ୍ଦୀପକ

ଏହିପରି ପରସ୍ପର ବିରୁଦ୍ଧ ଅର୍ଥ ଜ୍ଞାପକ ହୋଇସୁଦ୍ଧା ଯଥାର୍ଥରେ ବିରୁଦ୍ଧଦ୍ୟୋତକ ନୁହେଁ । ସୁତରାଂ ଏହା ବିରୋଧାଭାସ ।

(ଖ) ଶୁଭ ଯୋଗରେ ସରିଲା ବନ୍ଦାପନା ଦିନ
ନସରିଲା ଦିନକାନ୍ତ ଅତ୍ୟନ୍ତ ଉଚ୍ଛନ୍ନ ଯେ ।

ବରବର୍ଣ୍ଣିନୀ ଲୀଳାରେ ନୋହିଲା ଲାଳସ
ବରବର୍ଣ୍ଣିନୀ ଲୀଳାରେ ହୋଇ ଅତି ବଶ ଯେ ।

ଏକାନ୍ତେ ମିତ୍ର ସଙ୍ଗତେ କ୍ଷଣେ ନ ବସିଲା
ଏକାନ୍ତେ ମିତ୍ରରେ କେତେ ସ୍ତୁତି ପ୍ରକାଶିଲା ଯେ ।

(ଗ) ସୁରୋଜିନୀ ତୋ ବୃଦ୍ଧ ଜନକ ଲୋପରେ
ସୁମନା ରସ ପ୍ରଦାନ କଲା ମଧୁପରେ ।
ସୁକୃତ ପ୍ରଜା ବଚନେ ଦୀନ ଅନ୍ଧ ଡରେ
ସେ ସମୟେ ନିଶା ନାଶ ଆପଣା ଇଚ୍ଛାରେ ଯେ ।
(ସୁ.ପ. ୨୨/୧୩)

(ଘ) ଏ ସମୟରେ ଯାମିନୀ ହୋଇଲା ପ୍ରବେଶ
ଦ୍ୱିଜରାଜ ଦ୍ୱିଜ ଚକ୍ରେ ବିହିଲାକ କ୍ଲେଶ ଯେ ।
ପଦ୍ମିନୀ ସୁମନାକୁ ହରଷ କରାଇଲା
ପଦ୍ମିନୀ ସୁମନାକୁ ବିରସେ ମଜ୍ଜାଇଲା ଯେ ।
ପ୍ରଦୋଷକୁ ନାଶକଲା ଦୋଷା କର ହୋଇ
ତମ କବଳ ତମକୁ ଗୁହାରେ ପୂରାଇ ଯେ ।
ସୂରଙ୍କୁ ବାରୁଣୀ ସେବା କରାଇଲା ବଳେ
ସକଳ ହୋଇ ରୁଚିର ଅଖଣ୍ଡ ମଣ୍ଡଳେ ଯେ ।
(ପ୍ରେ.ସୁ.୫/୫-୮)

**ପୁନରୁକ୍ତି ବଦାଭାସ-**

"ଆପାତତୋ ଯଦର୍ଥସ୍ୟ ପୌନରୁକ୍ତ୍ୟେନ ଭାସନମ୍
ପୁନରୁକ୍ତବଦାଭାସଃ ସ ଭିନ୍ନାକାରଶବ୍ଦଗଃ ।" (ସାହିତ୍ୟ ଦର୍ପଣ-୧୦/୨)

ଯେଉଁଠାରେ ଏକାର୍ଥ ବୋଧକ କିନ୍ତୁ ଭିନ୍ନାକୃତି ବିଶିଷ୍ଟ ଶବ୍ଦମାନଙ୍କର ଅର୍ଥ ପୁନରୁକ୍ତି ହେଲାପରି ଜଣାପଡ଼େ, କିନ୍ତୁ ବାସ୍ତବରେ ପୁନରୁକ୍ତି ହୋଇ ନଥାଏ, ସେଠାରେ ପୁନରୁକ୍ତି ବଦାଭାସ ଅଳଙ୍କାର ହୁଏ । ଯଥା-

(କ) ପତି କାନ୍ତ ପ୍ରିୟ ବଚନକୁ କର୍ଣ୍ଣେ ଶୁଣି
କୋପମାନ ନାଶ କଲା ରାମା ଶିରୋମଣି ।
ହେମ କନକଗାତ୍ର ତା' ପୁଲକିତ ହୋଇ
ପଦ୍ମକମଳ ବିଜିତ ନେତ୍ରେ ଢ଼ାଳି ଚାହିଁ ।
ଗଜ କୁଞ୍ଜର ଗମନା ସ୍ନେହେ କଲା କୋଳ
ଚନ୍ଦ୍ରବଧୂ ଠାରୁ ହେଲା ତନୁ ତା ଶୀତଳ ।
ମଦନ ବିଷମ ଶର ମନମଥେ ହେଲା
ଘନ ଜୀମୂତକେଶୀକି କୋଳେ ବସାଇଲା ।
(ପ୍ରେମସୁଧାନିଧି-୧୬/୧-୨)

ଏଠାରେ ପତି, କାନ୍ତ, ପ୍ରିୟ ଏକାର୍ଥବୋଧକ ହେଲେ ହେଁ ଭିନ୍ନ ଭିନ୍ନ ଅର୍ଥରେ ପ୍ରୟୋଗ ହୋଛି । ଏଠାରେ ପତି (ସ୍ୱାମୀ) କାନ୍ତ (ମନୋହର) ପ୍ରିୟ (ପ୍ରୀତିକର) ଅର୍ଥରେ ବ୍ୟବହୃତ । ସେହିପରି କୋପ ଓ ମାନ ଏକାର୍ଥ ବୋଧକ ହେଲେ ହେଁ, ଭିନ୍ନ ଅର୍ଥରେ ପ୍ରୟୋଗ ହୋଇଛି । ହେମ ଓ କନକ ଏକ ହେଲେ ହେଁ, ହେମ ସୁନା ଅର୍ଥରେ କନକ ଚମ୍ପକ ଅର୍ଥରେ ବ୍ୟବହୃତ । ପଦ୍ମ, କମଳର ଅର୍ଥ ଏକେ ହେଲେ ହେଁ କମଳ ଏଠାରେ ମୃଗ ଅର୍ଥରେ ବ୍ୟବହୃତ ।

ଖ) ସରୋଜ ଅମ୍ବୁଜ ଚନ୍ଦ୍ର ଆଦରଶ ବଦନୀ ସୁକ୍ଷୀନ ବସନା
ସୁରମ୍ୟ ବିଦ୍ରୁମ ପ୍ରବାଳ ମିହିର ଅରୁଣ ଦଶନ ବସନା
ସୁଧାଂଶୁ ଇନ୍ଦୁ ସୁଧା ଦରହାସ ପ୍ରସନ୍ନା
ସୁବର୍ଣ୍ଣ ହେମ କନକ ଗାତ୍ରୀ ଘନ ଜଳଦ କେଶୀ ସୁଦଶନା ।

ଏଠାରେ ଯଥାକ୍ରମେ ସରୋଜ, ଅମ୍ବୁଜ, ବିଦ୍ରୁମ, ପ୍ରବାଳ, ମିହିର, ଅରୁଣ, ସୁଧାଂଶୁ, ଇନ୍ଦୁ, ସୁବର୍ଣ୍ଣ, ହେମ, କନକ, ଘନ, ଜଳଦ - ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହୋଇଥିବାରୁ ପୁନରୁକ୍ତ ବଦାଭାସ ଅଳଙ୍କାର ହୋଇଛି ।

**ଅପ୍ରସ୍ତୁତ ପ୍ରଶଂସା-**

''କ୍ୱଚିତ୍ ବିଶେଷଃ ସାମାନ୍ୟାତ୍ସାମାନ୍ୟଂ ବା ବିଶେଷତଃ
କାର୍ଯ୍ୟାନ୍ନିମିତ୍ତଂ କାର୍ଯ୍ୟଂ ଚ ହେତୋରଥ ସମାତ୍ସମମ୍ ।
ଅପ୍ରସ୍ତୁତାତ୍ପ୍ରସ୍ତୁତଂ ଚେଦ୍ ଗମ୍ୟତେ ପଞ୍ଚଧା ତତଃ,
ଅପ୍ରସ୍ତୁତପ୍ରଶଂସା ସ୍ୟାତ୍ ।'' (ସାହିତ୍ୟ ଦର୍ପଣ-୧୦/୫୯)

କୌଣସି ଅପ୍ରସ୍ତୁତ ବସ୍ତୁର କଥନ ଦ୍ୱାରା ପ୍ରସ୍ତୁତ ବସ୍ତୁର ଅବଗତି ହେଲେ ସେ ସ୍ଥାନରେ ଅପ୍ରସ୍ତୁତ ଅଳଙ୍କାର ହୋଇଥାଏ । ଯଥା-

'ସର୍ପ ଚୂଡ଼ାମଣି କ୍ରୋଧେ ବୋଲନ୍ତି ଏ ଗୀର
ସରମାକୁ ଯଜ୍ଞ ଚରୁ ଦେଲା କେଉଁ କୂର । (ସୁଭଦ୍ରା ପରିଣୟ)

**ପ୍ରୌଢ଼ୋକ୍ତି-**

''କସ୍ମିଂଶ୍ଚିଦର୍ଥେ କିଂଚିଦ୍ଧର୍ମକୃତାତିଶୟ ପ୍ରତିପିପାଦୟିଷୟା
ପ୍ରସିଦ୍ଧ ତଦ୍ଧର୍ମବତା ସଂସର୍ଗସ୍ୟୋଦ୍ଭାବନଂ ପ୍ରୌଢ଼ୋକ୍ତିଃ ।''
(ରସ ଗଙ୍ଗାଧର-ପୃ.୬୭୧)

(ବର୍ଣ୍ଣ୍ୟର ଉତ୍କର୍ଷ ସିଦ୍ଧି ଆଶେ ଅହେତୁର
ହେତୁ ବକଳ୍ପିତ ହେଲେ ପ୍ରୌଢ଼ୋକ୍ତ୍ୟଳଙ୍କାର ।)

ଯେଉଁଠାରେ ବର୍ଣ୍ଣ୍ୟ ବସ୍ତୁର ଉତ୍କର୍ଷ ସାଧନ ଉଦ୍ଦେଶ୍ୟରେ ଯେ କି ପ୍ରକୃତରେ କାରଣ ନୁହେଁ, ତାହାକୁ କାରଣ କରି ବର୍ଣ୍ଣନା କରାଯାଇଥାଏ, ଅର୍ଥାତ୍ ଯେ ଯାହାର କାରଣ ନୁହେଁ, ସେ ତାହା ଦ୍ୱାରା ନିର୍ମିତ ବୋଲି ଯେବେ ବର୍ଣ୍ଣିତ ହୁଏ, ତେବେ ପ୍ରୌଢ଼ୋକ୍ତି ଅଳଙ୍କାର ହୁଏ ।

ଯଥା- ମୁଖ ହେବ ଏମନ୍ତ ବିଚାରି ପଦ୍ମବିଧୁ
ହସ୍ତବଳା କରି ଆଗୁଁ ଗଢ଼ିଥିଲା ସାଧୁ ଯେ ।
ତହୁଁ ବାସ ଆହ୍ଲାଦ ଦର୍ପଣରୁ ଝଳି
ଲହରୀରୁ କୁଟିଳ ଅଞ୍ଜନ ପୁଞ୍ଜ କାଳୀ ଯେ ।
କୁରଙ୍ଗରୁ ତରଙ୍ଗ ବିଦ୍ରୁମ ରଙ୍ଗ ହରି
ଲବଣୀ ଶିରୀଷରୁ କୋମଳ ବଳେ ତୁଳି ଯେ ।
ସୁବର୍ଣ୍ଣରୁ ବର୍ଣ୍ଣ ରାଜହଂସଠାରୁ ଗତି
ଏ ରୂପେ ଉପମାବର୍ଗ ଯେତେକ ଅଛନ୍ତି ଯେ ।
ବିହି ସବୁଠାରୁ ସାର ସାର ଭାଗ ଆଣି
ପୁରଟ ପ୍ରତିମା ପରି ରଚିଲା ତରୁଣୀ ଯେ ।

(ଲାବଣ୍ୟବତୀ/୨/ ୪୮-୫୨)

ପ୍ରତ୍ୟେକ ଉପମାବର୍ଗର ସାର ସାର ଅଂଶ ଲାବଣ୍ୟବତୀ ଶରୀରର କାରଣ ନୁହେଁ । କବି ଲାବଣ୍ୟବତୀର ଲୋକାତିଶାୟୀ ଲାବଣ୍ୟ ଦେଖାଇବା ଉଦ୍ଦେଶ୍ୟରେ ପଦ୍ମ ବା ଚନ୍ଦ୍ରର ଆହ୍ଲାଦରେ, ଦର୍ପଣର ଝଳିରେ, ଲହରୀର କୌଟିଲ୍ୟରେ, ଅଞ୍ଜନର କାଳିମାରେ, ସୁବର୍ଣ୍ଣର ବର୍ଣ୍ଣରେ, ରାଜହଂସର ଗମନରେ ଏବଂ ପ୍ରତ୍ୟେକ ଉପମାବର୍ଗର ଅଂଗରେ ଲବଣ୍ୟବତୀର ଶରୀର ନର୍ମିତ ବୋଲି ବର୍ଣ୍ଣନା କରିଛନ୍ତି । ଅତଏବ ପ୍ରୌଢ଼ୋକ୍ତି ଅଳଂକାର ହେବ ।

**ଲଳିତ :-** ''ପ୍ରକୃତଧର୍ମିଣି ପ୍ରକୃତ ବ୍ୟବହାରାନୁଲ୍ଲେଖେନ ନିରୂପ୍ୟମାଣୋ ପ୍ରକୃତ ବ୍ୟବହାର ସମ୍ବନ୍ଧୋ ଲଳିତାଳଙ୍କାରଃ ।'' (ରସ ଗଙ୍ଗାଧର-ପୃ.୬୭୪)

ପ୍ରସ୍ତୁତ ଧର୍ମରେ ବର୍ଣ୍ଣନା କରାଯାଇଥିବା ପ୍ରସ୍ତୁତଧର୍ମ ଗୁଡ଼ିକୁ ନ କହି ଅପ୍ରସ୍ତୁତ ଧର୍ମର ବର୍ଣ୍ଣନା କଲେ ଲଳିତ ଅଳଙ୍କାର ହୁଏ ।

ପୁଣି ବୋଲଇ ହେ ଜାଣି ମୁଁ ନଥିଲି ଦଇବ ତୁ ଏଡେ ଦାରୁଣ
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଶିଲୁ କେଉଁ କାରଣ
ଭୁଞ୍ଜି ବସିବା, ବେଳେ କୁଳିଷ ବୃଷ୍ଟି କଲୁ
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େ ବ୍ୟାକୁଳ କିମ୍ପାକଲୁ ?

(ଲା.ବ-୧୨/୨)

**ଅସମ:-** ବର୍ଣ୍ଣନୀୟ ବସ୍ତୁ ସର୍ବଥା ନିରୂପମ- ଏହିଭାବ ଯଦି ଚାତୁର୍ଯ୍ୟପୂର୍ଣ୍ଣ ରଚନାରୁ ଅଭିଧାବଳରେ ପ୍ରକାଶ ପାଏ, ତେବେ ଅସମ ଅଳଂକାର ହୁଏ । ଯଥା-

ବିଜୟୀ ବୀର ବିଜୟ କର ଯିବା ମିଥିଳାପୁର
ବାହାର ହୋଇ ବିହାର ତହିଁ କରନ୍ତି ମୁନିବର ।
ବଇଦେହୀ ଯେ ସୁନ୍ଦରୀ ବ୍ରଜେ ଅମୂଲ୍ୟ ଚୂଡ଼ାମଣି
ବର୍ତ୍ତମାନ ସେ ଭୂତ ଭବିଷ୍ୟେ ନାହିଁ ନୋହିବ ପୁଣି । (ବୈ.ବି)

ଏଠାରେ ତିନିକାଳରେ ବୈଦେହୀ ସମାନ କେହି ନାହିଁ ଯେ ନିରୁପମା, ଏହା ପ୍ରକାଶ ପାଇଛି । ତେଣୁ ଅସମ ଅଳଂକାର ହେଲା ।

**ରୂପକ:-**

(କ) "ରୂପକଂ ରୂପିତାରୋପାଦ୍ ବିଷୟେ ନିରପହ୍ନବେ ।"
ତତ୍ ପରମ୍ପରିତଂ ସାଙ୍ଗଂ ନିରଙ୍ଗମିତି ଚ ତ୍ରିଧା ।"(ସାହିତ୍ୟ ଦର୍ପଣ-୧୦/୨୮)

(ଖ)"ଉପମାନେନ ଯତ୍ତତ୍ତ୍ୱମୁପମେୟସ୍ୟ ରୂପ୍ୟତେ
ଗୁଣାନାଂ ସମତାଂ ଦୃଷ୍ଟ୍ୱା ରୂପକଂ ନାମ ତଦ୍ ବିଦୁଃ ।"
(କାବ୍ୟାଳଙ୍କାର,ଭାମହ-୨/୨୧)

ଅଭେଦ ନିର୍ଦ୍ଦେଶ କରି ଉପମେୟକୁ ଉପମାନ ରୂପେ ବର୍ଣ୍ଣନା କଲେ ରୂପକ ଅଳଂଙ୍କାର ହୁଏ ।

ଯଥା-କ) 'ଦ୍ୱିଜରାଜ ନାଶୁଁ ଦ୍ୱିଜେ ଗଲେ ସ୍ନାନ କରି
ରବି ପ୍ରୀତି ପାଇବା ସକାଶୁଁ ଆଶାନାରୀ ଯେ ।

ବିଦେଶୀ ବଲ୍ଲଭୀ ଦଶା ପଦ୍ମ ଲଭିଥିଲେ
ଆକାଶ ସଦ୍ମରେ ଦେଖି ପ୍ରଫୁଲ୍ଲ ହୋଇଲେ ଯେ । (ରସଲେଖା)

ଏଠାରେ ଉପମେୟ ଆକାଶ ସହିତ ଉପମାନ ସଦ୍ମ (ଗୃହ)ର ଅଭେଦତ୍ୱ ପ୍ରତିପାଦିତ ।

ଖ) ବିଧୁମୁଖ ବିଧୁହାସୀ ପୀୟୁଷ
ଚାହିଁ ଚକ୍ଷୁ ଚକୋର ହେଲା ତୋଷ ।

ହୃଦ କୁମୁଦ ପ୍ରମୋଦ ବଢ଼ିଲା
ଲାଜ ଅନ୍ଧାରେ ବିପତ୍ତି ପଡିଲା ।

ପୁଂସ ଭୋଖୀ ଭ୍ରମର ମତ୍ତ ଭୋଳ
ମୁଖୁଁ କମଳନେତ୍ର ନୀଳୋତ୍ପଳ ।

ଚୁମ୍ବି ମହା ଆନନ୍ଦକୁ ପାଇଲା
ଓଷ୍ଠ ବନ୍ଧୁଳୀରୁ ମଧୁ ପିଇଲା । (ପ୍ରେ.ସୁ)

ଏଠାରେ ମୁଖକୁ ଚନ୍ଦ୍ର, ହାସକୁ ପୀୟୁଷ, ଚକ୍ଷକୁ ଚକୋର, ହୃଦୟକୁ ପୀୟୁଷ, ଚକ୍ଷୁକୁ ଚକୋର, ହୃଦୟକୁ କଇଁଫୁଲ, ଭ୍ରମରକୁ ପୁରୁଷ, ମୁଖକୁ କମଳ, ନେତ୍ରକୁ ନୀଳୋତ୍ପଳ, ଅଧରକୁ ବଧୁଲୀ ସହିତ ତୁଳନା କରାଯାଇଛି ।

**ସାଙ୍ଗ ରୂପକ:-** ଉପମେୟର ବିଭିନ୍ନ ଅଙ୍ଗରେ ଉପମାନର ବିଭିନ୍ନ ଅଙ୍ଗର ଅଭେଦ ଆରୋପଣ କରାଗଲେ, ସାଙ୍ଗରୂପକ ଅଳଙ୍କାର ହୁଏ ।

(କ) ନଦୀନାଗ କଲେ ବେଗ ଗମନ
ଲହରୀ ରସନା ସୁକାର ସ୍ୱନ
ଫେନ କଞ୍ଚୁକ ଭ୍ରମଚକ୍ରେ ଶୋହି
ସାଗର ବିତଳେ ପଶିବାକୁ ଯାଇ । (ଲାବଣ୍ୟବତୀ)

ଏଠାରେ ଉପମେୟ ଆକାଶ ସହିତ ଉପମାନ ସଦ୍ମ (ଗୃହ) ର ଅଭେଦତ୍ୱ ପ୍ରତିପାଦିତ ହୋଇଛି ।

(ଖ) ନାରୀ ନଦୀ ବାରି ନୋହିଲେ ତହିଁ ଘଡିଏ ଯାଏ
ହାସ କୁମୁଦ ନେତ୍ର ମୀନ ମୁଖ କମଳ ପ୍ରାଏ ।
ଜଘନ ପୁଳିନ ଉରଜ ଚକ୍ରବାକ ମିଥୁନ
ରୋମାବଳୀ ଅଳି ଆବଳୀ, ଗତି ହଂସ ସମାନ ।
ଉଦର କମଳ ପଳାଶ ନାଭି ଜଳ ଭଉଁରୀ
କର କୋକନଦ ସୁବାହୁ ଯହିଁ ମୃଣାଳ ସରି । (ଲାବଣ୍ୟବତୀ)

ଏଠାରେ ନାୟିକା ଲାବଣ୍ୟବତୀଠାରେ ନଦୀର ଆରୋପଣ କରାଯାଇଛି । ତେଣୁ ନାୟିକାର ବିଭିନ୍ନ ଅଂଶ ଯଥା-ହାସ, ନେତ୍ର, ମୁଖ, ଜଘନ, ଉରଜ, ରୋମାବଳୀ ଗତି, ଉଦର, ନାଭି, କର ଓ ସୁବାହୁକୁ ଯଥାକ୍ରମେ କୁମୁଦ, ମୀନ, କମଳ, ପୁଳିନ, ଚକ୍ରବାକ, ମିଥୁନ, ଆବଳୀ, ହଂସ, କମଳ ପଳାଶ (ପଦ୍ମପତ୍ର) ଜଳଭଉଁରୀ, କୋକନନ୍ଦ ଓ ମୃଣାଳର ଆରୋପଣ କରାଯାଇଛି ।

(ଗ) ନୋହିବେ ସର୍ବଜ୍ଞ କିମ୍ବା ବ୍ରହ୍ମ ପରିକର
ଜାଣିଲେ ନିଶ୍ଚୟ ପ୍ରଭୁ ଦକ୍ଷିଣ କୁଞ୍ଜର ହେ ।
ପୂର୍ବଜରେ ପୂର୍ବଗଜ ଭାବ ଉପୁଜାଇ
ପହଣ୍ଡି ବିଜୟ କଲେ ଝୁଲାଇ ଝୁଲାଇ ଯେ ।
ଏମନ୍ତ ନୋହିଲେ କି ପ୍ରସାଦ-ଦରୀ ତେଜି
ମଣ୍ଡପ ସାର ଅବଗାହରେ ଚିତ୍ତ ମଜି ହେ ।
ସାର ଗନ୍ଧସାର ପଙ୍କେ ଭୂଷିତ ହୋଇବେ
ଜନ ପଙ୍କ ପଙ୍କଜ ବନକୁ ଉଜାଡ଼ି ବେହେ ।
ସବୁଦିନେ ଲୀଳା ସ୍ଥାନ ନୀଳ ମହୀଧର
ଭକ୍ତଭାବ ରଜ୍ଜୁରେ ବନ୍ଧନ ଅଛି ଯାର ହେ । (କୋ.ବ୍ର.ସ୍ତୁ)

ଏଠାରେ ଶ୍ରୀ ଜଗନ୍ନାଥ ଓ ବଳଭଦ୍ରଙ୍କଠାରେ ଯଥାକ୍ରମେ ଦକ୍ଷିଣ କୁଞ୍ଜର (ବାମନ) ଓ ପୂର୍ବଗଜ (ଐରାବତ)ର ଆରୋପଣ କରାଯାଇଛି । ଏହି ଉଭୟ ଠାକୁରଙ୍କର ପ୍ରାସାଦ, ସ୍ନାନମଣ୍ଡପ, ଚନ୍ଦନ, ଜନ-ପାପ, ନୀଳ ମହୀଧର ଓ ଭକ୍ତ ଯଥାକ୍ରମେ ଦରୀ (ଗୁମ୍ଫା), ସର (ପୁଷ୍କରିଣୀ), ପଙ୍କ, ପଦ୍ମବନ, ନୀଳପର୍ବତ ଓ ରଜ୍ଜୁର ଆରୋପଣ କରାଯାଇଛି ।

(ଘ) ପ୍ରବେଶ ହୋଇଲା ବରଷାକାଳ
ପ୍ରମାଦମାନଙ୍କ ଜନମସ୍ଥଳ
ଜଳଦ କଜ୍ଜ୍ୱଳ କାନ୍ତି ଶାର୍ଦ୍ଦୂଳ
ସୁଖେ ବିହରିଲେ ଶିଖରୀ ଚୂଳ
ଗର୍ଜିଲା ସନ୍ତତ
ପ୍ରକାଶେ ଝଳି ବକାବଳୀ ଦନ୍ତ । (ଲାବଣ୍ୟବତୀ)

ଏଠାରେ ଉପମେୟ 'ଜଳଦ' ରେ 'ଶାର୍ଦ୍ଦୂଳ'ର ଆରୋପ କରାଯିବାରୁ ତଦନୁସାରେ 'ବକାବଳୀ'ରେ 'ଦନ୍ତ'ର ଆରୋପ କରାଯାଇଛି ।

**ନିରଙ୍ଗ ରୂପକ:-** ଯେଉଁଠାରେ ଉପମେୟ ଠାରେ କେବଳ ଏକମାତ୍ର ଉପମାନର ଅଭେଦ ଆରୋପ କରାଯାଏ, ସେଠାରେ ନିରଙ୍ଗ ରୂପକ ଅଳଙ୍କାର ହୁଏ ।

ଉଦାହରଣ-

ସ୍ୱେଦନୀର ତାର ତରଳି ଝର ବହିଲା
ଏମନ୍ତେ ବରଷା ପ୍ରାପ୍ତ ମନରେ ହୋଇଲା । (କୁଞ୍ଜ ବିହାର-୩/ ୨୩)

ଏଠାରେ ଉପମାନ ହେଉଛି ଝର । ଉପମେୟ ସ୍ୱେଦନୀର । ଉଭୟ ମଧ୍ୟରେ ଅଭେଦ ଆରୋପିତ ହୋଇଥିବାରୁ ନିରଙ୍ଗ ରୂପକ ଅଳଙ୍କାର ହୋଇଛି ।

**ପରମ୍ପରିତ ରୂପକ:-** ଯେଉଁଠାରେ ଗୋଟିକର ଆରୋପ ଅନ୍ୟ ଆରୋପର ହେତୁ ବା କାରଣ ହୋଇଥାଏ, ସେଠାରେ ପରମ୍ପରିତ ରୂପକ ଅଳଙ୍କାର ହୁଏ ।

(କ) କଲା କି ସୃଷ୍ଟି କିଛି ନ ହୁଡ଼ିଲା
ହରିଲୀଳା ଏ ରୂପେ ନିବାଡ଼ିଲା
ସୁଗ୍ରୀବରେ ଚନ୍ଦନ ମିଶ୍ରିତ
ରାମଲକ୍ଷ୍ମଣ ମୁଖେ ପ୍ରଶଂସିତ ।
ପ୍ରକାଶିତ ଚନ୍ଦ୍ରହାସ ଝଲକ
ମନ୍ଦୋଦରୀ-ବର ଶକ୍ତି-ତିଳକ ।
ମେଘନାଦ ଶିଖା ଲକ୍ଷ୍ୟ ଝଳିକି
ଦକ୍ଷ ଧରି ସେ ସୁମନା ବଳୀକି ।

ସଦା ଅଙ୍ଗଦ ବାହୁରେ ବିହରେ
କୁଚ-କୁମ୍ଭ-ଉନ୍ନତି ଚିତ୍ତ ହରେ ।
ଏଣୁ କରି ପୁଷ୍ଟ ଲଙ୍କା-କମ୍ପନ
ଏ ତ କଳ୍ପକ କଥା ଉଦ୍ଦୀପନ । (କୋ.ବ୍ର.ସୁ.୩/୧୪-୧୭)

(ଖ) ବିଧୂ ମୁଖ ବିଧୂ ହାସ ପୀୟୂଷ
ରହିଁ ଚକ୍ଷୁ ଚକୋର ହେଲା ତୋଷ ।
ହୃଦ କୁମୁଦ ପ୍ରମୋଦ ବଢ଼ିଲା
ଲାଜ ଅନ୍ଧାରେ ବିପତ୍ତି ପଡ଼ିଲା । (ପ୍ରେମସୁଧାନିଧି)

ଏହି ଉଦାହରଣରେ ମୁଖ ଠାରେ ବିଧୂର, ହାସ ଠାରେ ପୀୟୁଷର, ଚକ୍ଷୁଠାରେ ଚକୋରର, ହୃଦଠାରେ କୁମୁଦର ଓ ଲାଜଠାରେ ଅନ୍ଧାରର ଆରୋପଣ ପରସ୍ପର ସାପେକ୍ଷ ।

**ପ୍ରତୀପ, ଶ୍ଲେଷ ଏବଂ ଅତିଶୟୋକ୍ତିର ଏକତ୍ର ସ୍ଥିତି:**

ଚିନ୍ତା ଜନମ ଉପମା ଲେଖାର
ତାଙ୍କ ଇଚ୍ଛାରେ ହେଲେ ନାରଖାର ।
ବିଦ୍ୟୁ ଅଛିରେ ପ୍ରତିଭା ଲକ୍ଷକେ
ଚନ୍ଦ୍ରକ୍ଷୀଣ ହୋଇଗଲା ପକ୍ଷକେ ।
ଘନ ଜୀବନୁ ଅଗ୍ନି ଉପୁଜାଇ
ଧୂମ ବିବର୍ଣ୍ଣ ହେଲା ଜଳିଯାଇ ।
ଭକ୍ଷ କଲା ସୁପର୍ଣ୍ଣ କାକୋଦର
ମନ୍ଦ ନାମରେ ବହିଲା ମନ୍ଦର ।
ପଦ୍ମମୃଣାଳ କଣ୍ଟକକୁ ଧରି
ହୁଏ ପଙ୍କଜ ପଦେ ସେ ଉଦ୍ଧରି ।
ବିମ୍ବ ହୋଇଲା ଭସ୍ମ ବିଲେପନ
ବୃକ୍ଷରାଜ ଦଳ ବହେ କମ୍ପନ ।
ଫଳେ ଅଧୋମୁଖ ହେଲା କଦଳୀ
ଜବା କାଳିମା ରଙ୍ଗେ ଶୋଭା ଦଳି ।
ଖେଦୁଁ ଇନ୍ଧନ ହୋଇଲା ଚନ୍ଦନ
କଲା ମୁକୁତା ଶାମୁକେ ସଦନ ।
ବୀଣା ସ୍ୱନ କଲା ପରବଶରେ
ସିଂହ ଲୁଚିଲା କେଉଁ ପ୍ରଦେଶରେ ।
ବିଷ ଶବଦୁଁ ମୃଣାଳ-ଆହାରୀ
ଖେଦ ହୋଇଲା ମାନସ ବିହାରୀ ।'' (କୋ.ବ୍ର.ସୁ. ୩/୩୨-୩୬)

## ରୂପକ ଅଳଙ୍କାରର ଅନ୍ୟାନ୍ୟ ଉଦାହରଣ :-

(କ) ଶ୍ରୁତି ସରେ କରି ଆସୁ ବିନୋଦ
ସ୍ୱନଛଳେ ଶୁଭେ ମଞ୍ଜିର ନାଦ ।
ସପକ୍ଷ ସମସ୍ତେ ଅଛନ୍ତି ହୋଇ
ସୁକ୍ରୀଡ଼ା କରିବେ ମନସେ ରହି ସେ ।
ସମଳ ବହିତ ସେହୁ ଯେ
ସହସ୍ରଦଳ ବଦନେ ମହୋଜ୍ଜ୍ୱଳ ମୃଣାଳ ନାଳ ସୁବାହୁ ଯେ ।

(ସୁ.ପ. ୭/୨୨)

(ଖ) ସଂପ୍ରାପ୍ତ ପ୍ରତ୍ୟୁଷ କି କାର୍ତ୍ତିକ ମାସ ପିକ କୁହୁ କୁହୁ ସଦୃଶ ।
ସ୍ୱାତୀ ତାରା କୁକୁମ ବର୍ଣ୍ଣଦିଶ । ସାତୁ ଅଳବାର ବିରହ ପ୍ରଥମ ଯୋଗ ତା ଚିନ୍ତ
ବିଶେଷ ହେ ସୁଜନେ । ସରିତପତି ମନୋମଧ୍ୟେ ସ୍ଥିତ ।
ସୁପୁରୁଷ ଈଶ ନିରାଶ ବତାସ ବଶେ ଭାଜିଲା ଦ୍ୱରିତ ହେ । (ସୁ.ପ.୯/୨୫)

ଅର୍ଥାତ୍ ଏହି କାଳରେ ପ୍ରଭାତ ହୁଅନ୍ତେ କୋଇଲିର ସ୍ୱର କାର୍ତ୍ତିକ ମାସ ସକାଳର ଘଣ୍ଟା ଘଣ୍ଟା ସ୍ୱନପରି ହେଲା । ଦିବସ ହେବାରୁ ଚକୁଆ ଚକୋଇଙ୍କର ପ୍ରଥମ ମିଳନ ଯୋଗ ଘଟିଲା । ହେ ସୁଜନେ ! ମନ ରୂପକ ସମୁଦ୍ରରେ ଆଶା ରୂପକ ବୋଇତ ହୋଇଥିଲା । ଅର୍ଜ୍ଜୁନଙ୍କର ନିରାଶ କଥା ରୂପକ ବତାସ ବହିବା ହେତୁ ସେ ବୋଇତ ଭାଙ୍ଗି ଚୂର୍ଣ୍ଣ ହୋଇଗଲା ।

(ଗ) ଶୁଖାଇବାକୁ ପୁଂସ ଧୈର୍ଯ୍ୟ ସରକୁ ବାଳାତାପ ଋତୁ ପ୍ରକାରେ
ସେ ଉଦୟ ହୃଦବନେ କରାଇଲା ତପ ଦାବାନଳ ପ୍ରକାରେ
ସନ୍ତାପକ ଯେ, ସଂଜତ ସ୍ୱେଦ କଣିକାରେ
ଶୁଣିବାକୁ ଦେଇ ଶ୍ରବଣ ଏକା ସେ ଝୁଣ୍ଟିଆ ଝିଙ୍କାରି ଝଙ୍କାରେ ।

(ସୁ.ପ.୧୦/୩୦)

ଅର୍ଥାତ୍ ଅର୍ଜ୍ଜୁନଙ୍କର ଧୈର୍ଯ୍ୟ ରୂପକ ଜଳାଶୟକୁ ଶୁଖାଇବା ନିମନ୍ତେ ସୁଭଦ୍ରା ଗ୍ରୀଷମ କାଳ ପ୍ରାୟ ହେଲେ । ସଂଯମ ରୂପକ ନିଆଁ ଦେହରେ ବାଜି ଝାଳ ବୁହାଇଲା । ତାଙ୍କ ଦେହରୁ ସ୍ୱେଦ କଣିକା ଝରି ପଡ଼ିଲା । କେବଳ ଏକା ନାରୀର ପାଦରେ ଅଳଙ୍କାରର ଶବ୍ଦ ଝଙ୍କାରିର ଶବ୍ଦ ଶୁଣିବାକୁ ମନ କଲେ ।

(ଘ) ସେନେହ ବୀଜ ଓଘ ଗୋପ୍ୟରେ ଥିଲା ମେଘ ସୁନ୍ଦର ଦରଶନ ଜଳ
ସେଚନ ବଶେ କି ସେ ଅଙ୍କୁରିଲା ବିଶେଷେ ଶରୀର କେଦାରେ ଚପଳସେ ।
ସୁକୁମାରୀ ସହଜରେ ସେ ସୁଖୀ ଅତି । ଶରବ୍ୟ କରି ରତି ପତି ।
ଶାୟକ କୋଟି କୋଟି ବିନ୍ଧିଲା ଯାଇ ଫୁଟି ଅଙ୍ଗେ କି ଦିଶେ ପୁଙ୍ଖପନ୍ତି ସେ ।

(ସୁ.ପ.୮/୨)

ଅର୍ଥାତ୍ ସ୍ନେହ ବୀଜ ସବୁ ଗୁପ୍ତରେ ରହିଥିଲା । ସୁନ୍ଦର ପୁରୁଷ ଅର୍ଜ୍ଜୁନଙ୍କ ଦର୍ଶନ ରୂପକ ମେଘର ଜଳ ସିଞ୍ଚନ ଦ୍ୱାରା ହୃଦୟ ରୂପକ କିଆରୀରେ ଗଜା ଅଙ୍କୁରୋଦଗମ ହେଲା । ସ୍ୱଭାବରେ ସେ ଅତ୍ୟନ୍ତ ସୁଖୀ । କନ୍ଦର୍ପ ତାଙ୍କୁ ତ ଶରବ୍ୟ କଲା । କୋଟି କୋଟି ଶର ବିନ୍ଧିଲା । ସେଗୁଡ଼ିକ ସୁଭଦ୍ରାଙ୍କ ଅଙ୍ଗରେ ଫୁଟି ମନେ ହେଲା ଶରର ପକ୍ଷଗୁଡ଼ିକ ଯେପରି ଦେଖାଯାଉଅଛି ।

(ଙ) ସରୋଜିନୀ କି ସରୋଜିନୀ କରି ସେ କଳ୍ପନା କଲେ ମନେ ମନେ
ସୁବାହୁ ମୃଣାଳ ଉଦର ପଳାଶ କାନ୍ତି କେଶର ବିଦ୍ୟମାନେ
ସୁମୁଖ, ଫୁଲ୍ଲାର ବିନ୍ଦ ମଧୁପୂର୍ଣ୍ଣ
ସୌରଭ ପର ଚିରକୁ ମଧୁକର ପନ୍ତି କୁଟିଳ ଉରୁସ୍ତନ ।
ସୁଧାପୁର ପଦ୍ମାକରେ ସ୍ଥିତି ନବ ବୟସ ବସନ୍ତେ ମାଧୁରୀ
ସେହି ଅଉଷଧି ବିରହ ବ୍ୟାଧିକି ବହିଅଛି ବିଧି ବିଚାରି
ସଂଚର, ଆମ୍ଭର କେହି ହେବ ନାଶ
ସେଚନ୍ ନୋହିଲେ ତହିଁ ପ୍ରେମରସ ନ ଲଭିଲେ ତାର ସ୍ପରଶ ।
(ସୁ.ପ./୪/୧୯-୨୦)

ଅର୍ଥାତ୍ ପଦ୍ମିନୀ ଜାତୀୟା ନାୟିକା ସୁଭଦ୍ରାଙ୍କୁ ସମସ୍ତେ ପଦ୍ମଫୁଲ ବୋଲି ମନେ ମନେ କଳ୍ପନା କଲେ । ବାଳାର ସୁବାହୁ ପଦ୍ମନାଡ଼ ସଦୃଶ । ଉଦର ପଳାଶ ଫୁଲ ପ୍ରାୟ । ଶରୀରର କାନ୍ତି କେଶର ସଦୃଶ । ଏହି ନାୟିକାର ଉତ୍ତମ ମୁଖ ମଣ୍ଡଳ ମଧୁପୂର୍ଣ୍ଣ ପଦ୍ମଫୁଲ ସଦୃଶ । ପିନ୍ଧିଥିବା ବସ୍ତ୍ର ଭ୍ରମର ସଦୃଶ ଏବଂ ବକ୍ଷୋଜ ଦ୍ୱୟ ଦର ବିକଶିତ ପଦ୍ମକଢ଼ି ପ୍ରାୟ । ପଦ୍ମ ପୁଷ୍କରିଣୀରେ ଏହି ନବୀନା ବସନ୍ତ ଋତୁର ଶୋଭା ପ୍ରକାଶ କରିଛି । ବୋଧହୁଏ ବ୍ରହ୍ମା ବିରହ ବ୍ୟାଧି ନିମିତ୍ତ ଏହି ଔଷଧକୁ ସୃଷ୍ଟି କରିଛନ୍ତି । ପ୍ରେମରସ ସଞ୍ଚାର ନହେଲେ ଏବଂ ତାହା ଶରୀରକୁ ସ୍ପର୍ଶ ନକଲେ ଆମ୍ଭ ମାନଙ୍କ ବିରହ କିପରି ନାଶଯିବ ବୋଲି ରାଜାମାନେ ମନରେ ଭାବିବାକୁ ଲାଗିଲେ ।

**ଅଦ୍ଭୁତ ରୂପକ–** ଯେଉଁଠାରେ କୌଣସି ଉପମେୟର ବର୍ଣ୍ଣନା ନ ଥାଇ କେବଳ ଉପମାନର ବର୍ଣ୍ଣନା କରାଯାଏ ତେବେ ସେଠାରେ ଅଦ୍ଭୁତ ରୂପକ ଅଳଙ୍କାର ହୁଏ ।

ଉଦାହରଣ :
ସର୍ବପୁରେ ଯାଇଁ ପର୍ବତ କହିଲେ ମହୀଜାତ ହେମମଞ୍ଜରୀ
ସୁଗନ୍ଧବତୀ ସ୍ୱଇଚ୍ଛାରେ ଚଳିତ ପତ୍ରାବଳୀରେ କି ମାଧୁରୀ ।
ସମ୍ଫୁଲ । ଯହିଁ ପୁଣି ଫୁଲ ଏତେକ
ସରୋରୁହ ଚମ୍ପା କୁମୁଦ ପାଟଳୀ ନିଆଳୀ ଶିରିଷ ଅଶୋକ ।

ସଫଳ ଆମ୍ବ ଡାଳିମ୍ବ ବିମ୍ବ ଦ୍ରାକ୍ଷା ତୁମ୍ବୀ ନାରଙ୍ଗ ମାତୁଳଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର ଶୁକ କପୋତ ହଂସ ସଙ୍ଗ
ସ୍ୱରୂପେ, ମହାଅଦ୍ଭୁତ କଥାଏହି
ସପତ ଜାତି ଫଳ ଫୁଲ ବିହଙ୍ଗ ଲତାରେ ଥିବା ଶୁଣାନାହିଁ । (ସୁ.ପ.୪/୭-୮)

ଅର୍ଥାତ୍ ପର୍ବତ ଋଷି ସମସ୍ତ ପୁରକୁ ଯାଇ ବାର୍ତ୍ତା ଦେଲେ କି, ପୃଥିବୀ ପୃଷ୍ଠରେ ସୁବର୍ଣ୍ଣର ଲତାଟିଏ ଜନ୍ମ ନେଇଛି । ସେ ସୁଗନ୍ଧବତୀ । ପୁଣି ସ୍ୱଇଚ୍ଛାରେ ଚଳିତା । ପତ୍ର ପୂର୍ଣ୍ଣ ଥିବାରୁ ବେଶ୍ ମାଧୁର୍ଯ୍ୟମୟ । ଏଡି ଲତାରେ ପଦ୍ମ, ଚମ୍ପା, କଇଁ, ପାଟଳୀ, ନିଆଳୀ, ଶିରୀଷ, ଅଶୋକ-ଏହି ସାତ ପ୍ରକାରର ଫୁଲ ଫୁଟିଛି । (ନାୟିକାର ମୁଖ-ପଦ୍ମ, ଦେହ-ଚମ୍ପାପୁଷ୍ପ, ହାସ୍ୟ-କଇଁଫୁଲ, କର୍ଣ୍ଣ-ପାଟଳୀ, ଓଷ୍ଠ-ନିଆଳୀ, କୋମଳଭାବ-ଶିରୀଶଫୁଲ, ଅଙ୍ଗୁଳି-ଅଶୋକ କଢ଼ି)

ସେଇ ଲତାରେ ଆମ୍ବ, ଡାଳିମ୍ବ, କଇଁଚିକାକୁଡ଼ି, ଦ୍ରାକ୍ଷା, ଲାଉ, ନାରଙ୍ଗ ଓ ଟଭାଫଳ ଶୋଭା ପାଉଛି । ଏହି ଲତାରେ ପୁଣି ସାତ ପ୍ରକାରର ପକ୍ଷୀ, ଯଥା-ସାରଙ୍ଗ, କଜଳପାତି, ଚକୋର, ମୟୂରୀ, ଶୁଆ, କପୋତ, ହଂସ ଶୋଭା ପାଉଛନ୍ତି । ଏହିପରି ଏହି ଲତାରେ ସାତ ଜାତିର ଫୁଲ, ସାତ ପ୍ରକାରର ଫଳ ଓ ସାତ ପ୍ରଜାତିର ପକ୍ଷୀ ଶୋଭା ପାଉଥିବାରୁ ଏଠାରେ ଅଦ୍ଭୁତ ରୂପକ ଅଳଙ୍କାର ହେଲା ।

**ଅତିଶୟୋକ୍ତି:-**

''ସିଦ୍ଧତ୍ୱେଽଧ୍ୟବସାୟସ୍ୟାତିଶୟୋକ୍ତି ର୍ନିଗଦ୍ୟତେ ।''
(ସାହିତ୍ୟ ଦର୍ପଣ-୧୦/୪୬)

''ନିମିତ୍ତତୋ ବଚୋଯତ୍ତୁ ଲୋକାତିକ୍ରାନ୍ତଗୋଚରମ୍ ,
ମନ୍ୟତେଽତିଶୟୋକ୍ତିଂ ତାମଳଙ୍କରତୟା ଯଥା ।''
(କାବ୍ୟାଳଙ୍କାର,ଭାମହ-୨/୬୧)

ଯେଉଁଠାରେ ଉପମେୟକୁ ଆଦୌ ଉଲ୍ଲେଖ ନ କରି ଉପମାନକୁ ଉପମେୟଠାରୁ ଅଭିନ୍ନ ବୋଲି ନିର୍ଦ୍ଦେଶିତ ହୋଇଥାଏ, ସେଠାରେ ଅତିଶୟୋକ୍ତି ହୋଇଥାଏ । ଅତିଶୟୋକ୍ତି ପାଞ୍ଚପ୍ରକାର ଅଟେ । ଯଥା-

(କ) ଭେଦରେ ଅଭେଦ

(ଖ) ଅଭେଦରେ ଭେଦ

(ଗ) ସମ୍ବନ୍ଧରେ ଅସମ୍ବନ୍ଧ

(ଘ) ଅସମ୍ବନ୍ଧରେ ସମ୍ବନ୍ଧ

(ଙ) କାର୍ଯ୍ୟକାରଣ ଭାବର ବିପର୍ଯ୍ୟୟ

ଦୃଷ୍ଟାନ୍ତସ୍ୱରୂପ-

କ) ଦଶକ ନୟନ ଦରଶନର, ଇନ୍ଦ୍ର ଦଶଶତ ନୟନଧର
ରମ୍ୟ କଥନ ତରସ ଅନନ୍ତ, ସହସ୍ର ଲପନ ଧରକସତ । (ଅବନାରସ ତରଙ୍ଗ)

ଅର୍ଥାତ୍ ସୀତାଙ୍କ ନେତ୍ରର ସୌନ୍ଦର୍ଯ୍ୟ ଦର୍ଶନ ଇଚ୍ଛାରେ ଇନ୍ଦ୍ର ସହସ୍ରାକ୍ଷ ହେଲେ । ସେହିପରି ନେତ୍ରର ସୁଷମା ବର୍ଣ୍ଣନା କରିବାକୁ ଶେଷଦେବ ସହସ୍ରମୁଖ ହେଲେ ।

ଖ) ସ୍ୱୟମ୍ଭୁବାଣ ଠାବରୁ କର ଋଣ କରି ଭୀରୁ
ମଣିରେ ନିର୍ମାଣି ସାରି ଘଷୁ ଚିକୁର
ସିଞ୍ଚାଡ଼ି ଦେଲେ ଯେ ପାଣି ଶେଷ କଲା ପଢ଼ିଶ୍ରେଣୀ
ଭୂତେ ରହି ବିନ୍ଦୁ ବିନ୍ଦୁ ହୋଇ ସୁନ୍ଦର
ସୁଦୃଷ୍ଟି ଏ ରୂପେ ହୁଅଇ
ସୁମତି ଚୂର୍ଣ୍ଣ କୁନ୍ତଳ ବୋଲି ନ କହି । (ସୁଭଦ୍ରା ପରିଣୟ)

ଏଠାରେ ସୁଭଦ୍ରାଙ୍କର କେଶକଳାପ ନିର୍ମାଣରେ ବିଧାତାଙ୍କର ଘଷି ଭୁଜର ସମ୍ବନ୍ଧ ଥିଲେ ସୁଦ୍ଧା ତା'ର ଅସମ୍ବନ୍ଧ ବର୍ଣ୍ଣିତ ହୋଇଥିବାରୁ ଏଠାରେ ସମ୍ବନ୍ଧେ-ଅସମ୍ବନ୍ଧ ଅତିଶୟୋକ୍ତି ହେଲା ।

**ଏକାକ୍ଷର :-** କେବଳ ଗୋଟିଏ ବ୍ୟଞ୍ଜନ ବ୍ୟବହୃତ ହୋଇ ସ୍ତବକ ରଚିତ ହେଲେ ତାହାକୁ ଏକାକ୍ଷର କୁହାଯାଏ । ଯଥା-

କ) କକୁ କକୃ କୋକୋ କାକ କାକା କକୁ କ୍ରକ
କିକେ କକ କେକୀ କେକୋ କକି କୀଙ୍କ କକ । (ପ୍ରେମସୁଧାନିଧି)

କକୁ-ବର୍ଷାକାଳ ପବନକୁ, କକୃ-ଡାହୁକ ଶବ୍ଦକୁ, କୋକୋ-ଚକ୍ରବାକ ଶବ୍ଦକୁ, କାକକାକା-କାକର କାକା ଶବ୍ଦକୁ, କକୁ-ବର୍ଷାଜଳକୁ, କ୍ରକ-କରକା ପଥରକୁ, କିକେ-ମୟୂର ଶବ୍ଦକୁ, କକ-ଝିଙ୍କର ପକ୍ଷୀ ନାଦକୁ, କେକୀ-ମେଘ ଘଡଘଡିକୁ, କେକୋ-ଭେକ ଶବ୍ଦକୁ, କକି-କକିଁଶିଆଳିର କୀଙ୍କ ଶବ୍ଦକୁ ଶୁଣି କକ-କାମ ତାପ ।

ଖ) 'ହା ହା ହା ହା ହା ହୁଁ ହୁଁ ହୁଁ ହୁଁ ହୁଁ ହୁଁ । ହଁ ହଁ ହଁ ହଁ ହଁ ହୁଁ ହୁଁ ହୁଁ ହୁଁ ହୁଁ ହୁଁ ।
(ଚି.କା.ବ)

**ଦ୍ୱିଅକ୍ଷର :-** କେବଳ ଦୁଇଟି ବ୍ୟଞ୍ଜନ ବ୍ୟବହୃତ ହୋଇ ସ୍ତବକ ରଚିତ ହେଲେ ତାହାକୁ ଦ୍ୱିଅକ୍ଷର କୁହାଯାଏ । ଯଥା-

ରସାରେ ସାର ସୁରସ ସରସୀ
ସଂସାର ଶିରୀ ସୁରସ ସରସୀ ।' (ଚି.କା.ବ)

ଏଠାରେ ଦୁଇଟି ବ୍ୟଞ୍ଜନ 'ର' ଓ 'ସ' ର ବ୍ୟବହାର ହୋଇଛି ।

**ଅବନା:-** କେବଳ 'ଅ' ସ୍ୱରଯୁକ୍ତ ବ୍ୟଞ୍ଜନମାନ ବ୍ୟବହୃତ ହୋଇ ସ୍ତବକ ରଚିତ ହେଲେ ତାହାକୁ ଅବନା କୁହାଯାଏ । ଯଥା-

(କ) 'ଏ ଅଙ୍ଗ ଧବଳ କର ଜଳକଣ ପତନ କ୍ଷଣର
ତବ ଘନରସ ମଜ୍ଜନର ଅପଘନ ତ ଇତର ।' (ଅବନାରସ ତରଙ୍ଗ)

(ଖ) ଶଶଧର ନବଘନ ଉଜ୍ଜ୍ୱଳ । ଅକ୍ଷ ଖଞ୍ଜନ ଗଞ୍ଜନ ରଞ୍ଜନ
କନକ ଚମ୍ପକ ବରବରନ । ହରଷ ସବଳ ଘନ ଜଘନ ।
ରକତ କମଳ ଚରଣ କର । ଉରଜ କଳଶ ଅମ୍ବର ଧର ।
ମଦକଳ କଳକଣ୍ଠ ବଚନ । ଗଜର ସମ ମନ୍ଥର ଗମନ । (ଚି.କା.ବ)

**ବନା-** ଯେଉଁ ସ୍ତବକର ପ୍ରତ୍ୟେକ ବର୍ଣ୍ଣରେ 'ଅ' ବ୍ୟତୀତ ଅନ୍ୟ ଯେ କୌଣସି ସ୍ୱରଯୁକ୍ତ ହୋଇଥାଏ, ତାହାକୁ ବନା କୁହାଯାଏ ।

ବିଦେଶେ ରହି କେବଣ ନାଗର, ବନାରେ ଭାଷଇ ଧନୀକି ତାର
ଶୋଭାରେ ମୋହିପାରେ ସେ ଶୂଳୀକି
ନାହିଁ ନାହିଁ ଲୋକେ ତୁଳା ବାଳୀକି ।

ସାଧୁ ବିଧୁମୁଖୀ କେଳି ନିଧାନୀ । ଲୀଳା ବିଳାସିନୀ ଚିନ୍ତା ନାଶିନୀ ।
ଶିରିଷାଙ୍ଗୀ ନାରୀ ସାହା ମୋହରି । ମୋହିନୀ ମୋତିହାସ ବିଦ୍ୟୁଗୋରୀ ।
ମୋ ପ୍ରାଣାଧିକା ସିନା ସେ ଭାବିନୀ । ସ୍ନେହାଧୀନ ବୀଣାପାଣି କାମିନୀ ।
(ଚି.କା.ବ)

**ସଓଷ୍ଠକ** - ଯେଉଁଠାରେ ପ୍ରତ୍ୟେକ ପଦ ଓ ପ୍ରତ୍ୟେକ ଅକ୍ଷର ଓଷ୍ଠ୍ୟବର୍ଣ୍ଣ ସେଠାରେ ଏହି ଅଳଙ୍କାର ହୁଏ । ଦୃଷ୍ଟାନ୍ତ ସ୍ୱରୂପ-

କ) 'ପୁଷ୍ପ ପବି ପ୍ରଭା ପ୍ରଭ ଭ୍ରମୁ ଭାବେ ଭୁବି
ଭୀମ ବାଷ୍ପଭବ ଭାବେ ଭବ ଭାବି ଭାବି ।
ଭବ ପ୍ରଭବୀ ଭୂମିପ ପ୍ରଭାବ ବିଭବେ
ବିଭୋ ପ୍ରଭୋ ଭୀମ ଭବ ଭ୍ରମେ ଭ୍ରମି ଭାବେ ।' (ପ୍ରେମସୁଧାନିଧି)

ପବି- ବଜ୍ରତୁଲ୍ୟ, ଭୁବି-ପୃଥିବୀରେ, ଭବପ୍ରଭବୀ-କନ୍ଦର୍ପ, ଭୂମିପ-ରାଜା, ଭବ-ମହାଦେବ, ଭବ-ଶୁଭହେଲା ।

ଖ) ଭ୍ରୀମ ପ୍ରାଭବ ଭୂମିପ ପ୍ରାଭବେ । ବାଷ୍ପ ପ୍ରଭବ ଭବ ଭବ ଭାବେ । (ଚି.କା.ବ)

(ଗ) ବିଭବ ବପୁ ପ୍ରାପ୍ୟେ ପବି
ବିପ୍ରଭା ପ୍ରଭୁଭାବ ଭାବ ଭାବି । (ଚି.କା.ବ)

**ନିରୋଷ୍ଠକ :** ଏଥିରେ ଓଷ୍ଠ ବ୍ୟତୀତ ଅନ୍ୟ ଯେ କୌଣସି ବ୍ୟଞ୍ଜନ ବ୍ୟବହୃତ ହୋଇଥାଏ । ଯଥା-

କ) ଚନ୍ଦ୍ର ଚନ୍ଦନ ଅଙ୍ଗେ ଦେଲେ ନେଇ । ଅନଳ ସରି ନାଗରୀ ଘେନଇ । (ଚି.କା.ବ)

ଖ) ନୀରଦଜଳ-ଶୟନ କରି ନିରନ୍ତର
ଜଗିଥାଉଁ ନିଦାଘରେ ସଜନୀ-ନିକର
ଘନସାର ଚନ୍ଦନ ଶୁଖଇ ଅଙ୍ଗେ ଦେଲେ
ଜଗନ୍ନାଥେ ସିନା ସେ କାଳରେ ରକ୍ଷା କଲେ । (ପ୍ରେମସୁଧାନିଧି)

ନୀରଦ ଜଳ- ପଦ୍ମପତ୍ର, ସଜନୀ ନିକର-ସଖୀମାନେ, ଘନସାର-କର୍ପୂର ।

(ଗ) ଚନ୍ଦ୍ର ଚନ୍ଦନ ଅଙ୍ଗେ ଦେଲେ ନେଇ । ଅନଳ ସରି ନାଗରୀ ଘେନଇ ।
ନଳୀନ ନାଳ ଦେଖିଲେ ଡରଇ । ଗରୁଡ଼ ଗରୁଡ଼ ସେ ଉଚ୍ଚାରଇ ।
କ୍ଷିତି ଶୟନ ତା'ର ନିରନ୍ତର । ନୟନୁ ନ ରହେ ଲୋତକ ଧାର ।
କି କରେଟି କହ ଏସନ ଜନୀ । କଷ୍ଟରେ ଜୀଆଇ ଅଛୁ ସଜନୀ । (ଚି.କା.ବ)

**ଅନୁଲୋମ ପ୍ରତିଲୋମ-** ଏଥିରେ ପ୍ରତ୍ୟେକ ପାଦକୁ ଅନୁଲୋମରେ ପଢ଼ିଲେ ଯାହା ହୁଏ ବିଲୋମରେ ପଢ଼ିଲେ ତାହା ହୋଇଥାଏ । ଅର୍ଥାତ୍ ଧାଡ଼ିର ଆରମ୍ଭରୁ ଶେଷଯାଏ ଏବଂ ଶେଷରୁ ଆରମ୍ଭ ପର୍ଯ୍ୟନ୍ତ ପଢ଼ି ଆସିଲେ ଏକା ଉଚ୍ଚରିତ ହୋଇଥାଏ । ଏହାର ଅନ୍ୟନାମ ମେଷ ଯୁଦ୍ଧ ।

କ) ରତ ରସର ଧନ ନ ଧରଷ ରତର
ରଖ ବରଦ ଭଲ ଲଭ ଦରବ ଖର । (ଅବନାରସ ତରଙ୍ଗ)

ଖ) ସରି ନାହିଁ କାଳ କାହିଁ ନାରୀଶ
ସଦାତୋ ମୁଦ ହୃଦ ମୁଁ ତୋ ଦାସ । (ସୁ.ପ)

ଗ) ମିମସୁରସାଳସୀ, ଶୀଳସାର ସୁମମି । (କୋ.ବ୍ର.ସୁ / ଛା-୩୩/ ୧୬)

ଘ) ବରଦ ବିରସାନନ ସାର ବିଦରବ
ବଧମାନ ଜରତର ଜନ ମାଧବ ଯେ ।
ବିଧ ମାରତ ହେବ ବହେ ତର ମାଧବି
ବିହେ ସଦା ତରସ ସରତ ଦାସ ହେବି ଯେ । (ବୈ.ବି/ ୧୯/୩୩)

**ପ୍ରଶ୍ନୋତ୍ତର -** ଏହି ଅଳଙ୍କାରରେ କବିଙ୍କର ପ୍ରତ୍ୟୁତ୍ପନ୍ନମତିତା ଏବଂ ଚାତୁର୍ଯ୍ୟ ପ୍ରତିପାଦିତ ହୋଇଥାଏ ।

ଉଦାହରଣ -

ତୋର ପ୍ରତିପଦ କେହୁଁ ସଂସ୍କୃତେ । (ତବ)
ତୋର ଅସ୍ତ୍ର କେ ମାରଇ ଜଗତେ । (ରୂପ)
ଦୀର୍ଘ ହୀନ ଆଡ଼ରେ କି ଭାରତୀ । (ପ୍ରତି)
ରବି ଛାୟା କେ ଖେ ଭ କି ହୁଅନ୍ତି । (ଛାୟା-ରାଜତେ)
ଆପଣାର କି ବାଣୀ ଦିବ୍ୟଭାଷେ । (ମମ)
ନେତ୍ରଦ୍ୱୟେ ଷଷ୍ଠୀରେ କି ଆଭାଷେ । (ନେତ୍ରୟୋଃ)
ପ୍ରଜାପତି ବର୍ଣ୍ଣେ ଦିଅ ଇକାର । (କିଂ)
ଲକ୍ଷ୍ମୀ ଲେଖି କର ତା ସାନୁସ୍ୱାର । (ମାଂ)
ଖେଦ ଦେବାରେ କି ବୋଲନ୍ତି ଦିବ୍ୟେ । (ଖେଦୟସେ)
ସମ୍ବୋଧନେ ନାରୀରେ କି ସମ୍ଭବେ । (ମୁଗ୍ଧେ)
ବ୍ୟର୍ଥ ଶବ୍ଦ ପ୍ରୟୋଗେ କି ଉତ୍ତର । (ମୁଧା)
ଷଷ୍ଠୀ ଏକୋକ୍ତିରେ କି ହରପର । (କାମସ୍ୟ)
ମାରଶର ତୃତୀୟା ବିଭକ୍ତିରେ । (ମାର୍ଗଣୈ)
ପଦପ୍ରାନ୍ତ ସଂସର୍ଗ ବିସର୍ଗରେ
ଶ୍ଳୋକ ଅର୍ଥ ବୁଝି ରାମା ହରଷ
ଚିତ୍ତୋଇଲା ଚାହିଁବା ଆଦିରସ । (ଚି.କା.ବ)

**ମଣ୍ଡୁକପ୍ଳୁତି-**

ଏହାର ନିୟମ ହେଉଛି ପ୍ରଥମ ଅକ୍ଷର ସହିତ ଗୋଟିଏ ଗୋଟିଏ ଅକ୍ଷର ଛାଡ଼ି ଅକ୍ଷରମାନଙ୍କୁ ମିଶାଇ ପଢ଼ିବାକୁ ହେବ । ଯଥା-

''କେଉଁ ଧନୀ ନାଗର କୁଟିନୀରେ
କହେ ଏମନ୍ତ ମଣ୍ଡୁକପ୍ଳୁତିରେ ।
'ଦେ' ଖର 'ବି' ଅସ୍ତ 'ସୁ' ଖଦା 'ନି'ରେ
'ଆ' ସୁ 'ତୋ' 'ଆ' ଲୀଦ୍ରା 'ଣ' ରଖ 'ମୋ'ରେ ।
'ପା'ଶେ ଆ 'ସ' ଗୋ ତା 'କୁ' ବୋଲି ଧରି
ବିଜେକରା ରହିଛି ନେତ୍ର ତେରି । (ଚିତ୍ରକାବ୍ୟ ବନ୍ଧୋଦୟ)

**ଉତ୍ପ୍ରେକ୍ଷା-**

''ଭବେତ୍ ସମ୍ଭାବନୋତ୍ପ୍ରେକ୍ଷା ପ୍ରକୃତସ୍ୟ ପରାତ୍ମନା
ବାଚ୍ୟାପ୍ରତୀୟମାନା ସା ପ୍ରଥମଂ ଦ୍ୱିବିଧାମତା ।'' (ସାହିତ୍ୟ ଦର୍ପଣ-୧୦/୪୦)

ପ୍ରକୃତ ପଦାର୍ଥରେ ଅପକୃତ ପଦାର୍ଥର କେବଳ ତର୍କଣା କରାଗଲେ ଉତ୍ପ୍ରେକ୍ଷା ଅଳଙ୍କାର ହୁଏ । ଏଥିରେ କି, ସତେ, ସିନା, ବା, ଅବା, ଯେହ୍ନେ, ପ୍ରଭୃତି-ବାଚକ ଶବ୍ଦ ବ୍ୟବହୃତ ହୋଇଥାଏ । ଉତ୍ପ୍ରେକ୍ଷା ଅଳଙ୍କାର ଦୁଇ ପ୍ରକାର - ବାଚ୍ୟୋତ୍ପ୍ରେକ୍ଷା ଓ ପ୍ରତୀୟମାନୋତ୍ପ୍ରେକ୍ଷା ।

**ବାଚ୍ୟୋତ୍ପ୍ରେକ୍ଷା-**

ଯେଉଁଠାରେ କି, ଅବା, ସତେକି ପ୍ରଭୃତି ଉତ୍ପ୍ରେକ୍ଷା ବାଚକ ଶବ୍ଦ ସହ ଉପମେୟକୁ ଉପମାନ ରୂପେ ସମ୍ଭାବନା କରାଯାଏ ସେଠାରେ ବାଚ୍ୟୋତ୍ପ୍ରେକ୍ଷା ଅଳଙ୍କାର ହୋଇଥାଏ ।

ଉଦାହରଣ-

ଶ୍ରବଣେ ଯେ ବୀରବର ହୋଇଲା ଏମନ୍ତ
ଚାତକ ପାଇଲେ ମେଘ ଜଳକୁ ଯେମନ୍ତ ।
ମାଳତୀ ମକରନ୍ଦ କି ପାଇଲା ଭ୍ରମର
ପିକ କି ଦେଖିଲା ମୁକୁଳିତ ସହକାର ।
ମାନସର ବିହାର କି ପାଇଲେ କାଦମ୍ବେ
ବିଷ୍ଣୁ ପ୍ରସନ୍ନ ହେଲେ କି ସୁଜ୍ଞାନୀ କଦମ୍ବେ । (ର.ହା.)

**ପ୍ରତୀୟମାନ ଉତ୍ପ୍ରେକ୍ଷା-**

ଯେଉଁଠାରେ ଉତ୍ପ୍ରେକ୍ଷାବାଚକ ଶବ୍ଦ ନଥାଇ ଉପମେୟକୁ ଉପମାନ ଭାବରେ ସମ୍ଭାବନା କରାଯାଇଥାଏ ସେଠାରେ ପ୍ରତୀୟମାନ ଉତ୍ପ୍ରେକ୍ଷା ଅଳଙ୍କାର ହୁଏ ।

ଉଦାହରଣ-

କ) ବାସବ ଦିଗେ ଅଭ୍ରମୁ କରିଣୀ
ବିଜନା କଲା ରକ୍ତ ପିଣ୍ଡ ଆଣି
ବିମ୍ବ ସବିତାର ଦିଶି ଆସିଲା
ବିବେ କର୍ଣ୍ଣେ ଶୀତ ବାତ ସେ ହେଲା । (ବୈ.ବି)

ଏଠାରେ ପ୍ରଭାତ କାଳରେ ଉଦିତ ହେଉଥିବା ସୂର୍ଯ୍ୟରୂପ ଉପମେୟକୁ ପୂର୍ବଦିଗ-ହସ୍ତୀ ଐରାବତର ସ୍ତ୍ରୀ ଅଭ୍ରମୁ ପ୍ରସବ କରିବା ରକ୍ତ ପିଣ୍ଡ ରୂପେ ତର୍କଣା କରାଯାଇଛି ଏବଂ ଉପମେୟ ରୂପେ ପ୍ରଭାତକାଳୀନ ଶୀତଳ ବାୟୁକୁ ଅଭ୍ରମୁ କରିଣୀର ପ୍ରସୂତ ରକ୍ତପିଣ୍ଡକୁ କର୍ଣ୍ଣରେ ବିଞ୍ଚିବା ରୂପେ ତର୍କଣା କରାଯାଇଛି । ତେଣୁ ଏଠାରେ ଉତ୍ପ୍ରେକ୍ଷାଳଙ୍କାର ହେଲା । ଏଠାରେ ଉତ୍ପ୍ରେକ୍ଷାବାଚକ ଶବ୍ଦ ନଥିବାରୁ ଏହା ପ୍ରତୀୟମାନୋତ୍ପ୍ରେକ୍ଷା ।

ଖ) ବାଳୀ ଢ଼ାଳିଲା ବେଳେ ନେତ୍ର
ଜୀବନ ହୋଇଲା ଆରତ
ଖେଳି ଆସୁଛି କାଳ ଅହି
ଏ ତ ମୋତେ ଦଂଶିବାର ପାଇଁ । (ଲାବଣ୍ୟବତୀ)

ଏଠାରେ ଉପମେୟ ହେଉଛି 'ନେତ୍ରଢ଼ାଳିବା' ଓ ଉପମାନ ହେଉଛି- 'କାଳ ଅହି ଖେଳିବା' । ଏହି ପଦରେ ଉତ୍ପ୍ରେକ୍ଷା ବାଚକ ଶବ୍ଦ ଉହ୍ୟ ରଖାଯାଇ ଉପମେୟକୁ ଉପମାନ ରୂପେ ସମ୍ଭାବନା କରାଯାଇ ଥିବାରୁ ପ୍ରତୀୟମାନ ଉତ୍ପ୍ରେକ୍ଷା ହୋଇଅଛି ।

**ଉତ୍ପ୍ରେକ୍ଷାର ଅନ୍ୟାନ୍ୟ ଉଦାହରଣ-**

(କ) ସଙ୍କେତି ଦମ୍ଭ ଦାରଣ କଲା ଚକ୍ର କିସେ
ସୁମିତ୍ରତା ପାଇ ଚକ୍ରବାକ ଅତି ତୋଷେ
ସୁର ସ୍ୱଭାବେ ତ୍ରାସିତ କଲା ନିଶାଚର
ସେବିତ ବିଷ୍ଣୁପଦକୁ ସାଧୁଗୁଣ ତାର ଯେ । (ସୁ.ପ. ୧୩/ ୨୪)

(ଖ) କୁଚ ଅଙ୍କୁରିବାରେ ବସନ ଉଚ୍ଚ ଦିଶେ
ହୃଦୟ ବେଦୀରେ ଅଭିଷେକ କୁମ୍ଭକି ସେ । (ଲାବଣ୍ୟବତୀ ୨/ ୧ ୧)

ଏହି ଉଦାହରଣରେ କୁଚଦ୍ୱୟକୁ ହୃଦୟବେଦୀର ଅଭିଷେକ କୁମ୍ଭ ସହିତ ତର୍କଣା କରାଯାଇଛି ।

(ଗ) ଅଣିମାଦି ସୁଖଦାୟୀ ଶୋଇଅଛି ଅଣିହୋଇ
ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା
ରସାଣ ରଜଡ଼ବାଡ଼େ କନକଲତା କି ଜଡ଼େ
ବିଶଦ ଘନରେ କି ସେ ଚପଳାପ୍ରଭା
ବାମକର କପୋଳ ତଳ
କେନ୍ଦୁପଲ୍ଲବେ ଥୁଆ କି ଫୁଲ କମଳ । (ଲାବଣ୍ୟବତୀ-୧ ୧/ ୧ ୨)

(ଘ) ସହସ୍ରପାଦ ପ୍ରକାଶ ଉପମାଏ ସ୍ମରି
ସୁଷୁମ୍ନା ଯୋଗ ହେଲାଣି ଉଦୟ ଶିଖରୀ

ଶମ୍ବର ବିଟପ ତେଣୁ କୁଳଟା ବନରୁ
ସଦ୍ଭାବ ହୋଇଲେ ଅତି ତ୍ରାସିତ ମନରୁ ଯେ ।

ସାଦି ଦିବସ ଅଙ୍କୁଶେ କଲା ବିଦାରଣ
ସୁତ୍ରାମା ବାରଣ ଶିରୁ ସ୍ରବେ ତେଣୁ ଶୋଣ
ସୁତ୍ରାମ ଦିଶ କି ହୋଇଅଛି ବୀରବେଶ
ସିନ୍ଦୂର ମଣ୍ଡନ ଚିତ୍ର ଲଲାଟେ ପ୍ରକାଶ ଯେ । (ସୁ.ପ.୧୩/ ୨୩-୨୪)

ଅର୍ଥାତ୍ ଉତ୍ପ୍ରେକ୍ଷା ଅଳଙ୍କାରରେ କବି କହୁଛନ୍ତି ଯେ ସୂର୍ଯ୍ୟ ଉଦୟ ହେବାରୁ ମନେହେଲା ଯେପରି ପର୍ବତ ଉପରେ ଅଗ୍ନିର ଝଲକ ସୃଷ୍ଟି ହେଲା । ଜଳରୂପୀ ବିଟ ପୁରୁଷମାନେ ଗଣିକା ରୂପକ ବନ ମଧ୍ୟରୁ ତ୍ରାସିତ ମନରେ ଚାଲି ଯାଉଛନ୍ତି । ପୁନଶ୍ଚ ମନେହେଲା ଅଙ୍କୁଶ ଧାରୀ ମାହନ୍ତ ହାତୀର ମୁଣ୍ଡକୁ ଅଙ୍କୁଶରେ ବିଦାରଣ କରିବାରୁ ରକ୍ତ ବହିଲା କି ? ଅଧିକନ୍ତୁ ପୂର୍ବଦିଗ ବୀରବେଶରେ ସଜ୍ଜିତ ହୋଇଥିବାରୁ ତା' ମୁଣ୍ଡରେ ସିନ୍ଦୂର ଟୋପା ମଣ୍ଡନ ହୋଇଛି କି ?

(ଙ) ନାନା ରତ୍ନପ୍ରଭା ଧରି ନବଚିତ୍ର ବାଡୁ ସରି
ଦେଖାଇବେ କେଉଁ ଜ୍ୟୋତି ତାରକାପନ୍ତି ଯେ ।

ପ୍ରଭାହୀନ ପ୍ରଭାକର ହିଙ୍ଗୁଳୀ କୁତୁକୀ ସାର
ଉଡ଼ାଇ କାକତ ଚକି ଏମନ୍ତ ତର୍କ ଯେ । (କୋ.ବ୍ର.ସୁ/୪/୧୦-୧୧)

**ଉପମା-**

(କ) ''ଯତ୍ କିଞ୍ଚିତ୍ କାବ୍ୟବନ୍ଧେଷୁ ସାଦୃଶ୍ୟେନୋ ପମୀୟତେ
ଉପମା ନାମ ସା ଜ୍ଞେୟା ଗୁଣାକୃତିସମାଶ୍ରୟା ।'' (କାବ୍ୟାଳଙ୍କାର-୧୬/୪୧)

(ଖ) ''ସାମ୍ୟଂ ବାଚ୍ୟମବୈଧର୍ମ୍ୟଂ ବାକ୍ୟୈକ ଉପମା ଦ୍ୱୟୋଃ ।''
(ସାହିତ୍ୟ ଦର୍ପଣ-୧୦/୧୪)

(ଗ) ''ଉପମାନୋପମେୟୟୋଃ ସାଧର୍ମ୍ୟେ ଭେଦାଭେଦ ତୁଲ୍ୟତ୍ୱେ ଉପମା ।''
(ଅଳଙ୍କାର ସର୍ବସ୍ୱ-ପୃ.୨୧)

ଯେଉଁ ବାକ୍ୟରେ ଉପମାନ ଓ ଉପମେୟ ସମାନ ଧର୍ମ ବିଶିଷ୍ଟ ହୋଇଥାନ୍ତି, ଓ ସେମାନଙ୍କ ମଧ୍ୟରେ ଥିବା ସାଦୃଶ୍ୟ ସାଧାରଣ ବୋଧକ ଶବ୍ଦଦ୍ୱାରା ଅଭିହିତ ହୋଇଥାଏ, ସେଠାରେ ଉପମା ଅଳଙ୍କାର ହୋଇଥାଏ । ଦଣ୍ଡୀଙ୍କ ମତରେ ଉପମାଳଙ୍କାର ସାଧାରଣତଃ ୨୫ ପ୍ରକାରର ଅଟେ । ଯଥା- ଅଦ୍ଭୁତୋପମା, ସଂଶୟୋପମା, ନିର୍ଣ୍ଣୟୋପମା, ଶ୍ଳେଷୋପମା, ନିନ୍ଦୋପମା, ପ୍ରଶଂସୋପମା, ଆଚିଖ୍ୟାସୋପମା, ବିରୋଧାପମା, ପ୍ରତିଷେଧୋପମା, ସାଧାରଣୋପମା, ଚଟୂପମା, ବହୂପମା, ମାଳୋପମା, ତତ୍ତ୍ୱାଖ୍ୟାନୋପମା, ସଂଭାବିତୋପମା, ବିକ୍ରୟୋପମା, ପ୍ରତିବସ୍ତୁପମା, ବାକ୍ୟାର୍ଥୋପମା, ହେତୂପମା, ତୁଲ୍ୟଯୋଗୋପମା, ଅତିଶୟୋପମା, ଉତ୍ପ୍ରେକ୍ଷିତୋପମା, ମୋହୋପମା, ଉପମିତୋପମା ଏବଂ ଅନିୟତୋପମା ।

ତେବେ ଆଲୋଚକମାନେ ତିନିଗୋଟି ଉପମା ଅଳଙ୍କାରକୁ ବିଚାର କରିଥାନ୍ତି । ଏହି ତିନିଗୋଟି ଉପମା ଅଳଙ୍କାର ହେଉଛନ୍ତି-

କ) ପୂର୍ଣ୍ଣୋପମା, ଖ) ଲୁପ୍ତୋପମା, ଗ) ମାଳୋପମା ।

## କ) ପୂର୍ଣ୍ଣୋପମା-

''ସା ପୂର୍ଣ୍ଣା ଯଦି ସାମାନ୍ୟଧର୍ମ ଔପମ୍ୟବାଚି ଚ
ଉପମେୟଂ ଚୋପମାନଂ ଭବେଦ୍‌ବାଚ୍ୟମ୍ ।'' (ସାହିତ୍ୟ ଦର୍ପଣ-୧୦/୧୫)

ଯେଉଁ ପଦରେ ଉପମାନ ଓ ଉପମେୟ, ସାଧାରଣଧର୍ମ ଓ ଉପମା ବାଚକ ଶବ୍ଦର ସ୍ପଷ୍ଟ ଉଲ୍ଲେଖ ଥାଏ, ତାହାକୁ ପୂର୍ଣ୍ଣୋପମା କୁହାଯାଏ । ଯଥା-

କ) ଏଥୁ ଅନ୍ତେ ଶୁଣ ରସ ଗ୍ରୀଷମେ ନିଶି ପ୍ରବେଶ
ଉଦୟ ତାରା ଛାବେଶ ହେଲେ ଆକାଶେ
ଚକ୍ର ସୁଖ ଚକ୍ର ନକ୍ର ଛେଦନେ ହୀରକ ଚକ୍ର
ଫିଙ୍ଗିଛି ତାତ ସିଦ୍ଧିରେ କାମ କି ରୋଷେ
ବେଶ ହେବ କି ରାତ୍ରି ବାଳୀ
ସ୍ଫଟିକ ପେଟୀରେ କିବା କସ୍ତୁରୀ ଦଳି ।
ଆଜି କି ବିଭାବରୀକି ହୋଇବ ବିଭାବରି କି
ମଲ୍ଲୀମାଳା ଦେଇ ବିଧୁ କିରଣେ ମଣି
ଏ ବିଚିତ୍ର ସ୍ୱୟଂବର ନାରୀକି ବରିଲା ବର
ଏତେକାଳେ ଦେଖାଗଲା ଏକଥା ପୁଣି
ରବି କରେ ମହୀ-ମହିଳା
ତାପି ହୋଇଥିଲା କି ଚନ୍ଦନ ଲେପିଲା । (ଲାବଣ୍ୟବତୀ-ଏକାଦଶ ଛାନ୍ଦ)

ଏଠାରେ ଚନ୍ଦ୍ର ସହିତ ହୀରକ ଚକ୍ର ଓ ସ୍ଫଟିକପେଟୀର ଉପମା ହୋଇଛି । ଚନ୍ଦ୍ରର କଳାଦାଗ ସହିତ କସ୍ତୁରୀର ଉପମା, ନକ୍ଷତ୍ରପୁଞ୍ଜି ସହିତ ମଲ୍ଲୀମାଳ, ଚନ୍ଦ୍ରକିରଣ ସହିତ ଚନ୍ଦନ ଓ ମଣିର ଉପମା ହୋଇଥିବାରୁ ଏହା ଉପମାଳଙ୍କାର ।

ଖ) ବୃକ୍ଷତତି ତପିପନ୍ତୀ ତହିଁ ଏକାକୃତି
ବଲ୍‌କଳ ପିଧାନ କରି ଜଟାଧରି ଥାନ୍ତି ।
ବେଦିସାର ମୂଳ ସହ ସୁମନ ଫଳଦ
ବାସକୃତି ପର୍ଣ୍ଣଚୟ ଅତି ସ୍ଥିର ହୃଦ । (ବୈ.ବି)

(ଗ) ବେଳାକୁ ନ ଲଂଘେ ସତ୍ୟେ ପାରାବାର ଯଥା ତାକୁ ନ ଲଙ୍ଘିଲା
ବିଷ ଭକ୍ଷଣ ବିରୂପାକ୍ଷ ପରାୟେ ମୂକେ ସମ୍ମତ ଦିଶିଲା
ବଡ଼ ସନ୍ତୋଷ ରାଣୀ
ବିଞ୍ଚ ଶ୍ରୀରାମେ ଡକାଇ ଆଣି । (ବୈ.ବି.)

ଏଠାରେ 'ପାରାବାର' ଏବଂ 'ବିରୁପାକ୍ଷ' ଉପମାନ । 'ରାମଚନ୍ଦ୍ର' ଉପମେୟ । 'ଯଥା', 'ପରାୟେ' ଉପମାବାଚକ ଶବ୍ଦ । 'ଲଂଘନ କରିବା', 'ବିଷଭକ୍ଷଣ' ସାଧାରଣ ଧର୍ମ । ଏହି ଉଦାହରଣରେ ସମସ୍ତ ଉଲ୍ଲେଖ ଥିବାରୁ ଏହା ପୂର୍ଣ୍ଣୋପମା ହେଲା ।

(ଘ) ''କଳାନିଧି ସନ୍ନିଧି ପ୍ରକାଶ କି ବିଷୟେ
କୁମୁଦିନୀ ପାଶେ ଜଳେ ପ୍ରତିବିମ୍ବ ପ୍ରାୟେ ଯେ ।

ଏ ବନ ଗମନ ମୋହ ଭାଗ୍ୟ ରାଶି
ଯୋଗକୁ ହୋଇଛି କିମ୍ବା ସନ୍ନିକଟ ଆସି ଯେ ।

(କୋଟିବ୍ରହ୍ମାଣ୍ଡସୁନ୍ଦରୀ-୧୫ଶ ଛାନ୍ଦ)

**ଅଦ୍ଭୁତୋପମା**– ଯେଉଁଠାରେ କୌଣସି ଉପମେୟର ବର୍ଣ୍ଣନା ନଥାଇ କେବଳ ଉପମାନର ବର୍ଣ୍ଣନା କରାଯାଇଥାଏ, ସେଠାରେ ଅଦ୍ଭୁତରୂପକ ଅଳଙ୍କାର ହୁଏ ।

(କ) ସର୍ବମତରେ ସନମତ ଏମନ୍ତ ପର୍ବତ ପରେ ଜାତଲତା
ଲତାରୁ ଏବେ ପର୍ବତ ଜାତ ହେଲା ଗ୍ରହିଁ କମ୍ପିବେ ଉର୍ଦ୍ଧ୍ୱରେତା ।
ହାହା ଶୋଭିତା । ଦେଖି କେ ନୋହିବ ଲୋଭିତା
କରୀପରେ ହରି ହରି କରୀ ଚଢ଼ାଇଲା ଏବେ ବନିତା ।

(ପ୍ରେମସୁଧାନିଧି)

(ଖ) ଚନ୍ଦ୍ରମାରୁ ପଦ୍ମ ଜନମ କରିଣ
ସ୍ୱଭାବେ ବହିଛି ସୁଷମା
କ୍ଷଣେକ୍ଷଣେ କଥା ପ୍ରସଙ୍ଗେ କ୍ରମରୁ
ଜାତକରେ ଏତେ ଚନ୍ଦ୍ରମା, ଘେନ ଏକଥା ।
ମାନ ତ ଅଦୃଷ୍ଟି ଅଶ୍ରୁତି
ଚନ୍ଦ୍ରକମଳ ଜଳୁଁ ଜାତ ବୋଲିଣ
ପୁରାଣମାନେ କହିଛନ୍ତି । (ପ୍ରେମସୁଧାନିଧି)

ଅର୍ଥାତ୍ ଚନ୍ଦ୍ର ଓ କମଳ ଜଳରୁ ଜାତ ବୋଲି ପୁରାଣରେ ବର୍ଣ୍ଣିତ ହୋଇଛି । କିନ୍ତୁ ଚନ୍ଦ୍ରରୁ ପଦ୍ମ ଓ ପଦ୍ମରୁ ଚନ୍ଦ୍ର ଜାତହେବା ଅଦ୍ଭୁତ ବିଷୟ । ତେଣୁ ଏଠାରେ ଅଦ୍ଭୁତ ଉପମାଳଙ୍କାର ହେଲା ।

(ଗ) ଅର୍ଦ୍ଧଚନ୍ଦ୍ରକୋଳେ ସେ ପୂର୍ଣ୍ଣ ଚନ୍ଦ୍ରମା କୋଳେ ବାଳ ମିହିର
ଏକାବେଳକେ ସେ ଉଦୟ କରାଇ ଅନଙ୍ଗ ଅମଙ୍ଗଳ କର
ବିପରୀତ ଏ, ସମସ୍ତ ଲୋକେ ଦେଖିବାର
ପୟୋଧର ସିନା ଘୋଡାଇ ଅମ୍ବର ଢାଙ୍କେ ପୟୋଧର । (ପ୍ରେ.ସୁ.୪/୧୭)

## ଲୁପ୍ତୋପମା :-

"ଲୁପ୍ତୋ ସାମାନ୍ୟ ଧର୍ମୋଦେରେକସ୍ୟ ଯଦି ବା ଦ୍ୱୟୋଃ
ତ୍ରୟାଣାଂ ବାନୁପାଦାନେ... ।" (ସାହିତ୍ୟ ଦର୍ପଣ-୧୦/୧୭-୧୮)

ଯେଉଁଠାରେ ଉପମେୟ, ଉପମାନ, ଉପମାବାଚକ ଶବ୍ଦ ଓ ସାଧାରଣଧର୍ମ ମଧ୍ୟରୁ ଏକ ବା ଏକାଧିକର ଲୁପ୍ତି ଘଟିଥାଏ, ସେଠାରେ ଲୁପ୍ତୋପମା ହୋଇଥାଏ ।

ଯଥା-

(କ) ଗୋଟିଏ ରତି ବହିଛି ଗୋଟିଏ ଦେହୀ
ଶୁଣିଲା ନଥିଲା ଦେଖିଥିବା କେ ନାହିଁ । (ରସଲେଖା)

ଏଠାରେ ଉପମାବାଚକ ଶବ୍ଦ 'ପରି' ଉହ୍ୟଥିବାରୁ ଲୁପ୍ତୋପମା ଅଳଙ୍କାର ହୋଇଛି ।

(ଖ) ସେ ଖଞ୍ଜନ ରଞ୍ଜନ ସେ ପ୍ରତିମା ପିତୁଳା
ସାରଗାରଗୁଣା ଅଠାକାଠିରେ ଲାଖିଲା । (କୋ.ବ୍ର.ସୁ-୧୯ତମ ଛନ୍ଦ)

(ଗ) ବାର୍ତ୍ତାମୋର ନେଇ 'ତା' ବାର୍ତ୍ତା ଆଣିଲେ
ଭେଟ ହେଲା ଦିନ ପ୍ରିୟାର
ବଢ଼ାଇ ତୋ ରଖି ଘନକେଶୀ ବୋଲି
ନିତ୍ୟେ ଡାକିବି ସତ୍ୟ ମୋର । (ବୈ.ବି)

## ମାଳୋପମା -

"ମାଳୋପମା ଯଦେକସ୍ୟୋପମାନଂ ବହୁ ଦୃଶ୍ୟତେ ।"
(ସାହିତ୍ୟ ଦର୍ପଣ-୧୦/୨୭)

ଗୋଟିରେ ଉପମାନ ପାଇଁ ଅନେକ ଉପମାନ ଦେଖାଗଲେ ମାଳୋପମା କୁହାଯାଏ । ଯଥା-

(କ) 'ସୁବର୍ଣ୍ଣଚମ୍ପାସମା କୁଙ୍କୁମ କେତକୀ ନିଶାଷଣ କୁସୁମ
ଗଉରୀ ହରିତାଳ ପ୍ରତିମ କାନ୍ତି ସଦୃଶୀ ଯେ
ସଜଳଜଳଧର କଜ୍ଜଳ ଭୃଙ୍ଗ ତମାଳ କାଳିନ୍ଦୀ ଦଳ
ବହହୀପୁଚ୍ଛ ଋମର ନୀଳମଣି ସୁକେଶୀ ଯେ । (ସୁ.ପ.୬ଷ)

ଯଜ୍ଞଶାଳରେ ଗୋଷ୍ଠଙ୍କ ଦୈତ୍ୟ ପଶି ସତ୍ୟଭାମାଙ୍କ ରୂପଦେଖି ମୁଗ୍ଧ ହୋଇଯାଏ । ହେମାଙ୍ଗିନୀ ସତ୍ୟଭାମା ଏଠାରେ ଉପମେୟ । ତାଙ୍କର ଅଙ୍ଗକାନ୍ତି ପାଇଁ ପୂର୍ଣ୍ଣଚମ୍ପା, ବିଜୁଳି,

କୁଙ୍କୁମ, କେତକୀ, ଷଣପୁଷ୍ପ, ଗୋରୋଚନା ଏବଂ କୃଷ୍ଣକେଶ ପାଇଁ ସଜଳମେଘ, କଜ୍ଜଳ, ଭୃଙ୍ଗ, ତମାଳ । କାଳିନ୍ଦୀଜଳ, ମୟୂରପୁଚ୍ଛଚମର ଓ ନୀଳମଣିମାଉପମାନ ପ୍ରୟୋଗ କରାଯାଇଛି ।

(ଖ) ମାନସରେ ହେଲେ ସିନା ମରାଳରସିବ
ମେଘ ନୀର ହେଲେ ସିନା ଚାତକ ତୋଷିବ
ମନେ ମନ ହିଁ ମିଶିବ
ଚନ୍ଦ୍ର ହେଲେ ସିନା ଚକୋରକୁ ଉଲ୍ଲସିବ । (ଲା.ବ.୧୭/୧୨)

ଏଠାରେ ନାୟିକାର ମନ ହେଉଛି ଉପମେୟ । ଏହି ଗୋଟିଏ ମାତ୍ର ଉପମେୟ ସହିତ 'ମାନସରେ ହଂସ ରସିବା, ' ମେଘ ନୀରରେ ଚାତକ ତୋଷ ହେବା' ଏବଂ 'ଚନ୍ଦ୍ରକୁ ଦେଖି ଚକ୍ରବାକ ଉଲ୍ଲସିବା'-ଏହିପରି ତିନିଗୋଟି ଉପମାନ ରହିଥିବାରୁ ଏହା ମାଳୋପମା ଅଳଙ୍କାର ।

(ଗ) ନୀଳ ଚିକ୍କଣ କୁଟିଳ କୋମଳ । ପ୍ରଳୟ ଗହଳ ସୁଗନ୍ଧ ସ୍ଥୂଳ ।
ଏମନ୍ତ କେଶେ କି ତୁଲ୍ୟ ସମ୍ପାଦି । ଏତେଗୁଣେ ଅଛି କାଳିନ୍ଦୀ ଦୀନ ଯେ ।
ରମ୍ୟ ଭୟଙ୍କର ସ୍ଥାନ ଯେ,
ଘେନି ଉରୁଚରୁ ପାଇବି ଭାବିଟି ଦେଖାଇ ଦେଇ ପୁଳିନ୍ଦ ଯେ ।
(କୋଟିବ୍ରହ୍ମାଣ୍ଡସୁନ୍ଦରୀ-୭ମ ଛାନ୍ଦ)

**ତୁଲ୍ୟଯୋଗିତା :**

"ପଦାର୍ଥାନାଂ ପ୍ରସ୍ତୁତାନମନ୍ୟେଷା ବା ଯଦା ଭବେତ୍
ଏକଧର୍ମାଭିସମ୍ବନ୍ଧଃ ସ୍ୟାତ୍ତଦା ତୁଲ୍ୟଯୋଗିତା ।" (ସାହିତ୍ୟ ଦର୍ପଣ-୧୦/୪୭)

ପ୍ରକୃତି ବସ୍ତୁମାନଙ୍କର କିମ୍ବା ଅପ୍ରକୃତ ବସ୍ତୁମାନଙ୍କୁ ଏକମାତ୍ର ଧର୍ମ ସହିତ ସଂଯୁକ୍ତ କରାଗଲେ ତୁଲ୍ୟଯୋଗିତା ଅଳଙ୍କାର ହୁଏ ।

ଯଥା- ଆମ୍ଭ ମନୋହାରୀ ଅପସରୀ ବାରକାମୀ କାମିନୀତ ପ୍ରମାଣ
ଏହାରେ ଇକ୍ଷଣ କ୍ଷଣ ପତନର ଆମ୍ଭଙ୍କୁ ତେଜନ୍ତି ନ ପୁଣ ।
ତାଙ୍କ ସ୍ୱଭାବ, ଭାବର ସେ ବଶ ନୁହନ୍ତି
ଭ୍ରମର ପୀରତି ରତିଦା କୁମଦ୍ ବିଧୁ ଦେଖିଲେ ବିକଶନ୍ତି । (ର.ହା.ବ.୧୫/୨)

**ଅନନ୍ୱୟ-**

"ଉପମାନୋପମେୟତ୍ୱମେକସ୍ୟୈବତ୍ୱନନ୍ୱୟଃ ।"
(ସାହିତ୍ୟ ଦର୍ପଣ-୧୦/୨୬)

ଯେଉଁ ପଦରେ ଗୋଟିଏ ବ୍ୟକ୍ତି ବା ପଦାର୍ଥକୁ ଉଭୟ ଉପମେୟ ଓ ଉପମାନ ରୂପେ ତର୍କଣା କରାଯାଏ, ସେଠାରେ ଅନନ୍ୱୟ ଅଳଂକାର ହୁଏ ।

ଉଦାହରଣ-

ତୋତେ ତୁ ପଟାନ୍ତରରେ
ମୋର ଅଶେଷ ତପ ପୁଣ୍ୟନାରୀ ସ୍ୱରୂପ
ହୋଇଛୁ ରାମାବରରେ । (ଲାବଣ୍ୟବତୀ)

ଏଠାରେ ଲାବଣ୍ୟବତୀ କେବଳ ନିଜ ସହ ନିଜେ ହିଁ ତୁଳନୀୟ ବୋଲି ବିଚାର କରାଯିବାରୁ ଅନନ୍ୱୟ ଅଳଂକାର ହେଲା ।

**ବକ୍ରୋକ୍ତି -**

''ଅନ୍ୟସ୍ୟାନ୍ୟାର୍ଥକଂ ବାକ୍ୟମନ୍ୟଥା ଯୋଜୟେଦ୍ୟଦି
ଅନ୍ୟଃ ଶ୍ଳେଷେଣ କାକ୍ୱା ବା ସା ବକ୍ରୋକ୍ତିସ୍ତତୋ ଦ୍ୱିଧା ।''

(ସାହିତ୍ୟ ଦର୍ପଣ-୧୦/୨)

ବକ୍ତାର ଅଭିପ୍ରେତ ବାକ୍ୟ ଯଦି ଶ୍ରୋତା ପାଇଁ ଭିନ୍ନାର୍ଥବୋଧକ ହୋଇଥାଏ, ତେବେ ସେଠାରେ ବକ୍ରୋକ୍ତି ଅଳଙ୍କାର ହୁଏ । ବକ୍ରୋକ୍ତି ଦ୍ୱିବିଧ-

୧) ଶ୍ଳେଷ ବକ୍ରୋକ୍ତି

୨) କାକୁ ବକ୍ରୋକ୍ତି

**୧) ଶ୍ଳେଷ ବକ୍ରୋକ୍ତି -** ଯେଉଁଠାରେ ବକ୍ତାର ଅଭିପ୍ରେତ ବାକ୍ୟକୁ ଶ୍ରୋତା ଭିନ୍ନ ଅର୍ଥରେ ଗ୍ରହଣ କରେ, ସେଠାରେ ଶ୍ଳେଷ ବକ୍ରୋକ୍ତି ହୁଏ ।

ଉଦାହରଣ-

କ) କହେ ଏକ ନାରୀ ବିଶେଷେ ସୁନାରୀ ଏ ଦେଶରେ ବାସ କରିଛି
ଭୃଙ୍ଗ କି ପୁରୁଷ ଚଞ୍ଚଳ ମାନସ ଏଥି ନାହିଁ ପୁଣି ଯାଉଛି । (ଲାବଣ୍ୟବତୀ)

ଏହାର ଉଦିଷ୍ଟ ଅର୍ଥ- ଜଣେ ସହଚରୀ ପ୍ରକାଶ କରିଛି ଯେ ଏ ସ୍ଥାନରେ ବିଶେଷ ସଂଖ୍ୟାରେ ସୁନାରୀ ବୃକ୍ଷ ଅଛି, ସେଥିପାଇଁ ଭ୍ରମର ଏଠାକୁ ଆସିବାକୁ ବ୍ୟଗ୍ର ହେଉଛି ।

ଶ୍ଳେଷ ଅର୍ଥରେ- ଏ ଦେଶରେ ଜଣେ ବିଶିଷ୍ଟ ସୁନାରୀ ଅର୍ଥାତ୍ ଜଣେ ଉତ୍ତମ ନାରୀ ବାସ କରୁଅଛି । ତେଣୁ 'ଭୃଙ୍ଗ କି ପୁରୁଷ' ଅର୍ଥାତ୍ ଲମ୍ପଟ ପୁରୁଷ ତା ନିକଟକୁ ଆସିବାପାଇଁ ଚଞ୍ଚଳତା ପ୍ରକାଶ କରୁଛନ୍ତି ।

ଖ) ବକ୍ରୋକ୍ତି ପ୍ରକାଶ କରି ଚତୁରୀ ରତନ
ବିସ୍ତାରିଛି ନୃତ୍ୟଶେଷ କେକି କହ ମାନ ଯେ
ବଲ୍ଲଭ ତହିଁ ମଧୁର ଧ୍ୱନିକି ରଚନା
ବେଣୀ ନାଚିଲେ ନାଚନ୍ତା ଉତ୍‌ଫୁଲ ସୁମନ ଯେ । (ବୈ.ବି)

ଗ) ବସନ କଷାୟ ଭିକ୍ଷା ଆଣିଦିଅ ଥାଳରେ ବୋଇଲା
ବସ କ୍ଷଣେ ଈଶ ଆସନ୍ତୁ ଏ ଭାଷ ଭାଷିଣ ମହିଳା
ବିଂଶପାଣି ଭଣି ଈଶାନ କଲେଣି ଏ ବନେ କି ବସା ?
ବୈଦେହୀ କହି ନ ବୁଝ କି ସେ ନୋହି ଧବରେ ଏ ଭାଷା ।
ବୋଲେ ଲଙ୍କପତି ଏଥି ଗତାଗତି କରନ୍ତି ବୃକ୍ଷ କି ?
ବଲ୍ଲଭେ କହଇ ରାଘବଟି ସେହି ଭାଷିତ ଜାନକୀ ।
ବିଚିତ୍ରବାଣୀ ଶୁଣିଲି ଦୈତ୍ୟଭଣି ତୁହିତ ମାନୁଷୀ
ବାରିଧି ବାସୀ ମତ୍ସ୍ୟ ଏ ସ୍ଥଳେ ଆସି ତୋ ସଙ୍ଗେ ବିଳସି । (ବୈ.ବି-୨୪ଛାନ୍ଦ)

(ଘ) ''ପୁନାଗ ନଗରୀ ଦେଖାରେ ବୋଲି କେ
ଦେଖାଇ ଅଙ୍ଗୁଳିରେ କରି
ଏହି ତ ତରୁ ତରୁଣ ଶ୍ରେଷ୍ଠ ନୋହେ
ତରୁଣ ରତନ ପଉରି
ମଲ୍ଲୀ ବୋଲନ୍ତେ । କାହିଁକି ସେ ବୋଲି ହସଇ
ବାଧବୀ କି ଋହିଁ ମାଧବୀ ବୋଇଲେ ଏହି ମଧୁପୁର ଭାଷଇ ।''
(କୋଟିବ୍ରହ୍ମାଣ୍ଡସୁନ୍ଦରୀ-୧୦ମ ଛାନ୍ଦ)

**୨) କାକୁ ବକ୍ରୋକ୍ତି :-** କଣ୍ଠସ୍ୱର ପରିବର୍ତ୍ତନ କରି ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରାଗଲେ ତାହାକୁ କାକୁ ବକ୍ରୋକ୍ତି କୁହାଯିବ । ଉଦାହରଣ-

କହିଲା,''ଦକ୍ଷିଣ ପବନ ବହିଲା
ହିମରଜ କରି କ୍ଷେପଣ
ଏ ଉତ୍ତାରୁ ଘନ ରସଯୁକ୍ତ ହୋଇ
ନ ବହିବ କି ସମୀରଣ ?'' (କୋ.ବ୍ର.ସୁ)

**ସକାର ତ୍ରୟ-**

ସାଂଶ ଶଶୀ ଶିଷ୍ଟ ଶ୍ରୀଶେଷା ଶେଷ
ସ୍ୱଂଶ ଶଶୀ ଶିଷ୍ଟ ଶୀର୍ଶେଶ ଶ୍ରୀଷ । (ଚି.କା.ବ)

**ତ୍ରିବିଧ ଅଳଙ୍କାର (ପ୍ରାନ୍ତ ଯମକ, ଶୃଙ୍ଖଳା, ଗୋମୂତ୍ର ଛନ୍ଦ) ।**

ଭେଟେକବି ଗୀତ କରି ତ୍ରିବିଧିରେ
ପ୍ରାନ୍ତଯମକ, ଶୃଙ୍ଖଳା ଗୋମୂତ୍ରରେ ।
ଦ ର ଚ ୟ ହ ର ଧୀ ର ପ୍ର ଶଂ ସା ର
ସା ର ସା ୟ କ ର କ ର ଏ ସଂ ସା ର
ସା ର ସା ର ଜି ତ ଗ ତି ହେ କୁ ମା ର
ମା ର ପ ର ସ ତ ଅ ତି ସୁ କୁ ମା ର । (ଲାବଣ୍ୟବତୀ/୭/୭-୯)

ଏହା ବନ୍ଦୀର ଚନ୍ଦ୍ରଭାନୁ ପ୍ରତି ପ୍ରଶସ୍ତି ଗୀତ । ଏଠାରେ ୮ମ ଓ ୯ମ ପଦରେ ପ୍ରାନ୍ତ ଯମକ, ଶୃଙ୍ଖଳା ଓ ଗୋମୂତ୍ର ରଖା ଯାଇଛି । ଗୋମୂତ୍ରର ନିୟମ ହେଉଛି ପ୍ରଥମ ବାକ୍ୟର ପ୍ରଥମ ବର୍ଣ୍ଣ ସହିତ ଦ୍ୱିତୀୟ ବାକ୍ୟର ଦ୍ୱିତୀୟ ବର୍ଣ୍ଣ, ପ୍ରଥମ ବାକ୍ୟର ତୃତୀୟ ସହିତ ତୃତୀୟ ବାକ୍ୟର ଚତୁର୍ଥ ବର୍ଣ୍ଣ ଏହି ନିୟମରେ ପାଠକଲେ ପ୍ରଥମ ବାକ୍ୟର ସମସ୍ତ ଅକ୍ଷର ମିଳିଥାଏ । ଏବଂ ଦ୍ୱିତୀୟ ବାକ୍ୟର ପାଠ ସମୟରେ ଦ୍ୱିତୀୟ ବାକ୍ୟର ପ୍ରଥମ ବର୍ଣ୍ଣ ସହିତ ପ୍ରଥମ ବାକ୍ୟର୍ ଦ୍ୱିତୀୟ ବର୍ଣ୍ଣ ଏହି କ୍ରମରେ ତଳ ଉପର କରି ପଢ଼ିବାକୁ ହେବ ।

ପ୍ରଥମ ଧାଡ଼ିର ଅର୍ଥ- ଭୟ ସମୂହକୁ ତୁମେ ହରଣ କରିପାର, ତୁମ୍ଭେ ପଣ୍ଡିତ ।

ଦ୍ୱିତୀୟ ଧାଡ଼ିର ଅର୍ଥ- ଏ ସଂସାରରେ ତୁମ୍ଭେ ସାର ଅଟ । ତୁମ୍ଭେ ସାୟକ ହସ୍ତ ଅଟ ।

ତୃତୀୟ ଧାଡ଼ିର ଅର୍ଥ- ତୁମେ ହଂସର ଗତିକୁ ଜିଣିଛ । ତୁମ୍ଭେ ଅତ୍ୟନ୍ତ ସୁନ୍ଦର ଅଟ ।

ଚତୁର୍ଥ ଧାଡ଼ିର ଅର୍ଥ- ତୁମ୍ଭେ କନ୍ଦର୍ପ ଅପେକ୍ଷା ସୁନ୍ଦରତର ।

**ପ୍ରତୀପ -**

"ପ୍ରସିଦ୍ଧସ୍ୟୋପମାନସ୍ୟୋପମେୟତ୍ୱ କଳ୍ପନମ୍
ନିଷ୍ଫଳତ୍ୱାଭିଧାନଂ ବା ପ୍ରତୀପମିତି କଥ୍ୟତେ । (ସାହିତ୍ୟ ଦର୍ପଣ)

ଅର୍ଥାତ୍ ଉପମାନର ଉପମେୟତା ବା ନିଷ୍ଫଳତା ଉକ୍ତ ହେଲେ ପ୍ରତୀପ ଅଳଙ୍କାର ହୁଏ । ଯଥା-

କ) ନୀରଦ କୁନ୍ତଳ ପରାୟ ଭ୍ରମର ଗତି ପରାୟ ଦ୍ୱିରଦ
ନୟନ ପରାୟ କୁରଙ୍ଗ କାହିଁକି କରିତରଙ୍ଗ ବିନୋଦ (ଲାବଣ୍ୟବତୀ-୩୬/୧୧)

ଏଠାରେ କୁନ୍ତଳ (କେଶ) ଉପମେୟ, ଭ୍ରମର ଉପମାନ ଏହା ଚିର ପ୍ରସିଦ୍ଧ । କିନ୍ତୁ ଏଠାରେ ଭ୍ରମର ଉପମେୟ ଓ କେଶ ଉପମାନ ରୂପେ ବର୍ଣ୍ଣିତ ହୋଇଅଛି । ସେହିପରି ଗଜଗତି ପ୍ରଭୃତି ଉପମାନ ଉପମେୟ ରୂପେ ବର୍ଣ୍ଣିତ ହୋଇଅଛି । ତେଣୁ ଏଠାରେ ପ୍ରତୀପ ଅଳଂକାର ହୋଇଛି ।

ଖ) 'ବିନ୍ଦୁ ସମୁଦ୍ର ମନ୍ଥନ ଚନ୍ଦ୍ର ଜନମ ଯେଉଁକାଳେ
ବିହୀନ କ୍ଷୀଣ କଳଙ୍କ ଜାଣ ସେ ହୋଇଥିଲେ ।

ବଦନେ ଦାନକୀରେ ସମାନ ମନ ଜାଣିଟି ବିହି
ବିମ୍ବ ବେଷ୍ଟନ ନୋହିଲା ବର୍ଣ୍ଣ ଭାବେଟି କାଟିଦେଇ ।' (ବୈ.ବି)

ଏହି ପଦରେ ବିଧୀ ଚନ୍ଦ୍ର ସୀତା ମୁଖ ସମାନ ନୁହେଁ । ଅତଏବ ବୃଥାଭାବି ଅକ୍ଷର କାଟିଲାପରି କାଟିଦେଇ ପରିବେଶ ଛଳରେ କୁଣ୍ଡଳୀ (ମୁଣ୍ଡଳା) ଦିଅନ୍ତି ବୋଲି କବି କହିଛନ୍ତି । ସୀତା ମୁଖ ସତ୍ତ୍ୱେ ଚନ୍ଦ୍ର ନିରର୍ଥକ - ଏହା ବ୍ୟକ୍ତ ହେଉଥିବ ।

ଉଦାହରଣ-

ଗ) ପାଞ୍ଚେ ମନ୍ଦର କୁଚ ବଢ଼ିବାରେ
କିମ୍ପା ବୁଡ଼ି ନମଲି ପାରାବାରେ
କମ୍ବୁ କଣ୍ଠ ଦେଖି ଅତି ଆର୍ତ୍ତିରୁ
ସମନୁହେଁ ବୋଲି ଡାକେ ପ୍ରାତଃରୁ । (ଲାବଣ୍ୟବତୀ)

(ଘ) ସୁକୁମାରୀ ସୁକୁନ୍ତଳ ନୀଳ କୁଟିଳ ଗହଳ
ଚିକ୍‌କଣ ଲମ୍ବ ବିବିଧ ବାସ-ନିବାସ
ସୁଦୃଢ଼ ମୂଢ଼ ବରହୀ ପୁଚ୍ଛଲକ୍ଷ୍ୟ ହେବାପାଇଁ
ଗଲ୍‌ତଥା ପାଇଲା ଯାଇ ଲୋକେଶ ପାଶ
ସେ ଚିହ୍ନ ଚନ୍ଦ୍ରିକା ପ୍ରମାଣ
ସଭୟ ହୋଇଲେ ରହିଁ ଉପମାଗଣ । (ସୁଭଦ୍ରାପରିଣୟ)

**ଅଦ୍ଭୁତରୂପକ:** ଯେଉଁଠାରେ ଉପମେୟର ବର୍ଣ୍ଣନା ନ ଥାଇ ଉପମାନର ବର୍ଣ୍ଣନା କରାଯାଇଥାଏ; ସେଠାରେ ଅଦ୍ଭୁତ ରୂପକ ଅଳଙ୍କାର ହୁଏ । ଯଥା-

ନବ ବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଷୋଳଜାତି ଫୁଲ
ତିଳପୁଷ୍ପ କୁନ୍ଦ ଝରି କମଳ
କୁମୁଦ ବଧୂଲୀ ପାଟଳୀ ନିଆଳୀ ଚମ୍ପା ଶିରୀଷ ଉତ୍ପଳ
ରେ ସୁନ୍ଦରୀ, ଶୋଣ କୁସୁମ ଅଶୋକ ମନ୍ଦାର
ଭୋଖି ଭୃଙ୍ଗ ମୁଁ ଚୁମ୍ବନେ ଆତୁର
କେତକୀ ବରନା ନାମ ଅଙ୍ଗୀକାର କଲେ ସରିଲାଟି ମୋର ରେ ସୁନ୍ଦରୀ ।
(ଲାବଣ୍ୟବତୀ, ୧୯/୧୪)

**୬୦. ବିଦ୍ୟାଭାସ** - ନିଷେଧ ଅଭିପ୍ରାୟରେ ଅନିଷ୍ଟ ସୂଚନାର ବିଧାନକୁ ବିଦ୍ୟାଭାସ କୁହାଯାଏ ।

'କେ ବୋଇଲା ମୋହପାଇଁ
ନ ଭାଳିବ ସାରିବ ବେଳକାଳେ ନିତି ।

ତୁମ୍ଭେ ସର୍ବଶୁଭେ ଥିଲେ
ସବୁ ଅଛି ନ ମିଳିବେ କେତେ ଯୁବତୀ ।
କେ ସଖୀ, ଦ୍ୱାରାରେ ଏମନ୍ତ କୁହାଇ !
ବାହୁଡ଼ି ଆସି ଯାହାକୁ ବିଭାହେବ
ଏ ରୂପେ ନୋହିବ ଅସ୍ନେହୀ ।' (ଲାବଣ୍ୟବତୀ- ୨୩/୩୦)

ଏଠାରେ ନାୟିକା ପ୍ରବାସୋନ୍ମୁଖ ନାୟକକୁ 'ମୋହ ପାଇଁ ନଭାଳିବ' ଇତ୍ୟାଦି କହି ପ୍ରବାସ ଯାତ୍ରାକୁ ସମର୍ଥନ କରୁଥିଲେ ହେଁ 'ବାହୁଡ଼ି ଯାହାକୁ ବିଭାହେବ' ଇତ୍ୟାଦି କହିବାଦ୍ୱାରା ତୁମ୍ଭେ ଗଲେ ମୁଁ ନିଶ୍ଚୟ ମରିବି, ଏହି ଅର୍ଥ ପ୍ରକାଶ କରୁଛି । ଏଣୁ ଯାଅ ବୋଲି ନ କହି ଯାଅନାହିଁ ବୋଲି କହୁଛି । ଏଣୁ ଏହା ବିଦ୍ୟାଭାସ ଅଳଂକାର ଅଟେ ।

**ଦତ୍ତାକ୍ଷର**-ବାକ୍ୟରେ ଏକ ବା ଏକାଧିକ ଅକ୍ଷର ଯୁକ୍ତହୋଇ ଅର୍ଥାଗମ ଘଟିଲେ ଦତ୍ତାକ୍ଷର ହୁଏ । ଯଥା-

ଜଗମୋହି ଚୂଡ଼ା ସୁମେ କେବେ ନ କରଇ
ବନପ୍ରିୟ ସାଳେ ତାଙ୍କୁ କର୍ଣ୍ଣ ବୁଜୁଥାଇ
ନ ଅନାଇ ଚନ୍ଦ୍ରମାକୁ କାମେ ଯେଣୁ ତ୍ରାସେ
ଏହିପରି କହୁଥାଇ ସ୍ୱରଭଙ୍ଗ ବଶେ । (ପ୍ରେ.ସୁ)

ଜଗତମୋହୀ- ଜଗତ ମୋହିନୀ

ଚୂଡ଼ା-ଚୂଡ଼ାକୁ

ସୁମେ-କୁସୁମେ

ସାଳେ-ରସାଳେ

**ଚ୍ୟୁତାକ୍ଷର :-** ଏଠାରେ କୌଣସି ଚରଣର ଏକ ବା ଏକାଧିକ ଅକ୍ଷର ଲୋପ ଘଟି ଅର୍ଥାଗମ ହୋଇଥାଏ ।

ଯୌବନେ ପୁଷ୍ପ ବିକାଶେ ବିଭ୍ରମର ଘେନି
ନିପୀଡ଼ିତ ବିରହରେ ହେଉଥାଇ ସହୀ
ଅସୁରେ ପୂଜା ବିହିତ ତାହା ରକ୍ଷା ପାଇଁ
କରୁଥାଇ ବାସରମାନଙ୍କେ ପ୍ରାଣସହୀ । (ପ୍ରେ.ସୁ)

ବିଭ୍ରମର- ଭ୍ରମର

ନିପୀଡ଼ିତ-ପୀଡ଼ିତ

ଅସୁରେ-ସୁରେ

ଅର୍ଥାତ୍ ଆମ୍ବସଖୀ ଏହି ଯୁବାକଳରେ ଋତୁ ସମୟରେ ଭ୍ରମରମାନଙ୍କୁ ଚାହିଁ କ୍ଳେଶଯୁକ୍ତ ହୋଇ ଉଚିତ ମନେକରି ପ୍ରତିଦିନ ତାହାର ରକ୍ଷା ନିମିତ୍ତ ଦେବତାମାନଙ୍କୁ ବିଧିରେ ପୂଜା କରୁଥିଲା । ଏଠାରେ ଚ୍ୟୁତାକ୍ଷର ହୋଇଅଛି ।

**ଦତ୍ତଚ୍ୟୁତାକ୍ଷର :** ପଦ ମଧ୍ୟରେ ଏକ କିମ୍ବା ଏକାଧିକ ଅକ୍ଷର ଲୋପ ପାଇ ପୁଣି ଯୁକ୍ତ ହୋଇ ଅର୍ଥାଗମ ଘଟିଲେ ଦତ୍ତଚ୍ୟୁତାକ୍ଷର ହୁଏ ।

ମଦନ ବ୍ୟାକୁଳରୁ ଜୀଇଲା ଯୁବାବର
ବରଦ କାଳେ ବଞ୍ଚିବା ମହାଭାଗ୍ୟକର ।
ରକୂପାର ପ୍ରାୟେ ଦୁଃଖ ରାଶି ଘୋଟିଥିଲା
ତୁମ୍ଭ ଦେଲା ପ୍ରେମ ପତ୍ର ତୁମ୍ବଭବ ହେଲା । (ପ୍ରେ.ସୁ)

ଏଠାରେ 'ବରଦ' ଶବ୍ଦରୁ 'ବ' ଚ୍ୟୁତ ହୋଇ ସେହି ସ୍ଥାନରେ 'ଶ' ଲାଗିଲେ ହେବ 'ଶରଦ' 'ରକୂପାର' ଶବ୍ଦରୁ 'ର' ଲୋପପାଇଁ 'ଅ' ଦତ୍ତ ହେଲେ ହେବ 'ଅକୂପାର' । ଗୋଟିଏ ଅକ୍ଷର ଚ୍ୟୁତ ହୋଇ ସେହି ସ୍ଥାନରେ ଆଉ ଗୋଟିଏ ଅକ୍ଷର ଲାଗେ ।

**ପରିକର:**

"ବିଶେଷଣୈର୍ଯସାକୂତୈରୁକ୍ତିଃ ପରିକରସ୍ତୁ ସଃ ।"

(କାବ୍ୟପ୍ରକାଶ-୧୦/୧୦୮)

ଯେଉଁଠାରେ ବିଶେଷଣ ପଦ ପ୍ରୟୋଗରେ ଏକ ବିଶେଷ ଅଭିପ୍ରାୟ ଥାଏ, ସେଠାରେ ପରିକର ଅଳଂକାର ହୁଏ ।

ଯଥା-

କ) 'ବଢ଼ାଇ ଦେଲେ ପୟର ଭାବଗ୍ରାହୀ ରଘୁବୀର ।' (ବୈ.ବି)

ଏଠାରେ ଭାବଗ୍ରାହୀ ବିଶେଷ ଅଭିପ୍ରାୟ ମୂଳକ ।

ଖ) 'ପାଞ୍ଚେ ମନ୍ଦର କୁଚ ବଢ଼ିବାରେ ।
କିମ୍ବା ବୁଡ଼ି ନ ମଲି ପାରାବାରେ ॥
ନାସାପୁଡ଼ା ଫୁଲିବାର ଅନାଇ ।
ଭାଷାବନ୍ଧେ ଶୁକମନ ମନାଇ ॥
ମୁଖେ ପ୍ରଚ୍ଛର ପରିଚ୍ଛର ପଣ ।
ସୁଖେ ଦର୍ପ ହନ୍ତୁଁ କଲା ଦର୍ପଣ ॥' (ଲା.ବ-୩ୟ ଛାନ୍ଦ/୨-୩)

**ସ୍ୱଭାବୋକ୍ତି-**

"ସ୍ୱଭାବୋକ୍ତିର୍ଦୁରୁହାର୍ଥ ସ୍ୱକ୍ରିୟା ରୂପବର୍ଣ୍ଣନମ୍ ।" (ସାହିତ୍ୟ ଦର୍ପଣ-୧୦/୯୨)

ଯେଉଁଠାରେ ଜାତି, ଦ୍ରବ୍ୟ, କ୍ରିୟା ଓ ଗୁଣ ପ୍ରାକୃତିକ ରୂପେ ଚମତ୍କାର ସହ ବର୍ଣ୍ଣିତ ହୋଇଥାଏ, ସେଠାରେ ସ୍ୱଭାବୋକ୍ତି ଅଳଂକାର ହୁଏ ।

(କ) ଦୃଷ୍ଟାନ୍ତ ସ୍ୱରୂପ,

'ପୃଥୁରୋମା ନୟନୀ ଉଦର ପୃଥୁତର
ଅତିଶୋଭା ନାଭି ଲେଉଟିଲା ପରକାର ।
ନିଷ୍ଠୁର ଦିଶିଲା ଓଷ୍ଠ ତୁଟିଯାଇ ରଙ୍ଗ ଯେ
ଘନ ଘନ ଜୃମ୍ଭା ପୁନପୁନ ମୋଡ଼େ ଅଙ୍ଗ ଯେ
ଶ୍ୟାଳମ କୋମଳ ଅଙ୍ଗୀ ସ୍ତନ ଅଗ୍ର ବହି
ହରଧର ଶୃଙ୍ଗେ ଜଳଧର ପରା ଶୋହି ଯେ ।

(ଲାବଣ୍ୟବତୀ, ୨ୟ ଛାନ୍ଦ/୩୮-୪୦)

(ଖ) ସରୋଜିନୀକି ସରୋଜିନୀ କରି ସେ କଳ୍ପନା କଲେ ମନେ ମନେ
ସୁବାହୁ ମୃଣାଳ ଉଦର ପଳାଶ କାନ୍ତି କେଶର ବିଦ୍ୟମାନ
ସୁମୁଖ । ଫୁଲ୍ଲାରବିନ୍ଦ ମଧୁପୂର୍ଣ୍ଣ
ସୌରଭ ପର ଚୀରକୁ ମଧୁକର ପନ୍ତି କୁଟିଳ ଉରୁସ୍ତନ । (ସୁ.ପ. ୪/୧୯)

**ବିଚିତ୍ର:** ଯାହା ଅଭିପ୍ରେତ, ତାହାର ସିଦ୍ଧି ସକାଶେ ସେହି ଅଭିପ୍ରେତ ବସ୍ତୁର ବିରୁଦ୍ଧ ବର୍ଣ୍ଣନା କରାଗଲେ ବିଚିତ୍ର ଅଳଙ୍କାର ହୁଏ । ଉଦାହରଣ-

ବିଶ୍ୱମ୍ଭରା ପତି ହୋଇ ସୀତା ବଲ୍ଲଭ ଉତ୍ସାହୀ
ପଶୁ ବୁଦ୍ଧି ଦେଖି ପେଶି ବନ ଯେ
ବିନାଶ ତାମସୀ ମତେ ରାମ ଲକ୍ଷ୍ମଣଙ୍କ ଅନ୍ତେ
ନରପତି ହୋଇଲେ ବହନ ଯେ । (ବୈ.ବି.୧୮/୧୭)

**ସମାଧି ଅଳଙ୍କାର-**

''ସମାଧିଃ ସୁକରେ କାର୍ଯ୍ୟେ ଦୈବାଦ୍‌ବସ୍ତ୍ୱନ୍ତରାଗମାତ୍ ।''

(ସାହିତ୍ୟ ଦର୍ପଣ-୧୦/୮୫)

''ଏକକାରଣଜନ୍ୟସ୍ୟ କାର୍ଯ୍ୟସ୍ୟାକସ୍ମିକକାରଣାନ୍ତରସମ
ବଧାନାହିତସୌକର୍ଯ୍ୟଂ ସମାଧିଃ ।'' (ରସଗଙ୍ଗାଧର-ପୃ.୬୬୪)

କାରଣ ଯୋଗେ ସିଦ୍ଧି ପ୍ରାୟ କାର୍ଯ୍ୟ ଆକସ୍ମିକ ଅନ୍ୟ କାରଣ ବଶତଃ ଯଦି ସହଜରେ ସାଧିତ ହୁଏ, ତେବେ ସମାଧି ଅଳଂକାର ହୋଇଥାଏ ।

ଯଥା-

'ଦିନେଟି ଉରୁଁ ଉର ଦୂର ହୋଇଲା ଅଚେତ ବଶରେ
ଝଟପରା ନିଦ୍ରା ଭାଜିଗଲା ମୋର ଢାଡ଼ର ତ୍ରାସରେ

ମନେ କଲି ପୁଷ୍ପବତୀ ହୋଇ ପାଶୁଁ ଗଲା କି ସଜନୀ
କି ଦଣ୍ଡ ପଡ଼ିଲା କି କାଳେ କି ରୂପେ ନେବି ଏ ରଜନୀ ।
ଲୋତ୍ରୁ ଶେଯରେ କୁଚେ ହସ୍ତ ପଡ଼ିଲା ହେଲି କି ଆବେଶ
ମୃତ୍ୟୁ ପାଇଥିଲା ପିଣ୍ଡରେ ପୁଣି କି ପରାଣ ପ୍ରବେଶ ।'

(ଲାବଣ୍ୟବତୀ, ୪୩/୧୨-୧୩)

**ତଦଗୁଣ ଅଳଂକାର -**

"ତଦ୍‌ଗୁଣଃ ସ୍ୱଗୁଣତ୍ୟାଗାଦତ୍ୟୁତ୍‌କୃଷ୍ଟ ଗୁଣଗ୍ରହଃ ।"(ସାହିତ୍ୟ ଦର୍ପଣ-୧୦/୯୦)

ଏକ ବସ୍ତୁ ନିଜର ସ୍ୱାଭାବିକ ଗୁଣ ଛାଡ଼ି ଅନ୍ୟ ଏକ ଗୁଣ ଗ୍ରହଣ କଲେ ତଦ୍‌ଗୁଣ ଅଳଂକାର ହୁଏ । ଯଥା-

'ଏକାଳେ ବଳୟ ଶୋଭୀ କୁବଳୟ ନୟନୀ ମଳୟ ସମୀରେ
ବଳେ ଭୋଗୀ ପ୍ରୀତି ତୁମ୍ଭଙ୍କୁ ବୋଲୁଛି ସେହି ଗୁଣ ବହ ମୋ ଠାରେ ।
ଆହେ ପବନ, ବୋଲାଅ ଜଗତ ଜୀବନ
ଏବେ ମୋ ଜୀବନ ନେବାକୁ ହୋଇଛ ମଥା ସନ୍ନିପାତେ ଜୀବନ ।'

(ଲାବଣ୍ୟବତୀ, ୧୨/୧୯)

**ଅତଦଗୁଣ ଅଳଂକାର -**

ନ୍ୟୂନଗୁଣ ବିଶିଷ୍ଟ ଅପ୍ରକୃତ ପଦାର୍ଥ ଉତ୍ତମ ଗୁଣ ବିଶିଷ୍ଟ ପ୍ରକୃତ ବସ୍ତୁର ଗୁଣ ଗ୍ରହଣ ପାଇଁ କାରଣ ଥିବାସତ୍ତ୍ୱେ ଯଦି ଗ୍ରହଣ ନକରେ ତେବେ ସେଠାରେ ଅତଦଗୁଣ ଅଳଙ୍କାର ହୁଏ ।

ଉଦାହରଣ-

ବିଷ୍ଣପଦୀ ଜଳ କେଡ଼େ ନିର୍ମଳ ଯୋଷା
ବାରିଦ ଆବିଳ ଜଳେ ଘତକ ଆଶା । (ବୈଦେହୀଶ ବିଳାସ)

**ଲେଶ ଅଳଙ୍କାର-**

"ହେତୁଶ୍ଚ ସୂକ୍ଷ୍ମଲେଶୋଽଥ ନାଳଙ୍କାରତୟା ମତଃ
ସମୁଦାୟାଭିଧାନସ୍ୟ ବକ୍ରୋକ୍ତିନଭିଧାନତଃ ।" (କାବ୍ୟାଳଙ୍କାର, ଭାମହ-୨/୬୮)

"ଗୁଣସ୍ୟାନିଷ୍ଟସାଧନତୟା ଦୋଷତ୍ୱେନ, ଦୋଷସ୍ୟେଷ୍ଟ
ସାଧନତୟା ଗୁଣତ୍ୱେନ ଚ ବର୍ଣ୍ଣନଂ ଲେଶଃ ।"(ରସଗଙ୍ଗାଧର-ପୃ.୬୯୦)

ଗୁଣ ଦୋଷ ରୂପରେ ବା ଦୋଷ ଗୁଣ ରୂପରେ ବର୍ଣ୍ଣିତ ହେଲେ ଲେଶ ଅଳଂକାର ହୋଇଥାଏ ।

ଯଥା-

'ଏକାଳେ ବଳୟଶୋଭୀ କୁବଳୟନୟନୀ ମଳୟ ସମୀରେ
ଛଳେ ଭୋଗୀ ପ୍ରୀତି ତୁମ୍ଭକୁ ବୋଲୁଛି ସେହି ଗୁଣ ବହ ମୋ ଠାରେ ।
ଆହେ ପବନ ! ବୋଲାଅ ଜଗତ ଜୀବନ
ଏବେ ମୋ ଜୀବନ ନେବାକୁ ହୋଉଛ ଯଥା ସନ୍ନିପାତେ ଜୀବନ ।'

(ଲାବଣ୍ୟବତୀ, ୧୨/୧୯)

ଏଠାରେ ପବନ ଜଗତ ଜୀବନ ରୂପେ ବର୍ଣ୍ଣିତ । କିନ୍ତୁ ଏହା ଲାବଣ୍ୟବତୀର ଜୀବନ ପ୍ରତି ବିପଦର କାରଣ ହୋଇଥିବାରୁ ଏଠାରେ ଲେଶ ଅଳଙ୍କାର ହେଲା ।

**ଭାବିକ ଅଳଙ୍କାରଃ-**

''ଅଦ୍‌ଭୁତସ୍ୟ ପଦାର୍ଥସ୍ୟ ଭୂତସ୍ୟାଥ ଭବିଷ୍ୟତଃ
ଯତ୍ ପ୍ରତ୍ୟକ୍ଷାୟମାଣତ୍ୱଂ ତଭାବିକମୁଦାହୃତମ୍ ।'' (ସାହିତ୍ୟ ଦର୍ପଣ-୧୦/୯୩)

ଅତୀତ ବା ଭବିଷ୍ୟତ କାର୍ଯ୍ୟ ପ୍ରତ୍ୟକ୍ଷ ହେଲାପରି ବର୍ଣ୍ଣିତ ହେଲେ ଭାବିକ ଅଳଙ୍କାର ହୋଇଥାଏ । ଉଦାହରଣ-

'ଏହି କାଳେ ଜାଳିକ ବୋଇଲା ନେତ୍ର ବୁଜ
ନେତ୍ର ବୁଜନ୍ତେ ରଚିଲା ସେ ମାୟା ସମାଜ ଯେ ।
ଯହିଁ ଲୋମଦ୍‌ଗମ ଜନେ ଲୋମପାଦ ବୋଲେ
ଜରତା ରତାରେ ଋଷ୍ୟଶୃଙ୍ଗ ଆସି ହେଲେ ଯେ ।
ସେ ଦେଶରେ ବୃଷ୍ଟିକଲା ତୁଷ୍ଟିହେଲେ ରାଜା
ଶାନ୍ତା କାନ୍ତା ଦେଇ କରି କଲେ ଦିବ୍ୟ ପୂଜା ଯେ ।

ଦଶରଥ ମନୋରଥ ସାର୍ଥ ହେବା ପାଇଁ
ସେ ମୁନିଙ୍କି ଘେନିଗଲେ ରଥରେ ବସାଇ ଯେ । (ଲାବଣ୍ୟବତୀ/୧୫/୧୯-୨୦)

**ପର୍ଯ୍ୟାୟ ଅଳଙ୍କାର-**

''କ୍ୱଚିତଦେକ ମନେକସ୍ମିନ୍ନନେକଂ ଚୈକଗଂ କ୍ରମାତ
ଭବତି କ୍ରିୟତେ ବା ଚେତ୍ତଦା ପର୍ଯ୍ୟାୟ ଇଷ୍ୟତେ ।''

(ସାହିତ୍ୟ ଦର୍ପଣ-୧୦/୮୦)

ପର୍ଯ୍ୟାୟ କ୍ରମିକ ଭାବରେ ଅନେକ ଆଧାରରେ ଏକ ଅଧାୟ କିମ୍ବା ଅନେକ ଅଧାୟରେ ଏକ ଆଧାରର ସ୍ଥିତି ବର୍ଣ୍ଣିତ ହେଲେ ପର୍ଯ୍ୟାୟ ଅଳଂକାର ହୁଏ ।

ଉଦାହରଣ-

'କି କରିବି ଏ ତୁହିନରତୁ ହୀନ ପଦ୍ମିନୀ ନାଶନ
ପ୍ରିୟା ମୋ ପଦ୍ମିନୀ ପଦ୍ମପାଦ ପାଣି ସୁବାସ ତେସନ ।
ପଦ୍ମପରା ଆଖି ପଦ୍ମମୁଖୀ ପଦ୍ମପତର ଉଦରୀ
ତାହା ଅଭାବେ ସ୍ୱଭାବେ ମୋ ଗତି ଏଥକୁ ମୁଁ ଦରି ।' (ଲାବଣ୍ୟବତୀ/୪୩/୫-୬)

**ଅନୁଜ୍ଞା ଅଳଙ୍କାର :-**

ଅନଭିଳଷିତ ବସ୍ତୁରେ କୌଣସି ଗୁଣ ଦେଖି ଯଦି ସେଥିରେ ମଣିଷର ଅଭିଳାଷ ସୃଷ୍ଟି ହୁଏ, ତେବେ ସେଠାରେ ଅନୁଜ୍ଞା ଅଳଂକାର ହୋଇଥାଏ । ଯଥା-

'ସିଂହଳେଶ ତୋଷଭର
ଘଲିଦେଲା ଅନ୍ତଃପୁର ।
ନାରୀ ବୋହିତ୍ରେ ବସାଇ
ସୁନ୍ଦରୀ ଚିତ୍ତେ ଭାଳଇ ।
କୁମାର ବାହୁଡ଼ି ଯିବ
କାହିଁକି ଥିବ ଏ ଜୀବ ।
ପଡ଼ିବି ସିନ୍ଧୁ ମଧ୍ୟର
ଏ ବିଘର ସବୁ ସାର ।
ମନାସି ମୁଁ ଝାସିଦେବି
ଜନମାନ୍ତରେ ପାଇବି । (ଲାବଣ୍ୟବତୀ/୨୯/୧-୩)

**କାରଣମାଳା ଅଳଙ୍କାର-**

''ପରଂ ପରଂ ପ୍ରତି ଯଦା ପୂର୍ବପୂର୍ବସ୍ୟ ହେତୁତା
ତଦା କାରଣମାଳାସ୍ୟାତ୍ ।''(ସାହିତ୍ୟ ଦର୍ପଣ-୧୦/୭୯)

''ପୂର୍ବସ୍ୟ ପୂର୍ବସ୍ୟୋତ୍ତର ହେତୁତ୍ୱେ କାରଣମାଳା ।'' (ଅଳଙ୍କାର ସର୍ବସ୍ୱ-ପୃ.୧୫୭)

ପୂର୍ବ, ପୂର୍ବ ପ୍ରତି ଉତ୍ତର କାରଣ ହେଲେ କିମ୍ବା ପୂର୍ବ ପୂର୍ବ କାରଣ ପ୍ରତି ଉତ୍ତର ଉତ୍ତର ହେଲେ କାରଣମାଳା ଅଳଂକାର ହୁଏ ।

ଉଦାହରଣ-

(କ) 'ଯୁବତୀରୁ ଜାତ ଲୋଭ ଲୋଭୁଁ ପ୍ରୀତି ଲେଖ
ପ୍ରୀତିରୁ ସୁରତି ଜାତ ସୁରତିରୁ ସୁଖ ହେ ।

ପ୍ରାଣ ଛାଡ଼ି ହୋଏ ସ୍ତିରୀ ଛାଡ଼ି ନୋହେ କେବେ
ରାବଣାଦି ଠାରୁ ଶୁଣିଥିବ ତ ପ୍ରସ୍ତାବେ ଯେ । (ଲାବଣ୍ୟବତୀ/୨୮/୩୨)

(ଖ) ପରମଦ୍ରବ୍ୟ ପୀରତି ପରମ ସୁଖ ସୁରତି
ରତିରୁ ଜାତ ପୀରତି ପ୍ରୀତିରୁ ରତି
ରାମାରୁ ରମ୍ୟ ମୂରତି ନାହିଁ ଏ ତାର କୀରତି
ଏହୁ ତିନି ହେଁ ହରନ୍ତି ଚିତ୍ତ ଧୂରତି । (ପ୍ରେମସୁଧାନିଧି/୭/୮)

ଉତ୍ତର ଅଳଙ୍କାର -

''ଉତ୍ତରଂ ପ୍ରଶ୍ନ ସ୍ୟୋତ୍ତରାଦନ୍ନେୟୋ ଯଦି
ଯଚ୍ଚାସକୃଦସଂଭାବ୍ୟଂ ସତ୍ୟପି ପ୍ରଶ୍ନ ଉତ୍ତରମ୍ ।''(ସାହିତ୍ୟ ଦର୍ପଣ-୧୦/୮୨)

ଯେଉଁଠାରେ ପ୍ରଶ୍ନର ଉତ୍ତର ଭାବଗର୍ଭକ ହୋଇଥାଏ ବା ଗୋଟିଏ ବିଶିଷ୍ଟ ଅଭିପ୍ରାୟରେ ଦିଆଯାଇଥାଏ, ସେଠାରେ ଉତ୍ତର ଅଳଙ୍କାର ହୁଏ । ଯଥା-

'ରସ ବିନା ଏ ନ ଘୁଞ୍ଚିବ ରୁଚିବ ମଧୁର ଆହାର ହୋଇଲେ
ଶାନ୍ତି ହେବ ତୀକ୍ଷ୍ଣ ତାପ ରାତ୍ରେ ଚନ୍ଦ୍ରଭାନୁରେ ଏକଶଯ୍ୟା କଲେ ।
ରୋଗ ବିଷମ । ରାଗଜନ୍ୟ ହୋଇ ହୋଇଛି
ପୁଟପାକରେ ଯେତେକ ଅଉଷଧି ଏ ଗୁଣ ନକରିବେ କିଛି ।
(ଲାବଣ୍ୟବତୀ, ୧୨/୩୬)

ଅର୍ଥାତ୍ ଲାବଣ୍ୟବତୀର ଏହି ବିଷମ ବ୍ୟାଧି ଦେଖି ବୈଦ୍ୟ ମୃଦୁସୁଲୀକୁ କହିଲେ ଯେ ଏହି ବ୍ୟାଧିର ଉପଶମ ପାଇଁ ଏହାକୁ ଚନ୍ଦ୍ରଭାନୁ ସହ ଏକ ଶଯ୍ୟାରେ ଶୟନ କରାଇଲେ ରୋଗ 'ଉପଶମ ହେବ । ଏହି ବ୍ୟାଧି ବିରହ ଜନିତ । ତେଣୁ ପୁଟପାକ ବା ଅଗ୍ନିଶୋଧିତ ଧାତବ ଔଷଧ ଏଥିପରେ କାଟୁ କରିବ ନାହିଁ ।

**ଏକାବଳୀ:** ଯେଉଁଠାରେ ପୂର୍ବ ପୂର୍ବ ବାକ୍ୟର ବିଶେଷ୍ୟ ଉତ୍ତର ଉତ୍ତର ବାକ୍ୟରେ ବିଶେଷଣ ରୂପେ କିମ୍ବା ଉତ୍ତର ଉତ୍ତର ବାକ୍ୟର ବିଶେଷ୍ୟ ପୂର୍ବ ପୂର୍ବ ବାକ୍ୟରେ ବିଶେଷଣ ରୂପେ ବ୍ୟବହୃତ ହୁଏ, ସେଠାରେ ଏକାବଳୀ ଅଳଙ୍କାର ହୁଏ । ଉଦାହରଣ-

ଚନ୍ଦ୍ରମାରୁ ପଦ୍ମ ଜନମ କରିଣ ସ୍ୱଭାବ ବହିଛି ସୁଷମା
କ୍ଷଣେ କ୍ଷଣେ କଥା ପ୍ରସଙ୍ଗେ ପଦ୍ମର ଜାତକରେ ଏବେ ଚନ୍ଦ୍ରମା
ଘେନ ଏ କଥା, ମାନ ତ ଅଦୃଷ୍ଟି ଅଶ୍ରୁତି
ଚନ୍ଦ୍ରକମଳ ଜଳୁ ଜାତ ବୋଲିଣ ପୁରାଣମାନ କହିଛନ୍ତି । (ପ୍ରେମସୁଧାନିଧି)

ଏଠାରେ ପ୍ରଥମ ପାଦରେ ପଦ୍ମ ବିଶେଷ୍ୟ ଓ ଚନ୍ଦ୍ର ବିଶେଷଣ ।
ଦ୍ୱିତୀୟ ପାଦରେ ପଦ୍ମ ବିଶେଷଣ ଓ ଚନ୍ଦ୍ର ବିଶେଷ୍ୟ ।
ଚତୁର୍ଥ ପାଦରେ ଉଭୟେ ବିଶେଷ୍ୟ ରୂପେ ବ୍ୟବହୃତ ।

**ଅନୁଗୁଣ ଅଳଙ୍କାର-**

ସ୍ୱତଃସିଦ୍ଧ ଗୁଣ ଯେବେ ଅମାନ୍ୟ କାରଣ ଯୋଗୁଁ ଉତ୍କର୍ଷ ଲାଭ କରେ, ତେବେ ସେଠାରେ ଅନୁଗୁଣ ଅଳଙ୍କାର ହେବ ।

'ତଥାପି ଲାବଣ୍ୟବତୀ ତ୍ରିପୁରାଳଙ୍କାର
ସୁନ୍ଦରପଣେ ଗୁଣରେ ନାହିଁ ସମ ଆର ହେ ।
ଭୟରୁ କି ସମ ସ୍ନେହେ କରିବାକୁ ତପ
ବନେ ପଶିଛନ୍ତି ଯାଇ କମଳ କଳାପ ରେ । (ଲାବଣ୍ୟବତୀ, ୨୮ଶ ଛାନ୍ଦ)

**ଅନୁଜ୍ଞା-** ଯେଉଁଠାରେ ଅନାଭିଳାଷିତ ବସ୍ତୁରେ କୌଣସି ଗୁଣ ଦେଖି ଯଦି ମଣିଷର ଅଭିଳାଷ ବଢ଼େ, ସେଠାରେ ଅନୁଜ୍ଞା ଅଳଙ୍କାର ହୁଏ ।

ଉଦାହରଣ- ସେହି ବଚନ ସେହି ଶୋଭା ତାର
ମନ ନୟନୁ ନୁହଇ ଅନ୍ତର ।
ଆଉ ନୃପ ସମ୍ପଦେ କାର୍ଯ୍ୟ ନାହିଁ
ପ୍ରିୟାପାଇଁ ମୁଁ ଯିବି ଯୋଗୀ ହୋଇ । (ସୁବର୍ଣ୍ଣରେଖା, ୪/୨୫)

**ଆକ୍ଷେପ ଅଳଙ୍କାର-**

''ପ୍ରତିଷେଧ ଇବେଷ୍ଟସ୍ୟ ଯୋ ବିଶେଷାଭିଧିତ୍ସୟା
ଆକ୍ଷେପ ଇତି ତଂ ସନ୍ତଃ ଶଂସନ୍ତି ଦ୍ୱିବିଧଂ ଯଥା । (କାବ୍ୟାଳଙ୍କାର, ଭାମହ-୨/୬୮)

କୌଣସି ଉକ୍ତିର ମହତ୍ତ୍ୱ ପ୍ରତିପାଦନ କରିବା ଉଦ୍ଦେଶ୍ୟରେ ଯଦି ତାହାର ନିଷେଧ କରାଯାଏ, ତେବେ ସେଠାରେ ଆକ୍ଷେପ ଅଳଙ୍କାର ହୁଏ ।

ଆକ୍ଷେପ ଅଳଙ୍କାର ଦୁଇଭାଗରେ ବିଭକ୍ତ - ବକ୍ଷ୍ୟମାଣ ବିଷୟକ ଆକ୍ଷେପ ଓ ଉକ୍ତ ବିଷୟକ ଆକ୍ଷେପ ।

(କ) ବକ୍ଷ୍ୟମାଣ ବିଷୟକ ଆକ୍ଷେପ- ପଦ ମଧ୍ୟରେ ଯଦି କୌଣସି କଥା କହିବା ପୂର୍ବରୁ ତାହାକୁ ନିଷେଧ କରାଯାଏ, ତେବେ ସେଠାରେ ବକ୍ଷମାଣ ବିଷୟକ ଅଳଙ୍କାର ହୁଏ ।

ଯଥା- ଏଥୁ ଅନନ୍ତରେ ରସିକ ସାର ।
କର୍ଣ୍ଣ ମୁଖରେ ସୁଧାପାନ କର ॥
ନୃପ ସୁତ ଆଗେ ପେଡ଼ି ଫେଡ଼ିଲା ।
ଫେଡ଼ିଲା ନାହିଁ ନୟନ ପଡ଼ିଲା ॥
କି ପଡ଼ିଲା ନାହିଁ ଜଡ଼ିଲା ଘେନ ।
ଜଡିଲା ନାହିଁ ଟି ବୁଡ଼ିଲା ଜ୍ଞାନ ॥ (ଲାବଣ୍ୟବତୀ, ୧୦/୧)

ଏହି ପଦ୍ୟାଂଶରେ କବି ନେତ୍ର ପଡ଼ିଲା କହିବା ସହିତ ପରେ ଜଡ଼ିଲା ମନ ଓ ବୁଡ଼ିଲା ଜ୍ଞାନ- ଏହିପରି ନିଷେଧ କରାଯାଇଥିବାରୁ ଏଠାରେ ବକ୍ଷ୍ୟମାଣ ବିଷୟକ ଆକ୍ଷେପ ଅଳଙ୍କାର ହୋଇଛି ।

(ଖ) ଉକ୍ତ ବିଷୟକ ଆକ୍ଷେପ- ଯଦି କୌଣସି କଥା କହିସାରି ତାହାର ନିଷେଧ କରାଯାଏ, ତେବେ ସେଠାରେ ଉକ୍ତ ବିଷୟକ ଆକ୍ଷେପ ଅଳଙ୍କାର ହୁଏ । ଯଥା-

ସରୋଷ ହେଲି, ସଖୀ ମୁଁ ହୁଡ଼ିଲି ସଉରମହୋଇ କାନ୍ତେ,
କି କରମ କଲି ।
ସନ୍ତାପରୁ କି କାରଣ, ବୋଲି ଧରି ମୋ ଚରଣ, ମାଗୁଥିଲେ ସେ ଶରଣ,
ଦେଲି କିମ୍ବା ପେଲି ।
ସେ ନିରାଶ ମୋର ଚାହିଁ, ଯାଇ ନିଃଶ୍ୱାସ ପକାଇ, ଦ୍ୱାରେ ଦଣ୍ଡେ ଥିଲେ ରହି
ତେବେ ନ ରହିଁଲି ।
(ରସପଞ୍ଚକ-୨ୟ ପଞ୍ଚକ, କଳହାନ୍ତରିଣ ଗୀତ, ପଦ-୩-୪)

ଏଠାରେ ନାୟିକା କହିଛି ଯେ କି କରମ କଲି, ଅର୍ଥାତ୍ ସେ ପ୍ରୀତିରୁ ବଞ୍ଚିତା ହୋଇଛି । ପ୍ରିୟଠାରୁ ସ୍ନେହ ପାଇବା ପରିବର୍ତ୍ତେ ନିଷ୍ଠୁରତା ଲାଭ କରିଛି । ଏଠାରେ ନାୟିକା ପ୍ରିୟ ସମାଗମ ଲାଭ ନ କରି ତା'ର ବକ୍ତବ୍ୟରେ ନିଷେଧିତ କଥା ବର୍ଣ୍ଣିତ । ତେଣୁ ଏହା ଉକ୍ତ ବିଷୟକ ଆକ୍ଷେପ ଅଳଙ୍କାର ।

ଆଚାର୍ଯ୍ୟ ଦଣ୍ଡୀ ମତଦେଇଛନ୍ତି- ''ବିଶେଷ ଅଭିଧାନ ଇଚ୍ଛାରେ ଇଷ୍ଟ ବସ୍ତୁର ନିଷେଧାଭାସକୁ ଆକ୍ଷେପ ଅଳଙ୍କାର କୁହାଯାଏ । ଆଚାର୍ଯ୍ୟ ଦଣ୍ଡୀ ଆକ୍ଷେପ ଅଳଙ୍କାରକୁ ୨୪ ପ୍ରକାରର ବୋଲି ମତ ଦେଇଛନ୍ତି । ସେଥି ମଧ୍ୟରୁ ଉଲ୍ଲେଖଯୋଗ୍ୟ କେତୋଟି ହେଲା-ଅତୀତ ଆକ୍ଷେପ, ବର୍ତ୍ତମାନ ଆକ୍ଷେପ, ଭବିଷ୍ୟତ ଆକ୍ଷେପ, କାରଣ ଆକ୍ଷେପ, ଅନୁଜ୍ଞା ଆକ୍ଷେପ, ଯତ୍ନାକ୍ଷେପ, ଧର୍ମୀ ଆକ୍ଷେପ ଇତ୍ୟାଦି ।

(କ) ବର୍ତ୍ତମାନ ଆପେକ୍ଷ-

''ମହାସୁଖ ନାହିଁ ଦମ୍ପତିରୁ
କି କାର୍ଯ୍ୟ କୁବେର ସମ୍ପତ୍ତିରୁ
ଜୀବନ ଯିବାର ବଡ଼ ତ ନୁହଇ
ଯୁବାକୁ ଯୁବତୀ ବିଚ୍ଛେଦରୁ । (ରସିକହାରାବଳୀ-୮/୨)

(ଖ) ଅତୀତ ଆପେକ୍ଷ-

ନାରଦ ପର୍ବତ ତାତ ବର କହିଥିଲା
ଇଳା କନ୍ୟା ବିଷ୍ଣୁ ଦରଶନେ ମାଳା ଦେଲା । (କୋ.ବ୍ର.ସ୍ତୁ, ୧୯/୧୬)

(ଗ) ଭବିଷ୍ୟତ ଆକ୍ଷେପ-

ଭଲା ଯୌବନ ସୃଷ୍ଟି ସଜାଡ଼ିଲା
ଆଗ ଉପମା ସୃଷ୍ଟି ଉଜାଡ଼ିଲା
ଯୋଗୀ ସୃଷ୍ଟିରେ ପ୍ରଳୟ ବହିବ
ଯୁବ ସୃଷ୍ଟି ଆଉ କେହି ରହିବ । (କୋ.ବ୍ର.ସୁ, ୩/୨୦)

**ସାର ଅଳଙ୍କାର-**

"ଉତ୍ତରୋତ୍ତରମୁତ୍କର୍ଷୋବସ୍ତୁନଃ ସାର ଉଚ୍ୟତେ ।"

(ସାହିତ୍ୟ ଦର୍ପଣ-୧୦/୭୮)

ଯେଉଁଠାରେ ମୂଳରୁ ଶେଷ ପର୍ଯ୍ୟନ୍ତ ଉତ୍କର୍ଷ ପ୍ରତିପାଦିତ ହୋଇଥାଏ, ସେଠାରେ ସାର ଅଳଙ୍କାର ହୁଏ । ଉଦାହରଣ-

ହେଲେ ହୋଇବ ପଛେ ଶିରଚ୍ଛେଦ
କେବେ ନୋହିବି ପ୍ରୀତିରୁ ବିଚ୍ଛେଦ
ଯୁବାକାଳ ରାଜା ସର୍ବ ଉପରେ
ମନ ରାଜା ଯୁବା କାଳ ଉପରେ । (ରସିକ ହାରାବଳୀ-୪/୧୯)

ଅର୍ଥାତ୍- ସର୍ବ ଉପରେ ରାଜା ହେଉଛି ଯୁବାକାଳ । ସେହିପରି ଯୁବାକାଳ ଉପରେ ରାଜା ହେଉଛି ମନ । ଏହି ଉଦାହରଣରେ ଉତ୍ତରୋତ୍ତର ଉତ୍କର୍ଷ ପ୍ରତିପାଦିତ ହୋଇଛି । ସୁତରାଂ ଏଠାରେ ସାର ଅଳଙ୍କାର ହୋଇଛି ।

**ମୁଦ୍ରା ଅଳଙ୍କାର-**

ସାଭିପ୍ରାୟସ୍ୟ ବାକ୍ୟେ ଯଦ୍‌ବଚନେସା ବିନିବେଶନମ୍
ମୁଦ୍ରାଂ ତାଂ ମୁତ୍‌ପ୍ରଦାୟିତ୍ୱାକ୍ରାବ୍ୟ ମୁଦ୍ରାବିଦୋ ବିଦୁଃ ।"

(ସରସ୍ୱତୀକଣ୍ଠାଭରଣ-୨/୪)

ଯେଉଁଠାରେ ସୂଚନୀୟ ଅର୍ଥାତ୍ ଯଥାଯଥ ପଦ ସଂଯୋଜନା ଯୋଗୁଁ କୌଶଳରେ ଅର୍ଥ ସଂଘଟନା ସୂଚିତ ହୋଇଥାଏ, ସେଠାରେ ମୁଦ୍ରା ଅଳଙ୍କାର ହୁଏ ।

ଦୃଷ୍ଟାନ୍ତ ସ୍ୱରୂପ-

(କ) ବନ୍ଧ୍ୟା ହୋଇଲେ ଜନନୀ ପ୍ରଥମ ଯୁଗ ନ ମାନି
ଜଳାବର୍ତ୍ତ ବହି ତବ ତାତ ଯେ
ବିହୁଥିଲେ ଅଭିଷେକ ଶ୍ରୀରାମେ ହୋଇ ଉତ୍ସୁକ
ଉପାୟେ ମୁଁ ତାହା କଲି ହତ ଯେ ।

(ବୈଦେହୀଶ ବିଳାସ)-୧୮/୧୬)

(ଖ) ଜାଣ ଦୁଇ ବର୍ଣ୍ଣେ ରାତ୍ରି ନାମକୁ ଉଚିତ
ସୁନ୍ଦରୀର ପ୍ରଭୁ ବେନି ଅକ୍ଷରେ ବିଦିତ
ପ୍ରକାଶିତ ଦ୍ୱି-ଅକ୍ଷରେ ରାଜା ତହି ରତ
ଋଷି କ୍ରୋଧ ବାଣୀ ବେନି ବର୍ଣ୍ଣେ ହେବ ଖ୍ୟାତ ।

ଏହି ଉଦାହରଣରେ 'ନିଶାପତି' - ଏହି ପଦଟି ଅର୍ଥ ସଂଘଟନ କୌଶଳରେ ପ୍ରତିପାଦିତ । ସୁତରାଂ ଏହା ମୁଦ୍ରା ଅଳଙ୍କାର ।

**ସମାହିତ:**

ଯଦି କୌଣସି କାର୍ଯ୍ୟ ସାଧନ ପାଇଁ କର୍ତ୍ତା ପ୍ରଯତ୍ନ କଲାବେଳେ କାର୍ଯ୍ୟଟିର ସାଧନ ସ୍ୱତଃ ସୁଲଭ ହୁଏ, ସେଠାରେ ସମାହିତ ଅଳଙ୍କାର ହୁଏ । ଉଦାହରଣ-

ବାନର ଇନ୍ଦ୍ରେ ଗୁହାରି । ବିହି ଓଳଗି ସେ କରି ।
ବନ କଲେ ଶୀର୍ଣ୍ଣ ଶୋଭା । ବହି ଗ୍ରୀଷ୍ମ ସୂର୍ଯ୍ୟ ପ୍ରଭା ।
ବାହୁଡ଼ି ଦକ୍ଷିଣ ଦୂତେ । ବ୍ୟବହାର ଅଦଭୂତେ ।
ବିନାଶ ଜୀବେ କରୁଣା । ବହୁତ ପ୍ରକାରେ ଭଣା ।
ବିବସ୍ୱାନ ସୁତ ଶୁଣି । ବହେ ହରଷ ସେ କ୍ଷଣି ।
ବିବେକ ତା ହୃଦୟରେ । ବିପିନ ଭଗ୍ନ ପ୍ରସ୍ଥରେ ।
ବ୍ୟବହାରୁ ମନେ ହେଜି । ବୈଦେହୀ ପାଇଲେ ଖୋଜି ।
ବେଶ ହେଲା ଏହା ଭଳି । ବପୁରେ ଚନ୍ଦନ ବୋଳି । (ବୈ.ବି.-୩୭/୪୫-୪୮)

**ଭାବାଭାସ:**

ଯେଉଁଠାରେ ଅସଙ୍ଗତ ଏବଂ ଅପ୍ରସାଙ୍ଗିକ ରୂପେ ଭାବର ବ୍ୟଞ୍ଜନା କରାଯାଏ, ସେଠାରେ ଭାବାଭାସ ଅଳଙ୍କାର ହୁଏ । ପକ୍ଷାନ୍ତରେ, ପଶୁପକ୍ଷୀଙ୍କ ଦ୍ୱାରା ଚିନ୍ତାର ବର୍ଣ୍ଣନା ଇତ୍ୟାଦି ଯେଉଁ ଭାବ ଉଦ୍ରେକ କରାଏ, ସେଠାରେ ଭାବାଭାସ ଅଳଙ୍କାର ହୁଏ ।

ଉଦାହରଣ-

'ବକ୍ଷୋଜେ ତବ ଯୁଗକୁ । ବିହନ୍ତି କବି ଯୋଗକୁ ।
ବଦଅଛି ସୋଦରତା । ବନ୍ଧୁବାରଣ ତୁ ।
ବୋଲୁକୋପୀ ଚକ୍ରବାକ । ବୋଇଲା ଏମନ୍ତ ବାକ ।
ବେନି ନାବେ ଦେଇ ପଦ । ବାର୍ଥେ ସମ୍ପଦ ଏ ।
ବହୁଜଟା ସ୍ତ୍ରିରୀହିତ । ବୁଡ଼ି ମରିବା ଉଚିତ ।
ବିହଗ ରତି ବିଲୋକ । ବିଲଜ୍ଜ ଲୋକତୁ ।' (ବୈ.ବି)

ଏଠାରେ ରାମଚନ୍ଦ୍ର ଓ ଚକ୍ରବାକ ମଧ୍ୟରେ କପୋପକଥନ ରୂପ ଅସଙ୍ଗତ ଭାବରେ ବର୍ଣ୍ଣନା କରାଯାଇଥିବାରୁ ଭାବାଭାସ ଅଳଙ୍କାର ହୋଇଛି ।

**ବ୍ୟାଜ ସ୍ତୁତିଃ-** ଯେଉଁଠାରେ ନିନ୍ଦା ଚଳରେ ସ୍ତୁତି କିମ୍ବା ସ୍ତୁତି ଛଳରେ, ନିନ୍ଦା ପ୍ରକଟ ହୁଏ ସେଠାରେ ବ୍ୟାଜସ୍ତୁତି ଅଳଙ୍କାର ହୁଏ ।

**ଉଦାହରଣ -**

ବନେ ପଶି ସ୍ତିରୀଏ ତାଡ଼କୀ ନାମେ ହାଣି
ବହୁତ କାଳରୁ ଥୁଆ ଧନୁଭାଙ୍ଗି ପୁଣି ଯେ ।
ବୀରଧ୍ୱ ପ୍ରକାଶି ଅଛୁ ମୋର ଧନୁଶର
ବିଗ୍ରହ କି ଆରମ୍ଭିବା ଦାଶରଥି ଠାର ଯେ ।
ବାମ କର ବଢାଇଲେ ରାମ ଶୁଣି କରି
ବଢାଇ ଦେଉଁ ସେ ଧନୁ ବିଷ୍ଣୁ ତେଜ ହରି ଯେ ।
ବସିବା ଠାବରେ ଗୁଣ ଦେଇ ସନ୍ଧିଶର
ବିନ୍ଧିବା କାହିଁକି ବୋଲି ପଚରିଲେ ବୀର ଯେ ।
ବୋଲେ ପର୍ଶୁରାମ ମୋ ପାପ ଭାର ଛେଦ
ବିଚ୍ଛେଦିଲେ ରାମଚନ୍ଦ୍ର ସେ ହେଲେ ପ୍ରମୋଦ ଯେ ।
ବାହୁଡନ୍ତେ ପ୍ରଦକ୍ଷିଣ କରି ଦେବ ବୃନ୍ଦି
ବାଜିଲା ବିବିଧ ବାଦ୍ୟ ବିଜେ କୃପାନିଧି ଯେ । (ବୈ.ବି.୧୬)

**ରତ୍ନାବଳୀ ଅଳଙ୍କାର-** ଯେଉଁ ବସ୍ତୁଗୁଡ଼ିକ ଯେଉଁ କ୍ରମରେ ବ୍ୟବହୃତ, ସେହି ବିଧିରେ ପଦରେ ଯଦି ବିନିଯୋଗ ହୁଏ, ତେବେ ସେଠାରେ ରତ୍ନାବଳୀ ଅଳଙ୍କାର ହୁଏ । ଯଥା-

(କ) ବହୁ କୃପଣ ସାଧନ କରେ ଛେଦନ ଶଙ୍କା ଜମ୍ବୁପ୍ଲକ୍ଷରେ
ଆରମ୍ଭୁ ହୋମ କର୍ମ କୁଶରେ ବହନ ଭୀତି ଯେ
ବାଟୁଳୀଧରୁ କ୍ରୌଞ୍ଚ ଚମକେ, ଭୋଜନ କାଳେ ଭୟଦ ଶାକେ
ଶୟନେ ତୂଳୀ କରଣେ ଶଙ୍କେ ଶାଲ୍ମଳୀ ନିତି ଯେ,
ବିହୁଁ ଦେବପୂଜନେ ପୁଷ୍କରେ ଭୟ ଯେ
ବଳେ ଉପାଡ଼ି ଦେବ ହୁଏ ଉଦୟ ଯେ
ବିଭୋଗ କର ପ୍ରତାପେ କର କରଇ ହେଲେ ପ୍ରଜା ଆକର
ପୃଥ୍ୱୀ ମଣ୍ଡଳ ରାଜାନିକର ମହା ଦୁର୍ଜ୍ଜୟ ଯେ । (ବୈଦେହୀଶ ବିଳାସ)

(ଖ) ବଳଦ୍ୱୟ ସୌର ମତେ ପ୍ରକଟ ବତ୍ସର ଯୁକ୍ତେ
ମେଷ ବୃଷ ମିଥୁନ କ୍ରମେ
ବହେ କର୍କ ପ୍ରଭା ସିଂହ ପତି କନ୍ୟା ମତି ରୁହ
ତୁଳ ଅଳି ସରସରେ ଭ୍ରମେ ସେ
ବଳେ ଧନୁ । ମକର ଅକ୍ଷ ବିଳସେ
ବିଦ୍ୟାମାନ କୁମ୍ଭ ମ୍ସରେ ଏ ଶ୍ଳେଷେ ଯେ । (ବୈଦେହୀଶ ବିଳାସ)

**ଶବ୍ଦପାଣ୍ଡିତ୍ୟ ଅଳଙ୍କାର:** ଏହି ଅଳଙ୍କାରରେ କବିଙ୍କର ଶବ୍ଦପାଣ୍ଡିତ୍ୟ ପ୍ରତିପାଦିତ ହୋଇଥାଏ ।

ବହୁ କୃପଣ ସାଧନକରେ ଛେଦନ ଶଙ୍କା ଜମ୍ବୁପ୍ଲକ୍ଷରେ
ଆରମ୍ଭୁ ହୋମ କର୍ମ କୁଶରେ ବହନଭୀତି ଯେ
ବାତୁଳୀ ଧରୁ କ୍ରୌଞ୍ଚ ଚମକେ ଭୋଜନକାଳେ ଭୟଦ ଶାକେ
ଶୟନେ ତୂଳି କରଣେ ଶଙ୍କେ ଶାଲ୍ମଳୀ ନିତି ଯେ ।
ବିହୁଁଦେବ ପୂଜନେ ପୁଷ୍କରେ ଭୟ ଯେ
ବଳେ ଉପାଡ଼ି ଦେବ ହୁଏ ଉଦୟ ଯେ ।
ବିଭୋଗ କର ପ୍ରତାପେ କର କରଇ ହେଳେ ପ୍ରଜା ଆକର
ପୃଥ୍ୱୀ ମଣ୍ଡଳ ରାଜାନିକର ମହାଦୁର୍ଜ୍ଜୟ ଯେ । (ବୈଦେହୀଶ ବିଳାସ)

**ପରିଣାମ-**

''ବିଷୟାତ୍ମତୟାରୋପ୍ୟ ପ୍ରକୃତାର୍ଥୋପଯୋଗିନି
ପରିଣାମୋ ଭବେତ୍ତୁଲ୍ୟାତୁଲ୍ୟାଧିକରଣୋ ଦ୍ୱିଧା ।'' (ସାହିତ୍ୟ ଦର୍ପଣ-୧୦/୩୪)

ଯେଉଁଠାରେ ଉପମାନ ସ୍ୱ-କ୍ରିୟା ସାଧନ କରି ନପାରି ଉପମେୟ ରୂପରେ ପରିଣତ ହୋଇ କ୍ରିୟାରେ ଅନ୍ୱିତ ହେଲେ ପରିଣାମ ଅଳଙ୍କାର ହୁଏ । ଯଥା-

(କ) ଚଟୁଳ ନୀର ବିନ୍ଦୁ ଧାଡ଼ି ହୋଇ ଯେ ରହିଛି ଶଳକା ତଳରେ
ଚନ୍ଦ୍ର ଅର୍ଦ୍ଧକୁ ଗ୍ରାସ କରି ରାହୁ କି ଛାଡ଼ିଣ ଗଲା ଚପଳରେ,
ସୁନ୍ଦରୀ, ରେଖଦନ୍ତ ଯୋଗ ତାର ରେ
ଚିନ୍ତନ କରୁଛି ସ୍ଫୋଟିକ ନିକର ଦିଶେ ମନୋହର ତରରେ ।
(ଲାବଣ୍ୟବତୀ-୩୪/୬)

(ଖ) ସାଗରବତ ନାଗରମଣି
ତ୍ରିପୁରେ ସମାନ ନାହିଁ ପୁଣି ।
ଗଙ୍ଗା ସଙ୍ଗମେ ଅଙ୍ଗେ ଅଙ୍ଗ ମିଶାଇ ଆଲିଙ୍ଗନ ସୁଖ ସେହି ଜାଣି । (ର.ହା.-୮ମ ଛାନ୍ଦ)

**ଅପହ୍ନୁତି-** ''ପ୍ରକୃତଂ ପ୍ରତିଷିଧ୍ୟାନ୍ୟ ସ୍ଥାପନଂ ସ୍ୟାପଦହ୍ନୁତିଃ ।''(ସାହିତ୍ୟ ଦର୍ପଣ-୧୦/୩୯)

ଯେତେବେଳେ ବର୍ଣ୍ଣନା କରାଯାଇଥିବା ବସ୍ତୁରେ ତା'ର ଧର୍ମକୁ ନିଷେଧ କରାଯାଇ ସେଠାରେ ଅନ୍ୟଏକ ବସ୍ତୁର ଧର୍ମ ଆରୋପିତ ହୁଏ, ସେଠାରେ ଅପହ୍ନୁତି ଅଳଙ୍କାର ହୁଏ । ଦୃଷ୍ଟାନ୍ତ ସ୍ୱରୂପ-

ସୁନ୍ଦରୀ ଯେତେ ସେ ତେଡ଼େ ଚତୁରୀ
ଚତୁରୀ ଯେଡ଼େ ତେଡ଼େ ତା' ଛତୁରୀ

ଘତୁରୀ ନୁହେଁ ସେ କାମ କତୁରୀ
ବହ୍ଣଘରୀ ଧୈର୍ଯ୍ୟ ପାରେ କତୁରୀ । (ରସିକ ହାରାବଳୀ)

**ଦୃଷ୍ଟାନ୍ତ-** ''ଦୃଷ୍ଟାନ୍ତସ୍ତୁ ସଧର୍ମସ୍ୟ ବସ୍ତୁନଃ ପ୍ରତିବିମ୍ବନମ୍ ।''(ସାହିତ୍ୟ ଦର୍ପଣ-୧୦/୫୧)

ଯେଉଁଠାରେ ଉପମେୟ ଓ ଉପମାନ ସ୍ୱାଧୀନ ଭାବରେ ଉଲ୍ଲିଖିତ ହୋଇଥାନ୍ତି, ସାଧାରଣ ଧର୍ମବାଚକ ପଦଦ୍ୱୟ ଆପାତତଃ ଭିନ୍ନାର୍ଥବୋଧକ ହେଲେ ହେଁ ଯେଉଁଠାରେ ସାଧାରଣ ଧର୍ମର ବିମ୍ବ ପ୍ରତିବିମ୍ବ ଭାବଦ୍ୱାରା ଉପମାନ ଓ ଉପମେୟ ଭାବ ପରିସ୍ଫୁଟ ହୋଇଥାଏ, ତାହାକୁ ଦୃଷ୍ଟାନ୍ତ ଅଳଙ୍କାର କୁହାଯାଏ । ଯଥା-

ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁନାହିଁ କିଛି କାହିଁ ଆନ ପ୍ରତିକାର ।
ନୂଆ ଅନ୍ଧପ୍ରାୟ ହୋଇ
ଅନୁକ୍ଷଣେ ଆକୁଳ ବଢୁଛି ପ୍ରାଣ ସହୀ । (ପ୍ରେମସୁଧାନିଧି)

**ପର୍ଯ୍ୟାୟୋକ୍ତି-** ''ପର୍ଯ୍ୟାୟୋକ୍ତଂ ଯଦନ୍ୟେନ ପ୍ରକାରେଣାଭିଧୀୟତେ ।''
(କାବ୍ୟାଳଙ୍କାର, ଭାମହ-୩/୮)

କବିର ଇପ୍‌ସିତ ଅର୍ଥକୁ ବିଭିନ୍ନ ଭଙ୍ଗୀ ବା ବିଚିତ୍ର ଭାବରେ ପ୍ରକାଶ କରାଗଲେ ପର୍ଯ୍ୟାୟୋକ୍ତି ଅଳଙ୍କାର ହୁଏ । ଉଦାହରଣ-

ମାର୍ଗ ମାରଜନେ ରଜନିକର ଆଣି ଯାଇ
ରଜନୀକର ଆଣନ୍ତି ଶକଟରେ ବହି ଯେ ।
ହରିତକୀ ପାଇଁ ତିଆରିଲେ ବୈଦ୍ୟକୂଳ
ଭାରବାହେ ଭାରରେ ଆଣନ୍ତି ଜାତିଫଳ ଯେ ।
ଶର୍ବରୀ ଶର୍ବରୀ ଶେଷୁ ଅରଣ୍ୟକୁ ଯାଇ
ହରି ବିଦାରିତ କରିମୋତି ପଡ଼ିଥାଇ ଯେ ।
ବଦରୀ ଆଦରେ ନେଇ ସରୋବରେ ଧୋଇ
ବିକା ତା ନଯିବ ବୋଲି ଆସନ୍ତି ପକାଇ । (ଲାବଣ୍ୟବତୀ ୨/୭-୧୦)

**ସିଂହାବଲୋକନ-** ଏଠାରେ ପ୍ରଥମ ପାଦର ପ୍ରାନ୍ତ ଶବ୍ଦଟି ଦ୍ୱିତୀୟ ପାଦର ଆଦ୍ୟରେ ରହି କ୍ରମାନ୍ୱୟରେ ପ୍ରୟୋଗ ହେଲେ ସିଂହାବଲୋକନ ଅଳଙ୍କାର ହୁଏ । ଯଥାଃ-

ବୋଲନ୍ତି ରାମ ସିଂହାବଲୋକନେ ଅବଳା
ବଳାକାପନ୍ତି କରିଛି ଧ୍ରୁବକୁ ଧବଳା ଯେ ।
ବଳାଇ ମାନସ ମନା ଅନା ପ୍ରାଣବନ୍ଧୁ
ବନ୍ଧୁକ ରଞ୍ଜନ ଅତି ରଙ୍ଗ ନିରବନ୍ଧୁ ଯେ

ବନ୍ଧୁର ପଥଟି ହେଜି ହେଜି ପଦବଳା
ବଳାଧ୍ୱନି ପ୍ରାୟ ଝିଲ୍ଲୀ ଶବଦ ପ୍ରବଳା ଯେ
ବଳାପଙ୍କି ଫଳବତୀ ପ୍ରଫୁଲ୍ଲ ସେବତୀ
ବତିଶ ଲକ୍ଷଣା ଦେଖ ବିହରେ ପାର୍ବତୀ ଯେ ।
ବତୀର୍ଣ୍ଣ ଅପୂର୍ବ ହୋଇ କେତେ ନାଗବଲ୍ଲୀ
ବଲ୍ଲିକା ତଳେ ଶୟନ ଚାମରୀ ଆବଳୀ ଯେ । (ବୈଦେହୀଶ ବିଳାସ)

**ବ୍ୟାଘ୍ରଗତି**–ବ୍ୟାଘ୍ର ଚାଲିବା ସମୟରେ ଯେପରି ଟିକିଏ ଆଗକୁ ଓ ଟିକିଏ ପଛକୁ ଚାହିଁ ଚାଲିଥାଏ ଅନୁରୂପ ଭାବରେ ଏହି ବ୍ୟାଘ୍ରଗତିର ଅକ୍ଷର ସାମାନ୍ୟ ଆଗପଛ ହୋଇ ସଜ୍ଜିତ ହୋଇଥାଏ ।

ଉଦାହରଣ-

ବ୍ୟାଘ୍ରଗତିରେ ସଧୀରେ କହନ୍ତି ବୀର ସେ
ବୀରତରୁ ଯେ ତରୁଣୀ କୁସୁମ ବରଷେ ଯେ ।
ବର ଉନ୍ନତ ଉନ୍ନତ ଉପମା ବିହୀନ
ବିହିତ କରିଛି ବିହି କକୁଭ ବଚନ ଯେ ।
ବଚ ସହିତରେ ସହି ପ୍ରକାଶେ ବିଭୂତି
ବିଭୂଷଣ ଚମ୍ପାକ୍ଷଣ ପୁଷ୍ପ ଅବିରତି ଯେ ।
ବିରଳ ଭାରତୀ କରି ଭାରତୀ ବିହାରେ
ବିହାୟସେ ଲାସ୍ୟ ଉଲ୍ଲାସକୁ ନ ବିସରେ ଯେ । (ବୈଦେହୀଶ ବିଳାସ)

**ସମୁଚ୍ଚୟ**–

"ସମୁଚ୍ଚୟୋଽୟମେକସ୍ମିନ ସତି କାର୍ଯ୍ୟସ୍ୟ ସାଧକେ
ଖଳେ କୋପାତିକାନ୍ୟାଽୟାତତ୍ପରଃ ସ୍ୟାତ୍ପରୋପି ଚେତ
ଗୁଣୌ କ୍ରିୟେ ବା ଯୁଗପତ୍‌ସ୍ୟାତାଂ ଯଦ୍‌ବା ଗୁଣକ୍ରିୟେ ।"
(ସାହିତ୍ୟ ଦର୍ପଣ/୧୦/୮୪-୮୫)

ଅବିରୁଦ୍ଧ ବସ୍ତୁମାନଙ୍କର ଏକକାଳୀନ ବର୍ଣ୍ଣନା ଚାତୁରୀକୁ ସମୁଚ୍ଚୟ ଅଳଙ୍କାର କୁହାଯାଏ । ଉଦାହରଣ–

(କ) ଭେକ ବରହୀ ଡାହୁକ ରହି ସେ ସୀମାନ୍ତେ ନ ଥିବେ
ବ୍ୟାଧ ଉତ୍ସୁକ ଥିବାରୁ ଶେଷ ଇତ୍ସୁକ କେହି ହେବେ
ନରପ୍ରଗ୍ରେର ନାହିଁ କି ଚାର ସେ ଦେଶେ ନ ମିଳିଲା
ବିହି ଅବଳ ଶ୍ୟେନ କବଳ ପକ୍ଷୀ ଦୂତ କି କଲା ?

ଏତେ ଭରସା ହେ ବରଷା ହେଉଛି ସେ ଆସିବେ
ମେଘ ଦମକ ବିଦ୍ୟୁ ଝମକ କେମନ୍ତେ ନ ତ୍ରାସିବେ ।
(ରସିକ ହାରାବଳୀ-୧୩ଶ ଛାନ୍ଦ)

(ଖ) ବାରଣ ପଦ୍ମିନୀ ବନ ମଚ୍ଛିଛି କି ଶେଯ ସରୋବରେ ଆସି ଯେ
ବାଳଶୈବାଳ ଅସ୍ତବ୍ୟସ୍ତ ଜଘନ ପୁଳିନ ଅଳପ ଦିଶି ଯେ ।
ବିଦୀପ୍ତ, ବାତାୟୁ ମଦକର୍ଦ୍ଦମ ଯେ
ବିଚ୍ଛିନ୍ନ ହାର ମୁକୁତା ହସୁଅଛି କଳି କହ୍ଲାର କୁସୁମ ଯେ । (ବୈ.ବି-୩୪/୨୯)

**ମୀଳିତ ଅଳଙ୍କାର-** ସମାନ ଗୁଣ ବିଶିଷ୍ଟ ବସ୍ତୁଦ୍ୱୟ ମଧ୍ୟରେ ଭେଦ ପରିଲକ୍ଷିତ ନ ହେଲେ ମୀଳିତ ଅଳଙ୍କାର ହୋଇଥାଏ । ଯଥା-

କ୍ଷୀଣ ତପସ୍ୟା ସେ ଦେଶେ ପଶାଖେଳ କି ନାହିଁ କାହିଁ
ପଡନ୍ତା ରତି ହୁଡ଼ ପୀରତି ଚିତ୍ତେ ଦେଖିଲେ ନାହିଁ ।
(ରସିକ ହାରାବଳୀ-୧୩ଶ ଛାନ୍ଦ)

**ଛଳ ଅଳଙ୍କାର-** ଯେଉଁ ପଦ୍ୟାଂଶରେ ସତକଥା ବଦଳରେ ଛଳ ରହିଥାଏ, ତାହାକୁ ଛଳ ଅଳଙ୍କାର କୁହାଯାଏ । ଉଦାହରଣ-

(କ) ସାନୁଜ ଧର୍ମରାଜର ହୋଇବାରୁ ପରା ଏଡ଼ିକି ଦୟାହୀନ
ସକାଂକ୍ଷିତ କରି ଦୃଷ୍ଟି ପତନ । ସରାସରି କହି ଏ ରାମାକୁ
ଅତିଶୟ କଷ୍ଟ କଲ ଦାନ ହେ । (ସୁଭଦ୍ରାପରିଣୟ-୯ମ ଛାନ୍ଦ)

(ଖ) ସ୍ନେହ ମୋର ରତିରେ ହୋଇବାରୁ
ସହି ନପାରି ସିନା ମୋତେ ମାରୁ
ସୋମ କର୍ପୂର ଚନ୍ଦ୍ର ବୋଲାଉଛି
ସେହି ପ୍ରକାରେ ଏହାର ଅର୍ଥ ଅଛି ।
ସମରଥ ମଣ ଦେଖା ଈଶ୍ୱରେ
ସ୍ଥାନ ନିତମ୍ବାର ସାହା ବଶରେ ।
ସରିଲାଣି ମୋ ଶୁଭକର୍ମ ଅସ୍ତ
ସମୀରଣ ଅନଳ ମେଘ ଅସ୍ତ । (ସୁ.ପ.୧୧/୪୯-୫୨)

(ଗ) ସମ୍ପୂର୍ଣ୍ଣ କଟି ସିଂହ ଅଛି ମଣ୍ଡି
ସପ୍ତମୀ ଘଣ୍ଟିରେ ସେ ନବଚଣ୍ଡୀ ।
ଷକାର ଭେଦ ମହୀଶ ଆକୁଳ
ସମଞ୍ଚା ରହିବ ମହୀମଣ୍ଡଳ ସେ
ସୁଗତି ବଶରେ ଚଳେ ଯେ
ସାନନ୍ଦ କରିବ ଈଶମାନସକୁ ରଣରଣରଣ ରୋଳେ ଯେ । (ସୁ.ପ.୭/୧୪)

(ଘ) ସାଙ୍କେ କର ଦେଖାଇ ବାଳା ଗୋଚର ପାଇଁ କେ ବୋଲେରେ କୋକିଳ ଶୁଣ
ସହିଷ୍ଣୁ ହେବୁ କେହି ଖଗ ଅଗ୍ରଣୀ ତୁହି ମନ ସଙ୍ଗହିଁ ଅଛ ପୁଣରେ ।
ସହଚରୀ । ଶୁଣି ବୋଇଲା ଏକ ଗୀର
ସନ୍ଦେଶ ଘେନି ହେମାଙ୍ଗୀର
ସଶୀଘ୍ରେ ଯାଅ ଆଜ ପାରିଲେ ମନସିଜ ସୁନ୍ଦର ମନ ଛନ୍ନ କର ରେ ।
(ସୁ.ପ.୮/୧୨)

**ପ୍ରେୟସ୍-** ଯେଉଁଠାରେ ଗୁରୁ, ଦେବତା, ନୃପତି, ପୁତ୍ର ଓ ସହୃଦୟମାନଙ୍କର ଅତ୍ୟନ୍ତ ମନୋରଞ୍ଜନ ତଥା ପ୍ରୀତିଭାବ ପ୍ରକାଶ ପାଏ, ସେଠାରେ ପ୍ରେୟସ୍ ଅଳଙ୍କାର ହୁଏ । ଯଥା-

ବିଜୟ ରାମ କରିବେ, ବିଭୁକ୍ତେ ମୋତେ ତାରିବେ
ବିଲୋକି ସନ୍ତାପ ଚ୍ୟୁତ, ବଢ଼ାଇ ଚୂତ ଯେ ।
ବିଶ୍ୱବ୍ୟାପୀ ତା ଭବରେ, ବିଭୋଗୀ ହେଲେ ଜବରେ
ବିଦ୍ୟ ଭାବଗ୍ରାହୀ ପଦ, ବେଗେ ଆସ୍ୱଦ ଯେ ।
(ବୈଦେହୀଶ ବିଳାସ,୨୬/୪୨-୪୩)

**ପରିକରାଙ୍କୁର-**

"ସାଭିପ୍ରାୟେ ବିଶେଷ୍ୟେ ତୁ ଭବେତ୍ ପରିକରାଙ୍କୁରଃ ।" (ଚନ୍ଦ୍ରାଲୋକ-୫/୪୦)

ଯେଉଁ ବର୍ଣ୍ଣନାରେ ବିଶେଷ ଅଭିପ୍ରାୟ ଗର୍ଭକ ପ୍ରସଙ୍ଗ ପ୍ରତିପାଦିତ ହୋଇଥାଏ, ସେଠାରେ ପରିକରାଙ୍କୁର ଅଳଙ୍କାର ହୁଏ । ଯଥା-

ବଢ଼ାଇ ଦେଲେ ପୟର ଭାବଗ୍ରାହୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି
ବ୍ରହ୍ମାରେ ଧୌତ ଯେ ପଦ ନୋହିଛି ଶିବେ ବିଷାଦ
ନ ପାଇ ଚରଣାମୃତ ପାନକୁ ଇଚ୍ଛି ।
ବିଜ୍ଞାନୀ କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତପାବନ ନାମ ବହିଲା ।(ବୈଦେହୀଶ ବିଳାସ,୯/୪)

ଭାବଗ୍ରାହୀ ଶ୍ରୀରାମଚନ୍ଦ୍ରଙ୍କ ପଦକୁ ଧୌତ କରି କୈବର୍ତ୍ତ ବିଶ୍ୱରେ ପତିତପାବନ ନାମରେ ଖ୍ୟାତ ହେବା ବିଷୟକ ବିଶେଷ ଅଭିପ୍ରାୟ ଗର୍ଭକ ହୋଇଛି । ସୁତରାଂ ଏହା ପରିକରାଙ୍କୁର ଅଳଙ୍କାର ଅଟେ ।

**ବିଷାଦନ-** ଅଭିପ୍ରେତ ବସ୍ତୁ ଲାଭ କରିବା ପୂର୍ବରୁ ଯଦି ଅନିଷ୍ଟ ଘଟେ, ତେବେ ସେଠାରେ ବିଷାଦନ ଅଳଙ୍କାର ହୁଏ । ଉଦାହରଣ-

ଏକହଂସ ସଘଟନ          କରି ଯୁବତୀ ରତନ
କୁମରବରକୁ ଘେନି ଗଲା ବହନ
ଏକେ ତ ଦେଖି ସପନ          ତେଜି ନରେଶ ନନ୍ଦନ
ଆକୁଳ ହୋଇଲା ମନ ମଦନେ ଛନ
ଦରିଦ୍ର କି ହରାଇଲା ଧନ
ସେହି ପରକାର ହୋଏ କୁମାର ମନ । (ଚିତ୍ରଲେଖା-୬।୬)

**ଐତିହ୍ୟ-** ରଢ଼ି ପ୍ରୟୋଗକୁ କାରଣରୂପେ ବର୍ଣ୍ଣନା କରାଯାଇ ବିଷୟବସ୍ତୁର ସଂରଚନା କରାଗଲେ ଐତିହ୍ୟ ଅଳଙ୍କାର ହୁଏ । ଉଦାହରଣ-

ବୋଲେ ନୃପ କ୍ଷୀରକଣ୍ଠ ମାରି କେଉଁ ଯଶଃ
ବିକ୍ରମିଣ ଗଲା ସେ ନ ଶୁଣି ରାଜା ଭାଷ ଯେ ।
ବକ୍ତା ଲକ୍ଷ୍ମଣ କାହାକୁ ପଚାରିଲା ପ୍ରାୟେ
ବାଚଲେ କାହୁଁ ପ୍ରବେଶ ଆମ୍ଭ ସୈନ୍ୟ ହୁଏ ଯେ ।
ବ୍ୟାଳେ ଲୋଷ୍ଟ୍ର ପ୍ରହାରିଲା ପ୍ରାୟେ ରହି କହି
ବିଷ କଣ୍ଠେ କ୍ଷୀରକଣ୍ଠ ବୋଲୁଥିଲା କେହି ଯେ ।
(ବୈଦେହୀଶ ବିଳାସ, ୧୬।୩୫-୩୭)

ଏଠାରେ 'କ୍ଷୀରକଣ୍ଠ' ମାରି କେଉଁଯଶ' (ଅର୍ଥାତ୍ ସ୍ତନ୍ୟପାୟୀ ଶିଶୁକୁ ମାରି କି ଯଶ ଅର୍ଜିବା) ଏହି ରଢ଼ିକୁ ଆଧାର କରି ବିଷୟ ପ୍ରସଙ୍ଗ ବର୍ଣ୍ଣନା କରାଯାଇଥିବାରୁ ଏହା ଐତିହ୍ୟ ଅଳଙ୍କାର ଅଟେ ।

କବି ବିଚାରିଲା ବିଚିତ୍ର ହେଲା କୁମ୍ଭୀ ବୁଡ଼ିଲା
ନ ବୁଡ଼ି ଶଇଳ ସଲିଳ ଉପରରେ ରହିଲା
କିସ ପୁଣି ଦେଖା ନ ଯାଏ ଭବେ ଥାଇ ଜୀବରେ
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ । (ଲାବଣ୍ୟବତୀ)

ଏହି ସଂସାରରେ ବଞ୍ଚିଥିଲେ ଅନେକ ବିଚିତ୍ରକଥା ଦେଖିବାକୁ ଓ ଶୁଣିବାକୁ ମିଳେ । ଏହି ଆଧାରରେ ତୁମ୍ବୀ ବୁଡ଼ିବା ଓ ପର୍ବତ ଭାସିବା କଥା ଉଲ୍ଲେଖ ଥିବାରୁ ଏଠାରେ ଐତିହ୍ୟ ଅଳଙ୍କାର ହେଲା ।

**ଶିଷ୍ଟ-** ଯେଉଁଠାରେ କୌଣସି ବସ୍ତୁ, ଦେବଦେବୀ କିମ୍ବା ବ୍ୟକ୍ତିବିଶେଷଙ୍କର ମହତ୍ କୀର୍ତ୍ତି ପ୍ରକାଶ ପାଇଥାଏ, ସେଠାରେ ଶିଷ୍ଟ ଅଳଙ୍କାର ହୁଏ । ଯଥା-

ବିନ୍ଧ୍ୟ ଭୁଲାକ ରାମେ ତହିଁ, ବ୍ରହ୍ମାସ୍ତ୍ର ଉପତୂଣ ଦେଇ
ବୋଲେ ଏ ଶରେ ରାବଣର, ବଧ ବିଚାର ରଘୁବୀର

ବଡ଼ବାନଳଙ୍କୁ ବଳି ତେଜେ, ବଡ଼ ଏ ନାରାଚ ସମାଜେ
ବିନ୍ଧିବା ତ୍ରିପୁରେ କହିଲା, ବୃଷାଙ୍କ ଧନୁ ଜଳିଥିଲା
ବାଣାସନକୁ ତଥା ଘେନ, ବଜ୍ରାଗ୍ନି ଦହଇ କି ଘନ
ବିଜୟ ତୃଣ ଝର ପରି, ବାଣ ବିନ୍ଧୁଥିଲେ ନ ସରି । (ବୈ.ବି.୨୨/୪୫)

**ପ୍ରସ୍ତୁତାଙ୍କୁର-** ଯେଉଁ ବର୍ଣ୍ଣନାରେ ପ୍ରସ୍ତୁତ ବିଷୟରୁ ଅନ୍ୟ ଏକ ପ୍ରସ୍ତୁତ ବିଷୟର ସୂଚନା ନିହିତ ଥାଏ, ସେଠାରେ ପ୍ରସ୍ତୁତାଂକୁର ଅଳଙ୍କାର ହୁଏ । ଯଥା-

ବଧିର ନୁହଇ ବୀର          ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଲିପଡ଼ି ତୋ ଚରଣୁ          ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନଧୋଇ ନାବ । (ବୈ.ବି.୯ମ ଛାନ୍ଦ)

ଏହି ପଂକ୍ତିରେ ଧୀବର ନିଜେ ବଧିର ନୁହେଁ ବୋଲି କହିବା ପ୍ରସ୍ତୁତ ବିଷୟ ଶ୍ରୀରାମଙ୍କର ଚରଣଧୂଳି ଲାଗି ପଥରଟିଏ ସ୍ତ୍ରୀ ପାଲଟିଯିବା ଅନ୍ୟ ଏକ ପ୍ରସ୍ତୁତ ବିଷୟ । ପ୍ରଥମ ପ୍ରସ୍ତୁତ ବିଷୟରୁ ଦ୍ବିତୀୟ ପ୍ରସ୍ତୁତ ବିଷୟର ସୂଚନା ମିଳୁଥିବାରୁ ଏଠାରେ ପ୍ରସ୍ତୁତାଂକୁର ଅଳଙ୍କାର ହୋଇଛି ।

**ପ୍ରକର୍ଷଣ-** ଯେଉଁଠାରେ ଅଭିପ୍ରେତ ବସ୍ତୁ ଯଦି ସେହି ବସ୍ତୁଲାଭର ଯତ୍ନବିନା ଲବ୍ଧ ହୁଏ, ତେବେ ସେଠାରେ ପ୍ରକର୍ଷଣ ଅଳଙ୍କାର ହୁଏ ।

ସିନ୍ଧୁକି ଚଳୁରେ ରହି          ନର କି ଧରଣୀ ବହି
ପକ୍ଷବିନା ନଭେ ଯାଇ ହୁଅଇ ନିକି
ଦିତିର ଚନ୍ଦନ ହୋଇ          ଦେବତା ନିକି ବୋଲାଇ
ଏହାହେଲେ ପାଇବି ମୁଁ ସୁବରନୀକି
ମନ୍ତ୍ରୀସୁତ କହଇ ମିତ          ଏ ମାନ ହୋଇଛି କିଛି ନଧର ଚିତ୍ତ ।
ଚଳୁକଲେ ସିନ୍ଧୁ ମୁନି          ପାର୍ଥଧଇଲେ ଅବନୀକି
ଗମନେ ଗମିଲେ କପିବାତ ଦେବତ
ସେ ରୂପେ ତୋ କର୍ମେ ଅଛି     ଲଭିବୁ ବାଳ-ମୃଗାକ୍ଷି
ଶୁଣିଣ ନୃପତି ସୁତ କି ଆନନ୍ଦିତ
ମାକନ୍ଦ ଲଭିଲା କି ପିକ ଜଳଦ ଜଳ ଲଭିଲାକ ଚାତକ । (ଭାବବତୀ)

**ହେତୁ-**

"ଅଭେଦେନାଭିଧା ହେତୁ ର୍ହେତୋର୍ହେତୁମତା ସହ ।" (ସାହିତ୍ୟଦର୍ପଣ-୧୦/୬୩)

ଯେଉଁଠାରେ କାର୍ଯ୍ୟ ଓ କାରଣ ମଧ୍ୟରେ ଅଭେଦତ୍ୱ କଥିତ ହୋଇଥାଏ, ସେଠାରେ ହେତୁ ଅଳଙ୍କାର ହୁଏ ।

ଦୃଷ୍ଟାନ୍ତ ସ୍ୱରୂପ-

ଏମନ୍ତ ଭାବି ଜଣାଇଲେ ଯାଇ
ଜନନୀ ତର୍ଜିଲେ ଆଜ ଡକାଇ
କି କର ତୁମ୍ଭେ ଜେମାପାଶେ ଥାଇ
ସୁବେଶ ନିତି ନକର କିମ୍ପାଇଁ ଗୋ
କେ ଜାଣେ କାହା ମାନସ ଗୋ
ତୁ ମନେ କରିଛୁ ଭୂଷଣ ଭୂଷା ମୁଁ କାହିଁକି ହୋଇବି ବେଶ ଗୋ ।

(ଲାବଣ୍ୟବତୀ)

ଏହି ଉଦାହରଣରେ ନାୟିକା ଲାବଣ୍ୟବତୀ ନିଜେ ଭୂଷଣ (କାର୍ଯ୍ୟ) ଏବଂ ଭୂଷଣର ହେତୁ (କାରଣ) ହୋଇଥିବାରୁ ଏଠାରେ ହେତୁ ଅଳଙ୍କାର ହେଲା ।

**ଭାବୋଦୟ-** ଯେଉଁଠାରେ ଏକଭାବର ଶାନ୍ତି ହେବାପରେ ଅନ୍ୟଏକ ଭାବର ଉଦୟ ହୁଏ ଏବଂ ଚିତ୍ତରେ ଚମତ୍କାରିତା ସୃଷ୍ଟିହୁଏ, ସେଠାରେ ଭାବୋଦୟ ଅଳଙ୍କାର ହୁଏ ।

ଉଦାହରଣ:-

ସୁରସିକ ସାବଧାନେ ଶୁଣ ଦିବ୍ୟରସ
ସ୍ୱାମୀ ଜନଙ୍କୁ ପ୍ରସନ୍ନ କଲା ସୁପୁରୁଷ ।

ସୁଦୟା କରାଇ ପରେ ନବ ତରୁଣୀ କି
ସେ ସୁଖ ସଙ୍ଗତେ ଇନ୍ଦ୍ର ସୁଖକୁ ଗଣିକି ଯେ ।

ସୁକୃତ ଅତି ଯେ ପୂର୍ବ ଜନ୍ମେ କରିଥାଇ
ସେ ଭାଗ୍ୟେ ରମଣୀ ତାକୁ ଚାହେଁ କଣିଆଇଁ ।

ଶୁଣେ ଯାର ଚାଟୁ ବାଳା ହୋଇ ହସ ହସ
ସଦ୍ରବ ହୁଅଇ ତାର ମନସିଜ ତ୍ରାସ ଯେ ।

ସରସ୍ୱତୀ ଅଗୋଚର ଅର୍ଜ୍ଜୁନ ସୁଭାଗ୍ୟ
ସାହିତ୍ୟ ପଠନୀର ମନ୍ଦାକ୍ଷ କରି ଭଙ୍ଗ ।

ସ୍ୱୀକାର ଏବିଧିରେ କରାଇ ମହାସୁଖୀ
ସ୍ୱଚ୍ଛତପେ ଜନ୍ମାନ୍ଧ ପାଇଲା କି ବା ଆଖି ଯେ ।

ସୁରେନ୍ଦ୍ର ଦିଗ ରଙ୍ଗ କି ରଥାଙ୍ଗ ଚାହିଁଲା
ସୁତହୀନ ଦେଖିଲା କି ଚୂତ ବକୁଳିଲା କି

ସୁମନା ବିକାଶ କି ବା ମଧୁକର ଚାହିଁ
ଶାଳିଅନ୍ନ ମାସୋପବାସୀକି ଦେଲା ବିହି ଯେ ।

ସଉସ୍ଥୁକେ ଦ୍ୱି-ଦନ୍ତ-ଦନ୍ତ ପଲଙ୍କେ ନେଇ
ସକ୍ଥି ପରେ ବସାଇଲା ରସରେ ରସାଇ ଯେ ।

ସୁଧାମୃତ ପୂର୍ଣ୍ଣଚନ୍ଦ୍ର ଚୁମ୍ବେ ହୋଇ ଲୋଭୀ
ସଉଭାଗ୍ୟ ପଦକୁ ସେକ୍ଷଣି ସେହି ଲଭି ଯେ । (ସୁଭଦ୍ରାପରିଣୟ-୧୩ଶ ଛାନ୍ଦ)

ଏଠାରେ ଶାନ୍ତ ଭାବର ଉଭବ ପରେ ଶୃଙ୍ଗାର ରସର ଉଦ୍ରେକ ହୋଇଛି । ତେଣୁ ଏହା ଭାବୋଦୟ ଅଳଙ୍କାର ଅଟେ ।

**ଭାବସନ୍ଧି ଅଳଙ୍କାର-** ଯେଉଁ ବର୍ଣ୍ଣନାରେ ଏକ ସମୟରେ ତୁଲ୍ୟଭାବ ଓ ସମାନ ଚମତ୍କାର ଭାବର ସନ୍ଧି ହୋଇଯାଏ, ସେଠାରେ ଭାବସନ୍ଧି ଅଳଙ୍କାର ହୋଇଯାଏ । ଯଥା-

ଲାବଣ୍ୟ ଜଳରେ କମଳ କଢ଼ି
ପରାଏ ଆସୁଥିଲା ସ୍ତନକଢ଼ି
ରହୁଥିଲା ମୋର କର ଭିତର
କେଡ଼େ ହେବଣି ଏବେ ପୟୋଧର ।
କି କରମ କଲି
ଏ କାଳେ ତାକୁ କେଡ଼େ ଦଣ୍ଡ ଦେଲି । (ସୁବର୍ଣ୍ଣ ରେଖା)

**ଭାବଶବଳତା-** ଯେଉଁଠାରେ ଏକ ସମୟରେ ଏକାଧିକ ଭାବ ଏକତ୍ରିତ ହୋଇ ରସ ସୃଷ୍ଟିକରେ, ସେଠାରେ ଭାବଶବଳତା ଅଳଙ୍କାର ହୁଏ । ଯଥା-

ଦିନେ ଯେ ସୁନ୍ଦରୀ ନେତ୍ର ଚୁମ୍ବନେ ମୋ ଓଷ୍ଠେ ଲାଗିଥିଲା ଅଞ୍ଜନ
ଜାଣି ନ ଥିଲି ପ୍ରାତୁ ଆରଦିନ
ସଖୀ ସଙ୍ଗେ ଥାଇ ନିଜ ଓଷ୍ଠ ପୋଛି
ଠାରିଲା ଜୀବନ ଧନ ।
ହେ ମଧୁପ,
ଜାଣି ପୋଛିଲି ଅନାଇ ହସିଲା,
ହୋଇ ମନ୍ଦିରେ ଯାଇ ସେ ପଶିଲା
ସେ ଭାବ, ସେ ଶୋଭା ମନୁ ଛାଡୁନାହିଁ
ବିଜୁଳି ପ୍ରାୟେ ଦିଶିଲା ହେ ମଧୁପ । (ଭାବବତୀ-୫ମ ଛାନ୍ଦ)

ଏଠାରେ ଏକ ସମୟରେ ଶାନ୍ତ, ଶୃଙ୍ଗାର ଓ କରୁଣ ଭାବର ଏକତ୍ର ପ୍ରକାଶ ପାଇଥିବାରୁ ଭାବଶବଳତା ଅଳଙ୍କାର ହେଲା ।

## ବିଚିତ୍ର ଅଳଙ୍କାର-

"ବିଚିତ୍ରଂ ତଦ୍‌ବିରୁଦ୍ଧସ୍ୟ କୃତିରିଷ୍ଟଫଳାୟଚେତ୍ ।"(ସାହିତ୍ୟଦର୍ପଣ-୧୦/୭୧)

ଯେଉଁଠାରେ ଅଭିପ୍ରେତ ବସ୍ତୁର ସିଦ୍ଧି ପ୍ରତିପାଦନ ନିମନ୍ତେ ସେହି ଅଭିପ୍ରେତ ବସ୍ତୁର ବିରୁଦ୍ଧାଚରଣ ବର୍ଣ୍ଣିତ ହୋଇଥାଏ, ସେଠାରେ ବିଚିତ୍ର ଅଳଙ୍କାର ହୁଏ ।

ଉଦାହରଣ-

ନକର ଦଣ୍ଡ ବିଳମ୍ବ ଦଣ୍ଡ ହେଲେ ଅଦଣ୍ଡ ମୁହିଁ
କୁଚ ମନ୍ଦର ଠେସି ହୃଦର ଦିଅ ମୋ ଦର ନାହିଁ ।
ବାହୁ ପାଖରେ ବାନ୍ଧି ପାଶରେ ରଖ ତୋଷରେ ତୁହି
ନଖ କର ତ ତହୁଁ କରତ ତନୁ ନିରତ ସହି
ଦୁଃଖସିଂହାଣୀ ବକ୍ରଚାହାଣୀ ଖଡ଼୍‌ଗେ ହାଣିପକା
ଭାବେ ନିଖନ ନୋହେ ମୁଁ ଭିନ୍ନ ନୁହଁ ମଉନ ଏକା । (ଲାବଣ୍ୟବତୀ)

**ଭାବିକ-** "ଅଦ୍‌ଭୁତସ୍ୟ ପଦାର୍ଥସ୍ୟ ଭୂତସାଧ ଭବିଷ୍ୟତଃ
ଯତ୍ ପ୍ରତ୍ୟକ୍ଷାୟମାଣତ୍ୱଂ ତଭାବିକମୁଦାହୃତମ୍ ।"(ସାହିତ୍ୟଦର୍ପଣ-୧୦/୯୩)

ଯେଉଁଠାରେ ଅତୀତ କିମ୍ବା ଭବିଷ୍ୟତ କାର୍ଯ୍ୟ ପ୍ରତ୍ୟକ୍ଷ ହେଲା ପରି ବର୍ଣ୍ଣିତ ହୋଇଥାଏ, ସେଠାରେ ଭାବିକ ଅଳଙ୍କାର ହୁଏ ।

ଉଦାହରଣ- ଏହି କାଳେ ଢାଳିକ ବୋଇଲା ନେତ୍ର ବୁଜ
ନେତ୍ର ବୁଜନ୍ତେ ରଚିଲା ସେ ମାୟା ସମାଜ ଯେ ।
ଚହିଁ ଲୋମଦ୍‌ଗମ ଜନେ ଲୋମପାଦ ବୋଲେ
ଜରତା ରତାରେ ଋଷ୍ୟଶୃଙ୍ଗ ଆସି ହେଲେ ଯେ ।
ସେ ଦେଶରେ ବୃଷ୍ଟି କଲା ତୁଷ୍ଟିହେଲେ ରାଜା
ଶାନ୍ତା କାନ୍ତା ଦେଇ କରି କଲେ ଦିବ୍ୟ ପୂଜା ଯେ । (ଲାବଣ୍ୟବତୀ-୧୫ଶ ଛାନ୍ଦ)

**ଲେଶ-** ଯେଉଁଠାରେ ଗୁଣଦୋଷ ରୂପରେ କିମ୍ବା ଦୋଷ ଗୁଣ ରୂପରେ ବର୍ଣ୍ଣିତ ହୋଇଥାଏ, ସେଠାରେ ଲେଶ ଅଳଙ୍କାର ହୁଏ । ଉଦାହରଣ-

ଏକାଳେ ବଳୟ ଶୋଭୀ କୁବଳୟ ନୟନୀ ମଳୟ ସମୀରେ
ଛଳେ ଭୋଗୀପ୍ରୀତି ତୁମ୍ଭଙ୍କୁ ବୋଲୁଛି ସେହି ଗୁଣ ବହ ମୋପରେ
ଆହେ ପବନ ! ବୋଲାଅ ଜଗତ ଜୀବନ
ଏବେ ମୋ ଜୀବନ ନେବାକୁ ହୋଇଛ ଯଥା ସନ୍ନିପାତେ ଜୀବନ ।
(ଲାବଣ୍ୟବତୀ)

**ବିପ୍‌ସା–** ଯେଉଁଠାରେ ଆଦର, ଉତ୍ସାହ, ଘୃଣା, ଶୋକ ଓ ହର୍ଷ ଦେଖାଇବା ନିମନ୍ତେ ଶବ୍ଦର ପୁନଃ ପୁନଃ ଆବୃତ୍ତିଘଟେ, ସେଠାରେ ବିପ୍‌ସା ଅଳଙ୍କାର ହୁଏ । ଉଦାହରଣ-

ହା ହା ସେ ଶିରୀଷ ମୃଦୁ ଅଙ୍ଗିନୀ
ହା ହା ସେ ଶୀରୀଶ ଯୋଗ ଭଙ୍ଗିନୀ
ହା ହା ସେ କାମଧେନୁ ଭ୍ରୂଭଙ୍ଗିନୀ
ହା ହା ସେ ପ୍ରେମରସ ତରଙ୍ଗିଣୀ
ହା ହା ସେ ରଙ୍ଗିନୀ
କି ଭାଗ୍ୟୁଁ ମୋର ପ୍ରାଣ ସଙ୍ଗିନୀ । (ରସିକ ହାରାବଳୀ-୧୦/୧)

ଏହି ଉଦ୍ଧୃତିରେ ଶୋକ ନିମନ୍ତେ 'ହା ହା ସେ' ଶବ୍ଦର ପୁନଃ ପୁନଃ ପ୍ରୟୋଗ ହୋଇଥିବା ହେତୁ ବିପ୍‌ସା ଅଳଙ୍କାର ହୋଇଅଛି ।

**ବ୍ୟସ୍ତାକ୍ଷର–** କୌଣସି ଶବ୍ଦ ବା ପଦକୁ ବାସ୍ତ ବା ବିପରୀତ ଭାବରେ ପାଠ କରିବା ସହିତ ଯଦି ସେଠାରେ ଏକ ନିର୍ଦ୍ଦିଷ୍ଟ ଅର୍ଥ ପ୍ରତୀତ ହୁଏ, ତେବେ ସେଠାରେ ବାସ୍ତାକ୍ଷର ଅଳଙ୍କାର ହୁଏ । ଉଦାହରଣ-

ଭକ୍ତି ମୁକ୍ତି ଫଳ ଅଛି ନ ଦେଖନ୍ତି କେହି
ସ୍ୱଭାବରେ ବନ୍ଧୁଦାରୁ ବାସ୍ତପଦେ ରହି ହେ । (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-୧/୫୩)

**ଅବଜ୍ଞା–** ''ଅବଜ୍ଞା ବର୍ଣ୍ଣ୍ୟତେ ବସ୍ତୁ ଗୁଣଦୋଷାକ୍ଷମଂ ଯଦ ।'' (ଚନ୍ଦ୍ରାଲୋକ-୫/୧୦୭)

ଯଦି ଏକର ଗୁଣ ବା ଦୋଷରେ ଅନ୍ୟର ଗୁଣ ବା ଦୋଷର ଅପରିବର୍ତ୍ତନ କଥିତ ହୁଏ, ତେବେ ସେଠାରେ ଅବଜ୍ଞା ଅଳଙ୍କାର ହୁଏ । ଯଥା-

ବାଲ୍ମୀକି ବ୍ୟାସକବି ଯହିଁରେ ମହାକାବ୍ୟକେ ପୁରାଣ କରେ
ମହାନାଟକ ବାତସୁତରେ ହେଲେ ରଚିତା ଯେ
ବିହିଲେ କାବ୍ୟ ଯେ କାଳିଦାସେ ଚମ୍ପୂ ରଚନା ଭୋଜ ନରେଶେ
କୃପାସିନ୍ଧୁଏ ଗୀତ ପ୍ରକାଶେ ଛାଡ଼ିଲି ଚିନ୍ତା ଯେ ।
ବିବେକ ହିଁ ଉଦୟ ଏମନ୍ତ ଧାୟି ଯେ
ବ୍ୟୋମେ ତାରକା ଯେବେ ଝଲକୁଥାଇ ଯେ
ବିଭାବରୀରେ ଜ୍ୟୋତିରିଙ୍ଗଣ ଗଣଜ୍ୟୋତିକି ଦେଖାନ୍ତି ପୁଣ
ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ ।
(ବୈଦେହୀଶ ବିଳାସ,୧/୪)

ଅର୍ଥାତ୍ ରାତ୍ରିକାଳରେ ବ୍ୟୋମରେ ତାରକାପନ୍ତି ବିଦ୍ୟମାନ ଥାନ୍ତି । ସେହିପରି ଜ୍ୟୋତିରିଙ୍ଗଣ ଅର୍ଥାତ୍ ଜୁଳୁଜୁଳିଆ ପୋକମାନେ ମଧ୍ୟ ସେମାନଙ୍କର ଜ୍ୟୋତି ପ୍ରକାଶ

କରିଥାନ୍ତି । ଏଠାରେ ତାରକାପନ୍ତିର ଗୁଣ ଏବଂ ଜୁଳୁଜୁଳିଆ ପୋକମାନଙ୍କର ଗୁଣ ଅପରିବର୍ତ୍ତନ ହେଉ ଏହା ଅବଜ୍ଞା ଅଳଙ୍କାର ପର୍ଯ୍ୟାୟଭୁକ୍ତ ।

**ଅନୁଜ୍ଞା-** ଅନାକାଂକ୍ଷିତ ବସ୍ତୁରେ କୌଣସି ଗୁଣ ଦେଖି ଯଦି ସେଥିରେ ମଣିଷର ଆକାଂକ୍ଷା ବଢ଼େ, ତେବେ ସେଠାରେ ଅନୁଜ୍ଞା ଅଳଂକାର ହୁଏ । ଉଦାହରଣ-

ସିଂହଳେଶ ତୋଷଭର । ଚଳିଦେଲା ଅନ୍ତଃପୁର ।
ନାରୀ ବୋହିତ୍ରେ ବସାଇ । ସୁନ୍ଦରୀ ଚିତ୍ତେ ଭାଳଇ ।
କୁମର ବାହୁଡ଼ି ଯିବ । କାହିଁକି ଥିବ ଏ ଜୀବ ।
ପଡ଼ିବି ସିନ୍ଧୁ ମଧ୍ୟର । ଏ ବିରହର ସବୁସାର ।
ମନାସି ମୁଁ ଝାସ ଦେବି । ଜନ୍ମାନ୍ତରେ ପାଇବି । (ଲାବଣ୍ୟବତୀ/୨୯/୧-୩)

**ପୁନରୁକ୍ତି ବଦାଭାଷ-** ଏକାର୍ଥବୋଧକ ଦୁଇ ବା ତତୋଽଧିକ ଶବ୍ଦ ଏକ ବାକ୍ୟରେ ଅବସ୍ଥାନ କଲେ ସେଠାରେ ପୁନରୁକ୍ତି ବଦାଭାଷ ଅଳଙ୍କାର ହୁଏ । ଯଥା-

ପତିକାନ୍ତ ପ୍ରିୟ ବଚନକୁ କର୍ଣ୍ଣେ ଶୁଣି
କୋପମାନ ନାଶକଲ ସମ-ଶିରୋମଣି ।
ହେମ କନକ ଗାତ୍ର ତା ପୁଲକିତ ହୋଇ
ପଦ୍ମକମଳ ବିଜିତ ନେତ୍ରେ ଢ଼ାଳି ଚାହିଁ ।

**ନିରୋଷକ-**

ନୀରଦଳ-ଶୟନ କହି ନିରନ୍ତର
ଜଗିଥାଉଁ ନିଦାଘରେ ସଜ୍ଜନୀକର ।
ଘନସାର ଚନ୍ଦନ ଶୁଖଇ ଅଙ୍ଗେ ଦେଲେ
ଜଗନ୍ନାଥେ ସିନା ସେକାଳରେ ରକ୍ଷାକଲେ । (ପ୍ରେମସୁଧାନିଧି-୧୬/୯)

**ପ୍ରହେଳିକା-** କୌଣସି କଥାକୁ ଲୁଚାଇ ବା ଗୋପନ କରାଯାଇ ବର୍ଣ୍ଣନା କରାଗଲେ ପ୍ରହେଳିକା ଅଳଙ୍କାର ହୁଏ । ଯଥା-

ମନ୍ତ୍ରୀଜା ପୁଚ୍ଛିଲା ଜେମାକୁ ଚାରିବର୍ଣ୍ଣେ ଏସନେ
ଏକାକ୍ଷର ଖ୍ୟାତି ଧରଣୀ କରଭୂଷା ତ୍ରିବର୍ଣ୍ଣେ । (କୁ, ବଳୟ)
ବୟସ ନାମ ଖ୍ୟାତ ମୁନି ଯାହା କରେ ସେ ହେବ (ଜୟ, ମାଳୟ)
ପ୍ରାକର୍ମ ଦ୍ୱିବର୍ଣ୍ଣେ ବିଲୋମେ ସମ କୁମର ହେବ । (ବଳ, ଲବ)
ବ୍ୟସ୍ତେ ବସନ୍ତାଦି ଫୁଲକେ ତହିଁ ତଟର ନାମ (ସୂର୍ଯ୍ୟ ଉଦୟ)
ସମସ୍ତ ପଢ଼ିଲେ ହୋଇବ ଜଳେ ଥିଲା କୁସୁମ । (କୁବଳୟ)
(ଲାବଣ୍ୟବତୀ-୬/୨୫-୨୭)

**ଭାଷାସମ-** ଏକବିଧ ଶବ୍ଦ ସଂସ୍କୃତ ପ୍ରଭୃତି ଭାଷାରେ ବାକ୍ୟସୃଷ୍ଟିକଲେ କିମ୍ବା ଏକବାକ୍ୟର ବିଭିନ୍ନ ଭାଷାଗତ ଶବ୍ଦର ସମାବେଶ ହୋଇଥିଲେ ଭାଷାସମ ଅଳଙ୍କାର ହୁଏ । ଉଦାହରଣ-

ମୋ ପ୍ରାଣ ଶତ ନାରୀ ରୂପେ ଉଭବ ଖଞ୍ଜନ ସାର ନୟନା
ଚନ୍ଦ୍ରମା ଗାନ୍ଧୋପ କମଳାନନକୁ ପୋତୁ କୃପଣ ହେଲୁ ନା ।
ରତି ରସାଳସୀ ଚାହିଁ ନାହିଁ କାହିଁ ପ୍ରିୟେ ଧନି ତୋ ସଂଳାତେ
ବେଗତେଜ ମହାରୋଷ ମନୁ ସହି ସନ୍ତୋଷେ ରଖ ତୁ ମୋତେ ।
ରତନସାର ବେଣୀ ଶୁଭ୍ର ବୁଦ୍ଧିରେ କ୍ଷୁଦ୍ର ମୋତି ହାର ହାସୀ
ରସିକାରତି ସରସ୍ୱତୀ ନିଘନ ରସଦାଦରବ ବସି ।
ଶୁଣି ମାନଭଙ୍ଗେ ରଙ୍ଗେ ଅନାଇଲା ମନ୍ଦେ ହସି କୁନ୍ଦଦନ୍ତୀ
ଜାଣିଲା ଏ ବନ୍ଧେ ସଂସ୍କୃତ ବଙ୍ଗଳା ତୈଲଙ୍ଗ ଖୋଇଠା ରୀତି । (ଚି.କା.ବ)

ଏହି ଉଦାହରଣରେ ତୈଲଙ୍ଗ (ତେଲୁଗୁ) ଶବ୍ଦ, ବଙ୍ଗଳା ଶବ୍ଦ, ଖୋରଠଶବ୍ଦ ଦେଶୀ ବା ଓଡ଼ିଆ ସଂସ୍କୃତ ଶବ୍ଦ -ଏହିପରି ପାଞ୍ଚ ପ୍ରକାର ସମାବେଶ ହୋଇଥିବାରୁ ଭାଷାସମ ଅଳଙ୍କାର ହୋଇଅଛି ।

**ଗୂଢୋକ୍ତି-** ନିଜର ଅଭିପ୍ରେତ ପୁରୁଷକୁ ଅନ୍ୟସହ କଥୋପକଥନ ଛଳରେ କୌଣସି ଭାବ ବ୍ୟକ୍ତ କରାଗଲେ ଏହି ଅଳଙ୍କାର ହୁଏ । ଉଦାହରଣ-

ସ୍ୱୟଂ ଦୂତୀ କି ଚିତ୍ତେ ଆଦରି ନାଗରେ ଦୃଷ୍ଟିପାତ ନ କରି
କହେ କି ସଖୀ ହସ୍ତକୁ ଧରି ଚତୁରୀ କରି ଯେ ।

ଶାଶୁ ଶ୍ୱଶୁର ପୁରକେ ଶୋଇ ବରଅଛନ୍ତି ବିଦେଶେ ଯାଇ
ଏକା ମୁଁ ଥାଇ ନିଦ୍ରା ନୁହଁଇ ରାତ୍ରକୁ ଡରି ଯେ ।

ସେ ଭୁବନେ ରହିଛି ଭୂତ ମନ୍ମଥ ଯେ
ସ୍ଥିତ ହୋଇଛି ଯେଣୁ ଦ୍ୱାରେ ଅଶ୍ୱସ୍ଥ ଯେ ।

ସାହା ମୋ ତୁହି କହିଲି ତୋତେ ଜାଣ ଅବଧି ମୋର ସଙ୍ଗତେ
ହର ରଜନୀ କୁହୁକ ମତେ କର କୃତାର୍ଥ ଯେ । (ପ୍ରେ.ସୁ. ୬ଷ୍ଠ ଛାନ୍ଦ)

**ଲୋମବିଲୋମ-** ଯେଉଁଠାରେ ସମସ୍ତ ପଦକୁ ମୂଳରୁ ଶେଷଯାଏଁ ପାଠ କଲେ ଯାହା, ସେହିପରି ଶେଷରୁ ମୂଳଯାଏଁ ପଢ଼ିଲେ ତାହା ହୋଇଥାଏ, ସେହି କ୍ଷେତ୍ରରେ ଲୋମବିଲୋମ ହୋଇଥାଏ । ଉଦାହରଣ-

'ସରି ନାହିଁ କାଳ କାହିଁ ନାରୀଶ
ସଦା ତୋ ମୁଦ ହୃଦ ମୁଁ ତୋ ଦାସ ।' (ସୁଭଦ୍ରା ପରିଣୟ)

**ଶୃଙ୍ଖଳା-** ଏହି ଅଳଙ୍କାର କ୍ଷେତ୍ରରେ ପ୍ରଥମ ପାଦର ପ୍ରାନ୍ତ ଶବ୍ଦଟି ଦ୍ୱିତୀୟ ପାଦର ଆଦ୍ୟରେ ରହି କ୍ରମାନ୍ୱୟରେ ବ୍ୟବହୃତ ହେଲେ ଶୃଙ୍ଖଳା ଅଳଙ୍କାର ହୁଏ । ଯଥା:-

ବୋଧେ ଶୃଙ୍ଖଳାରେ ରଘୁନାଥ ସୀତାମତି
ବିଚିତ୍ର ଚିତ୍ରକୂଟ ଯେ କୁଟଜେ ବ୍ରତତୀ ଯେ ।

ବ୍ରତତୀ ତତି ଜୟନ୍ତୀ ଅତିଭା ବାସନ୍ତି
ବାସନ୍ତି ସତୀରେ ଫୁଲ ଫୁଲରେ ପ୍ରବର୍ତ୍ତି ଯେ ।

ବର୍ତ୍ତିକ ତିକ ଆଳି ଆଳି ଯେ ବିହରିତ
ବିହରିତ ମାନ ମାନ ଶୁକ ଶୁକବିତ ଯେ ।

ବିତର ତରଳ ନେତ୍ର ନେତ୍ର ସୁବାସିନୀ
ବାସିନୀ ସୁଜାତି ଜାତି ସ୍ୱଭାବ ଭାବିନୀ ଯେ ।

ବିନିସ୍ୱତ ସ୍ୱତ ଶୋଭିତ ଭୀତବୈଭ୍ରାଜ
ବୈଭ୍ରାଜ ସୁରସାରସା କର କର ବୀଜ ଯେ ।

ବିଜନ ମିତ ମିତ ହରଷ ରସବାର
ବାରଣ ବୃଷା ବୃଷାଳ ଶାଳପୁର ପୁର ଯେ । (ବୈ.ବି)

ଶୃଙ୍ଖଳା ଅଳଙ୍କାର ତିନି ପ୍ରକାର ଅଟେ :-

**(କ) ସିଂହାବଲୋକନ ଶୃଙ୍ଖଳା :** ଏହି କ୍ଷେତ୍ରରେ ପ୍ରଥମ ପଦର ପ୍ରାନ୍ତ ଶବ୍ଦଟି ଦ୍ୱିତୀୟ ପାଦର ଆଦ୍ୟରେ ରହି ଏବଂ ଏହି କ୍ରମରେ ରଚିତ ହୋଇଥାଏ ।

**ଉଦାହରଣ-**

ସରସଗତି ସଙ୍ଗତି ନେତ୍ର ଦିନ ଅନ୍ତରେ ଲଭିନାଗର
ଗର କଣ୍ଠପରେ ପରମ କଷ୍ଟକୁ ମନରୁ କଲା ଅନ୍ତର
ତରଳାକ୍ଷୀବିନା ଘେନିଲା ମୋତେ ତ ନାହିଁ ଆନେ ପ୍ରତିକାର
କରଣ ବଶେ ବିଦେଶ କରିବାକୁ ଆଜ୍ଞା ଦେଲେ ନରେଶ୍ୱର । (ପ୍ରେ.ସୁ/୮)

**(ଖ) ଚକ୍ରସିଂହାବଲୋକନ ଶୃଙ୍ଖଳା :** ଏହି କ୍ଷେତ୍ରରେ ପ୍ରଥମ ପାଦର ଆଦ୍ୟପ୍ରାନ୍ତ ଶବ୍ଦ ଦ୍ୱିତୀୟ ପାଦର ଆଦ୍ୟପ୍ରାନ୍ତରେ ରହି ଏବଂ ଏହି କ୍ରମରେ ରଚିତ ହେଲେ ଚକ୍ରସିଂହାବଲୋକନ ଶୃଙ୍ଖଳା ହୋଇଥାଏ ।

ଉଦାହରଣ -

କରକଦନ୍ତୀ ପ୍ରବେଶ କୁସୁମାକର
କରତପ୍ରାୟ ରୁଚିର କେତକୀ ନିକର ।

କରଜ କି କେଶରୀର କି ଚଞ୍ଚୁ ଶୁକର
କରଲୋକନ ପ୍ରକାଶ ପଲାଶ ପ୍ରକର ।
କରନ୍ତି ମଧୁର ମଧୁପାନ ମଧୁକର
କରଭରୁ ଦେଖି ଚୁତେ ବିଳାସ ପିକର । (ଚିତ୍ରକାବ୍ୟ ବନ୍ଧୋଦୟ-୪/୩-୫)

(ଗ) ମଣ୍ଡୂକପ୍ଲୁତ ଶୃଙ୍ଖଳା

ଏହି କ୍ଷେତ୍ରରେ ପ୍ରଥମ ପାଦର ପ୍ରାନ୍ତ ଶବ୍ଦ ଦ୍ୱିତୀୟ ପାଦର ଆଦ୍ୟରେ ରହି କ୍ରମାନ୍ୱୟରେ ପାଦର ଶେଷ ଶବ୍ଦ- ପାଦର ଆଦ୍ୟରେ ରହିବା ସହିତ ଶବ୍ଦପୁଞ୍ଜ ଯୋଡ଼ି ଯୋଡ଼ି ହୋଇ ରଚିତ ହେଲେ ମଣ୍ଡୂକପ୍ଲୁତ ଶୃଙ୍ଖଳା ଅଳଙ୍କାର ହୋଇଥାଏ ।

ଉଦାହରଣ-

ବର୍ତ୍ତିକ ତିକ ଆଳି ଆଳି ଯେ ବିହରିତ
ବିହରିତ ମାନ ମାନ ଶୁକ ସୁକବି ତ ଯେ
ବିତର ତରଳ ନେତ୍ର ନେତ୍ର ସୁବାସିନୀ
ବାସିନୀ ସୁଜାତି ଜାତି ସ୍ୱଭାବୀ ଭାବିନୀ ଯେ ।
ବିନିସ୍ୱତ ସ୍ୱତ ଶୋଭିତ ଭୀତ ବୈଭ୍ରାଜ
ବୈଭ୍ରାଜ ସୁରସାରସା କର କର ବୀଜ ଯେ
ବିଜନ ମିତ ମିତ ହରଷ ରସ ବାର
ବାରଣ ବୃଷା ବୃଷାଳ ସାଳ ପୁର ପୁର ଯେ ।'' (ବୈ.ବି-୧୯/୫)

ଏଠାରେ 'ବିହରିତ' ଶବ୍ଦଟି ପ୍ରଥମ ପାଦର ଶେଷ ଏବଂ ଦ୍ୱିତୀୟ ପାଦର ଆରମ୍ଭରେ ବ୍ୟବହୃତ । ସେହିପରି ଦ୍ୱିତୀୟ ପାଦର ପ୍ରାନ୍ତ ଶବ୍ଦ 'ବିତ' ତୃତୀୟ ପାଦର ଆଦ୍ୟରେ ବ୍ୟବହୃତ ହୋଇଛି । ଏହି କ୍ରମ ସହିତ ଏଥିରେ ତିକ, ଆଳି, ମାନ, ଶୁକ, ତର, ନେତ୍ର, ଜାତି, ସ୍ୱତ, ଭୀତ, ରସା, କର, ମିତ, ରସ ଓ ବୃଷା ଶବ୍ଦ ଯୋଡ଼ି ଯୋଡ଼ି ହୋଇ ପ୍ରକାଶ ପାଇଛି । ସୁତରାଂ ଏହା ମଣ୍ଡୂକପ୍ଲୁତ ଶୃଙ୍ଖଳା ।

**ଉଦାତ୍ତ** -ଲୋକାତିଶୟ ସମ୍ପତ୍ତି ବା ମହାପୁରୁଷ-ଚରିତର ବର୍ଣ୍ଣନା ହେଲେ ଉଦାତ୍ତ ଅଳଙ୍କାର ହୁଏ ।

ଉଦାହରଣ-

ବଡଭୀ-ବଡଭୀ ଜନମ କରେ
ହରିହୟ ହରିହୟ ଚିତ୍ତରେ
ବଇଜୟନ୍ତୀକୁ ଜିଣିବ ବୋଲି
ବଇଜନ୍ତୀରେ ଛନ୍ଦନ ଭାଳି ।

ବିତାନ ଏ ସନ ପ୍ରସନ୍ନ ଧରେ ।
ଯେସନ ଗଗନ ନିଶା କାଳରେ ।
ଚନ୍ଦ୍ର ମଣ୍ଡଳ କରେ ପ୍ରକାଶି
ପୁଣି ତାର-ତାର-ରାଜି-ରାବିତ ।
ଯେଉଁ ପୁରହଙ୍କ ଅମରାବତୀ
ଉପରେ କରିଛି ଆକ୍ଷେପ ଅତି ।

x x x

କେତେ ଚିତ୍ରରଥ ଗନ୍ଧର୍ବଚୟ
ଅଳପ ଧନେ ହେଉଛନ୍ତି କ୍ରୟ

x x x

ତହିଁ ଭୋଗବତୀ କେତେ ମାତର ।
କଥାକେ କରି ଦେଇଛି ଇତର ।
ଅନନ୍ତ ମଣିରେ ସେ ଜ୍ୟୋତି ନାହିଁ ।
ଅନନ୍ତ ମଣି କିଣା ବିକା ଯହିଁ । (କୋ.ବ୍ର.ସୁ)

ଏଠାରେ ଚମ୍ପାନଗ୍ରର ଲୋକାତିଶୟ ସମ୍ପତ୍ତିର ବର୍ଣ୍ଣନା ହୋଇଛି ।

**ବିଷୟଭେଦ ଉଲ୍ଲେଖ ଅଳଙ୍କାର :** ଯେଉଁଠାରେ ଗ୍ରାହ୍ୟ ବସ୍ତୁ ନିଜର ବିଭିନ୍ନ ଗୁଣଦ୍ୱାରା ବିଭିନ୍ନ ଭାବରେ ଅବଧାରିତ ହୁଏ, ସେଠାରେ ବିଷୟ ଭେଦ ଅଳଙ୍କାର ହୁଏ ।

**ଉଦାହାରଣ -**

ଶୁଣି ଧନୁର୍ଦ୍ଧର ପଣ । ଲକ୍ଷେ ଭାବିଲେ ଲକ୍ଷ୍ମଣ ।
ହୋଇଥିବ ଇନ୍ଦ୍ରଜିତ । ଅବଶ୍ୟ ଜାତ ଯେ ।
କର୍ତ୍ତାପରି ବ୍ୟାକରଣେ । ପାଣିନୀୟ ମନେ ଗୁଣେ
କରିବା ଏହା ସଙ୍ଗତି । ହେବ ବ୍ୟୁତ୍ପତ୍ତି ଯେ ।
ମୀମାଂସା ବେଦ ବେଦାନ୍ତେ । ଟୀକା ପୁସ୍ତକ ଏ ସତେ ।
ଜୈମିନୀ ବିଖନ ବ୍ୟାସ । ପ୍ରଶଂସି ତୋଷ ଯେ ।
କଲ୍ୟାଣେ କର ଅଞ୍ଜଳି । କରେ ଶୁଣି ପତଞ୍ଜଳି
ବଇଶେଷିକ ସାଂଖ୍ୟରେ । ସାକ୍ଷୀ ପ୍ରକାରେ ଯେ । (କୋ.ବ୍ର.ସୁ)

ଏଠାରେ ନାୟକ ପୁଷ୍ପକେତୁ ନିଜର ବିଭିନ୍ନ ଗୁଣଦ୍ୱାରା ଲକ୍ଷ୍ମଣ, ବ୍ୟାକରଣ କର୍ତ୍ତା, ମୀମାଂସା, ବେଦବେଦାନ୍ତର ଟୀକା, ବୈଶେଷିକ ଓ ସାଂଖ୍ୟରେ ସାକ୍ଷୀ ଇତ୍ୟାଦି ରୂପରେ ବିଷୟ ଭେଦରେ ଗୃହୀତ ହୋଇଛି ।

**ବିକସର:** ଯେଉଁଠାରେ ବିଶେଷ ସକାଶେ ସାମାନ୍ୟ କିମ୍ୱା ସାମାନ୍ୟ ସକାଶେ ବିଶେଷର ଉଲ୍ଲେଖ କରାଯାଏ, ସେଠାରେ ବିକସ୍ୱର ଅଳଙ୍କାର ହୁଏ । ଉଦାହରଣ-

''ବଦିଲା ପ୍ରଥମେ ପିତାର ସତ୍ୟକୁ ରଖିବ କି ନାହିଁ ସାଧୁ
ବଂଶେ ଯାହାର ଭଗୀରଥ ସମ୍ଭବି ଉଦ୍ଧରିଲେ ପିତୃଦଗ୍ଧୁ
ବୋଲେ ରାମ ବହନ
ବିଷୟ କି କର ଅବଧାନ ।'' (ବୈ.ବି.୧୭/୨୨)

ଏଠାରେ ମାତା କୈକେୟୀ ଶ୍ରୀରାମଙ୍କୁ କହୁଛନ୍ତି କି - ତୁମ୍ଭେ ପ୍ରଥମେ ପିତାଙ୍କ ସତ୍ୟକୁ ରଖି କି ନାହିଁ ? - ଏହା ସାମାନ୍ୟ । ସେହିପରି ନିଜ ବଂଶରେ ଭଗୀରଥଙ୍କ ପରି ସାଧୁ ଜନ୍ମ ହୋଇ ପିତୃଲୋକଙ୍କୁ ଉଦ୍ଧାର କରିଥିଲେ- ଏହା ବିଶେଷ ପ୍ରସଙ୍ଗ । ଏହି ଉଦାହରଣରେ ସାମାନ୍ୟ ପ୍ରସଙ୍ଗ ସକାଶେ ବିଶେଷ ପ୍ରସଙ୍ଗ ଉଲ୍ଲେଖ ଥିବାରୁ ବିକସ୍ୱର ଅଳଙ୍କାର ହେଲା ।

**ଅନୁକୂଳ:** ଯେଉଁଠାରେ ପ୍ରତିକୂଳ ବିଷୟ ଅନୁକୂଳ ହୋଇଥାଏ, ସେଠାରେ ଅନୁକୂଳ ଅଳଙ୍କାର ହୁଏ । ଯଥା-

ନକର ଦଣ୍ଡ ବିଳମ୍ବ ଦଣ୍ଡ ହେଲେ ଅଦଣ୍ଡ ମୁହିଁ
ବାହୁ ପାଶରେ ବାନ୍ଧିପାଶରେ ରଖ ତୋଷରେ ତୁହି ।
କୁଚ ମନ୍ଦର ଠେଁସ ହୃଦର ନିଅ ମୋ ଦର ନାହିଁ
ନଖକରତ ତହିଁ କରତ ତନୁ ନିରତ ସହି । (ଲାବଣ୍ୟବତୀ, ୩୭/୧୧)

**ସମ୍ଭବ:** ଯେଉଁଠାରେ ଭବିଷ୍ୟତ କାଳୀକ ଅଭିଳାଷ ବାସ୍ତବରୂପ ଧାରଣ କରିବାର ସମ୍ଭାବନା ଥାଏ, ସେଠାରେ ସମ୍ଭବ ଅଳଙ୍କାର ହୁଏ ।

ଯଥା- (କ) ବୁଝାଇଲେ ଜଡ଼ଜନ ଭାବକୁ ପାଇବ
ଖଳଖର ଚୂତାଙ୍କୁର ପ୍ରାୟେକ ଗ୍ରାସିବ ଯେ ।
ମଧୁମକ୍ଷି ଉଚ୍ଛିଷ୍ଟେ ଅମୃତାଦର ସୁରେ
କରନ୍ତି ଯେମନ୍ତ ସାଧୁଜନ ସେ ପ୍ରକାରେ । (ଲା.ବ.୧/୧୦-୧୧)

(ଖ) କଥା ପ୍ରସଙ୍ଗ ପରାଏ ଖଳଜନମତି
ଉତ୍ତମ କଥା ପ୍ରସଙ୍ଗ ନୋହିଲା ବୋଲନ୍ତି ଯେ ।
ରାହୁ ଗ୍ରାସେ ଅଶୁଦ୍ଧ କି ହୁଏ ସୁଧାକର
ଅମରେ କରନ୍ତି ତହୁଁ ଅମୃତ ଆହାର
ସୁଜନ ମନୋରଞ୍ଜନ ହୋଇବ ଏ ଗୀତ । (ରସଲେଖା)

**ପରିବୃତ୍ତି:**

''ବିଶିଷ୍ଟସ୍ୟ ଯଦାଦାନମନ୍ୟାପୋହେନ ବସ୍ତୁନଃ
ଅର୍ଥାନ୍ତରନ୍ୟାସବତୀ ପରିବୃତ୍ତିରସୌ ଯଥା ।'' (କାବ୍ୟାଳଙ୍କାର-ଭାମହ,୩/୪୧)

ଯେଉଁ ବର୍ଣ୍ଣନାରେ ସମାନ ପଦାର୍ଥର ସମାନ କିମ୍ବା ନ୍ୟୂନପଦାର୍ଥ ବିନିମୟର ପ୍ରସଙ୍ଗ ରହିଥାଏ, ସେଠାରେ ପରିବୃତ୍ତି ଅଳଙ୍କାର ହୁଏ । ଯଥା-

ବସି ବସାଇଲା କୋଳେ      ଲପନ ଚୁମ୍ବିବା ବେଳେ
ଜେମାକରେ ଦେଲା ବେଗେ ରତନ ମୁଦି
ଜେମା କାଢ଼ି ମୋତି ମାଳା      ଲମ୍ବାଇଲା ପୁଂସ ଗଳା
ପରସ୍ପର ବରଣେ ହୋଇଲେ ପ୍ରମୋଦୀ । (ଲାବଣ୍ୟବତୀ)

ପରିବୃତ୍ତି ଚାରି ପ୍ରକାରର -

(କ) ଉତ୍କୃଷ୍ଟ ପଦାର୍ଥର ଉତ୍କୃଷ୍ଟ ପଦାର୍ଥ ସହିତ ବିନିମୟ

(ଖ) ଉତ୍କୃଷ୍ଟ ପଦାର୍ଥର ନିକୃଷ୍ଟ ପଦାର୍ଥ ସହିତ ବିନିମୟ

(ଗ) ନିକୃଷ୍ଟ ବା ନ୍ୟୂନ ପଦାର୍ଥର ଉତ୍କୃଷ୍ଟ ପଦାର୍ଥ ସହିତ ବିନିମୟ

(ଘ) ନିକୃଷ୍ଟ ପଦାର୍ଥର ନିକୃଷ୍ଟ ପଦାର୍ଥ ସହିତ ବିନିମୟ

**ପ୍ରତିବସ୍ତୁପମା:**

ସାଦୃଶ୍ୟଗର୍ଭକ ବାକ୍ୟଦ୍ୱୟରେ ସାଧାରଣ ଧର୍ମ ପୃଥକ୍ ରୂପେ ବର୍ଣ୍ଣିତ ହୋଇଥିଲେ ପ୍ରତିବସ୍ତୁପମାଳଙ୍କାର ହୁଏ । ଯଥା-

ବିନାଶ ହୋଇବ ଯେବେ କସ୍ତୁରୀରୁ କଳା
ଘେନେ ନାଶହେବ ତେବେ ଏ ବିରହ ଜ୍ୱାଳା ଯେ ।
ଭେଳାପକ୍ଷ ବିନେ ଏକା ନିଃଶ୍ୱାସେ ସାଗର
ତରିଲେ ଲଭିବି ଅବା ଶୋକସିନ୍ଧୁ ପାର ଯେ । (ଲା.ବ.୨୮/୧୧)

**ସମ** - ଯୋଗ୍ୟବସ୍ତୁ ସହ ଅନୁରୂପ ଯୋଗ୍ୟବସ୍ତୁର ସମ୍ବନ୍ଧ ବର୍ଣ୍ଣିତ ହେଲେ ସମ ଅଳଙ୍କାର ହୁଏ ।

ଉଦାହରଣ-

''ନବ ବୟସ ସଙ୍ଗେ ମେଳ । ହୋଇ ହେବାରୁ କୋଳାକୋଳ ।
ଶୋଭା ପ୍ରଭାଏ ଭିଡ଼ା ଭିଡ଼ି । ହରଷ ରସ ବଢ଼ାବଢ଼ି ।

ଭାବ ଲାଜ ଏ କଷାକଷି । ଭାବ ନୟନ ମିଶାମିଶି ।
ଲୀଳା ବିଳାସ ଦିଶିଗଲେ । ପ୍ରସନ୍ନ ସାଗରେ ଉଛୁଳେ ।
(କୋଟିବ୍ରହ୍ମାଣ୍ଡସୁନ୍ଦରୀ-୫ମ ଛାନ୍ଦ)

**ବିକସ୍ୱର-**

"ଯସ୍ମିନ୍ ବିଶେଷସାମାନ୍ୟ ବିଶେଷାଃ ସ ବିକସ୍ୱରଃ ।" (ଚନ୍ଦ୍ରାଲୋକ-୫/୬୯)

(ଖ) ରହିବାକୁ ଅମୃତ ଚନ୍ଦ୍ରମା ସିନା ସ୍ଥାନ
ବୈଦ୍ୟୋକ୍ତି ଯେ ଯହିଁ ରସେ ସେହି ସେ ପ୍ରଧାନ ।
ଉମାସ୍ୱସା ବିଷ୍ଣୁପଦ ଶିବ ଶିରସ୍ଥାୟୀ
ଦେଖ ଗଙ୍ଗା ଲବଣ ସାଗରେ ସାଙ୍ଗ ପାଇ
ପରମପ୍ଲାବିନୀ ତୀର୍ଥ ନୀରେ ସେତେ ଥିଲେ
ଚାତକଚିତ୍ତ ରସିକ ଘେନ ଘନ ଜଳେ । (କୋଟିବ୍ରହ୍ମାଣ୍ଡସୁନ୍ଦରୀ)

**ବିଶେଷୋକ୍ତି-** କାରଣ ଥାଇ ଯଦି କାର୍ଯ୍ୟର ଉତ୍ପତ୍ତି ନ ଘଟେ, ତେବେ ସେଠାରେ ବିଶେଷୋକ୍ତି ଅଳଙ୍କାର ହୁଏ । ଯଥା-

ନୋହୁ ଦରଶନ ଏଡ଼େ ମନକୁ ହରୁଛି
ମନ୍ତ୍ର ମୂର୍ତ୍ତି କରି ତାକୁ ବିଧାତା କରିଛି
ଅଛି ତହିଁରେ ଧିଆନ
ସିଦ୍ଧକରି ନ ପାରଇ କର୍ମବଳୁ ଆନ । (କୋଟିବ୍ରହ୍ମାଣ୍ଡସୁନ୍ଦରୀ-୧୧ଶ ଛାନ୍ଦ)

**ତର୍କ-** ଯେଉଁଠାରେ ପ୍ରକୃତ ବସ୍ତୁର ବର୍ଣ୍ଣନା କରା ନ ଯାଇ ଅପ୍ରକୃତ ବସ୍ତୁର ବର୍ଣ୍ଣନା କରାଯାଇଥାଏ ସେଠାରେ ତର୍କ ଅଳଙ୍କାର ହୁଏ ।

ଉଦାହରଣ-

ସହଜେ ସୁନ୍ଦରୀ ଶୋଭା କାନନ
ସିନ୍ଦୂର ଦ୍ୱିତୀୟେ ଅତି ରଞ୍ଜନ
ସିଂହ ଏଣୀ ମୃଗ ଏ ତିନି ଜାତି
ସଘଟନ ତହିଁ ହୋଇ ଅଛନ୍ତି ସେ
ସେ ଲୋଭ ହେଉ ଉଚିତ ଯେ
ଶିକାରୀ ମଦନ ନିରୋଳେ ଜଳରେ କଳା କି ଜାଲ ଆବୃତ ଯେ ।
(ସୁ.ପ. ୭/୨୦)

ଆଶ୍ରୟ-

ସେ କୁହୁକ ଧ୍ୱନି ଘେନି କୁହୁକ ବରହିଣୀ ଠାରେ କୁହୁରଜନୀ କଲା
ସ୍ୱରୂପତ ନ ମଣି ରମଣୀ ଶିରୋମଣି ଚମକି କ୍ଷିତିରେ ପଡ଼ିଲା ସେ ।
ସୁକୁମାରୀ । ସୁମନ୍ତ ମୁଖେ ଉଚ୍ଚାରିଲା
ସ୍ୱଜନେ ଏତେ ପଚ୍ଚରିଲା
ସମ୍ବତ୍ସରରୁ କ୍ଷୟେ ପକ୍ଷୁଁ ତିଥି ପରାୟେ ରତୁକି ହୋଇଲା ରେ । (ସୁ.ପ.୮/୧୧)

ମାଳବରେ ରହି ଗ୍ରୀଷମ ସମୟେ କାମେ ଦୁଃଖୀ ନୃପନନ୍ଦନ
କରି ଶ୍ରବଣ ଝିଙ୍କାରୀ ନିଃସ୍ୱନ
ପଲ୍ଲବଚଳିତ ଋହିଁ ବିଋରଇ ଅଇଲା ପାଶକୁ ଧନ ହେ ଦଇବ ।
ଆଜି କରୁଣା ମୋରେ ହୋଇଲା
ପ୍ରିୟା ଆଗେ କେ ମୋ ଦୁଃଖ କହିଲା ।
ଚେତନା ବଶେ ଅବଶେ ବସି ପୁଣି ଭୃଙ୍ଗେ ନିବେଦନ କଲା ସେ । ରସିକ
(ପ୍ରେ.ସୁ.୧୨/୧)

□□□

# ପଞ୍ଚମ ପରିଚ୍ଛେଦ

## ଭଞ୍ଜ ସାହିତ୍ୟରେ ଉଭୟାଳଙ୍କାର :

**ମିଶ୍ର/ଉଭୟାଳଙ୍କାର :** ସାଧାରଣତଃ ସଂସୃଷ୍ଟି ଓ ସଙ୍କର ଅଳଙ୍କାରକୁ ଉଭୟାଳଙ୍କାର ଭାବରେ ଗ୍ରହଣ କରାଯାଇଛି । ଏହାକୁ ମଧ୍ୟ ମିଶ୍ର ଅଳଙ୍କାର କୁହାଯାଏ ।

**ସଂସୃଷ୍ଟି**–ଯେଉଁଠାରେ ଏକାଧିକ ଅଳଙ୍କାର ପରସ୍ପର ନିରପେକ୍ଷ ଭାବରେ ରହିଥାନ୍ତି, ସେଠାରେ ସଂସୃଷ୍ଟି ଅଳଙ୍କାର ହୁଏ । ଆଚାର୍ଯ୍ୟ ଭାମହ ଏହି ଅଳଙ୍କାରକୁ ସ୍ୱୀକୃତି ପ୍ରଦାନ କରିଅଛନ୍ତି । ଭାମହଙ୍କ 'କାବ୍ୟାଳଙ୍କାର' ଗ୍ରନ୍ଥରେ ପ୍ରଥମେ ଏହି ଅଳଙ୍କାରର ଉଲ୍ଲେଖ ରହିଥିଲା । ପରବର୍ତ୍ତୀ କାଳରେ ଆଚାର୍ଯ୍ୟ ଉଦ୍‌ଭଟ, ବାମନ, ମମ୍ମଟ, ଭୋଜରାଜ, ବିଦ୍ୟାଧର ପ୍ରମୁଖ ଏହି ଅଳଙ୍କାରକୁ ଅଧିକଭାବେ ପର୍ଯ୍ୟାଲୋଚନା କରିଛନ୍ତି । ଆଚାର୍ଯ୍ୟ ଭାମହ ଲେଖିଛନ୍ତି–

''ବରାବିଭୂଷା ସଂସୃଷ୍ଟିର୍ବହ୍ୱଳଙ୍କର ଯୋଗତଃ
ରଚିତା ରତ୍ନମାଳେବ ସା ଚୈବମୁଦିତା ଯଥା ।'' (କାବ୍ୟାଳଙ୍କାର ୩/୪୯)

ସାହିତ୍ୟଦର୍ପଣକାର ବିଶ୍ୱନାଥ କବିରାଜ ମଧ୍ୟ ଲେଖିଛନ୍ତି–

'ମିଥୋଽନପେକ୍ଷୟୈତେଷାଂ ସ୍ଥିତିଃ ସଂସୃଷ୍ଟି ରୁଚ୍ୟତେ' ।(ସାହିତ୍ୟଦର୍ପଣ ୧୦/୯୮)

ଅର୍ଥାତ୍ ଯେଉଁଠି ଏକାଧିକ ଅଳଙ୍କାର ନିରପେକ୍ଷ ଭାବରେ ଏକତ୍ର ଅବସ୍ଥାନ କରିଥାନ୍ତି, ସେଠାରେ ସଂସୃଷ୍ଟି ଅଳଙ୍କାର ହୁଏ ।

ଉଦାହରଣ–

''ପ୍ରେମ ବୀଜ ତାର ରୋପିତ ହୃଦେ ।
ରୋମାଞ୍ଚିତ ବ୍ୟାଜେ ଅଙ୍କୁର ଉଦେ ।'' (ଲାବଣ୍ୟବତୀ, ୧୮/୩)

ଏଠାରେ ପ୍ରଥମ ପାଦରେ ପ୍ରେମ ସହିତ ବୀଜର ଅଭେଦତ୍ୱ ପ୍ରତିପାଦିତ ହୋଇଥିବାରୁ ରୂପକ ଅଳଙ୍କାର ହେଲା । ଦ୍ୱିତୀୟ ପାଦରେ ରୋମାଞ୍ଚକୁ ଅଙ୍କୁର ଉଦୟ ହେବା ତର୍କଣା

କରାଯାଇଥିବାରୁ ଉତ୍ପ୍ରେକ୍ଷା ଅଳଙ୍କାର ହେଲା । ଏହି ଉଦାହରଣରେ ଦୁଇଟି ଅଳଙ୍କାର ନିରପେକ୍ଷ ଭାବରେ ରହିଥିବାରୁ ସଂସୃଷ୍ଟି ଅଳଙ୍କାର ହେଲା ।

ସଂସୃଷ୍ଟି ଅଳଙ୍କାର ତିନି ପ୍ରକାରର-

**(କ) ଶବ୍ଦାଳଙ୍କାର ସଂସୃଷ୍ଟି** - ଯେଉଁ ପଦରେ ଦୁଇ ବା ଦୁଇରୁ ଅଧିକ କେବଳ ଶବ୍ଦାଳଙ୍କାର ନିରପେକ୍ଷ ଭାବରେ ଥାଏ, ସେଠାରେ ଶବ୍ଦାଳଙ୍କାର ସଂସୃଷ୍ଟି ହୋଇଥାଏ । ଉଦାହରଣ- ବୃହତ୍ ଭାନୁ ଭାନୁ ଭାନୁ ପ୍ରଭାତାପ ନାହିଁ

ବୃତ ତମାଳମାଳ ମାଳତୀ ଲତା ଯହିଁ ଯେ । (ବୈଦେହୀଶବିଳାସ)

ଏଠାରେ ଅନୁପ୍ରାସ ଓ ଯମକ ଅଳଙ୍କାର ନିରପେକ୍ଷ ଭାବରେ ରହିଛନ୍ତି ।

**(ଖ) ଅର୍ଥାଳଙ୍କାର ସଂସୃଷ୍ଟି**- ଯେଉଁଠାରେ ଏକାଧିକ ଅଳଙ୍କାର ନିରପେକ୍ଷ ଭାବରେ ଅବସ୍ଥାନ କରିଥାନ୍ତି ସେଠାରେ ଏହି ଅଳଙ୍କାର ହୋଇଥାଏ ।

**(ଗ)ଶବ୍ଦାର୍ଥାଳଙ୍କାର ସଂସୃଷ୍ଟି**-ଯେଉଁଠାରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ତିଳତଣ୍ଡୁଳନ୍ୟାୟରେ ନିରପେକ୍ଷ ଭାବରେ ମିଶି କରି ରହିଥାନ୍ତି ସେଠାରେ ଏହି ଅଳଙ୍କାର ହୁଏ ।

**ସଙ୍କର :**

ଯେଉଁଠାରେ ଅନେକ ଅଳଙ୍କାର କ୍ଷୀର ନୀର ନ୍ୟାୟରେ ସାପେକ୍ଷ ରୂପରେ ଅବସ୍ଥାନ କରିଥାନ୍ତି, ସେଠାରେ ସଙ୍କର ଅଳଙ୍କାର ହୁଏ । ଏଠାରେ ରହିଥିବା ଅଳଙ୍କାରଗୁଡ଼ିକୁ ପୃଥକ କରି ହୁଏନାହିଁ । ଆଚାର୍ଯ୍ୟ ଉଦ୍ଭଟ ସଙ୍କର ଅଳଙ୍କାରର ପ୍ରଥମ ପ୍ରବର୍ତ୍ତକ ରୂପେ ସ୍ୱୀକୃତ । ପରବର୍ତ୍ତୀ କାଳରେ କତିପୟ ଆଚାର୍ଯ୍ୟଗଣ ଏହି ଅଳଙ୍କାରକୁ ସ୍ୱୀକୃତି ପ୍ରଦାନ କରିବା ସହିତ ଏହାର ବିକାଶରେ ଯଥେଷ୍ଟ ପଦକ୍ଷେପ ନେଇଛନ୍ତି । ଏହି ସ୍ମରଣୀୟ ଆଚାର୍ଯ୍ୟମାନେ ହେଉଛନ୍ତି- ମମ୍ମଟ, ଭୋଜରାଜ, ବିଦ୍ୟାଧର, ବିଶ୍ୱନାଥ କବିରାଜ ପ୍ରମୁଖ । ସଙ୍କର ଅଳଙ୍କାରର ସଂଜ୍ଞା ନିରୂପଣ କରି କୁହାଯାଇଛି-

''ଏକସ୍ୟ ଚ ଗ୍ରହେ ନ୍ୟାୟଦୋଷାଭାବେ ଚ ସଙ୍କରଃ
ଶବ୍ଦାର୍ଥବତ୍ୟଳଙ୍କାରା ବାକ୍ୟ ଏକତ୍ରଭାସିନଃ ।
ସଙ୍କରୋ ବୈ ଏକବାକ୍ୟାଂଶାପ୍ରବେଶଦ୍ବାଽଭିଧୀୟତେ
ପରସ୍ପରୋପକାରେଣ ଯତ୍ରାଳଂକୃତୟଃ ସ୍ଥିତାଃ
ସ୍ୱାତନ୍ତ୍ରେଣାତ୍ମଲାଭଂ ନୋ ଲଭନ୍ତେ ସୋଽପି ସଙ୍କରଃ ।
(କାବ୍ୟାଳଙ୍କାର ସାର ସଂଗ୍ରହ-୫/୧୧-୧୩)

''ଅଙ୍ଗାଙ୍ଗିତ୍ୱେଽଲଂ କୃତୀନାଂ ତଦ୍ବଦେକାଶ୍ରୟସ୍ଥିତୌ
ସନ୍ଦିଗ୍ଧତ୍ୱେ ଚ ଭବତି ସଙ୍କର ସ୍ତ୍ରିବିଧଃ ପୁନଃ । (ସାହିତ୍ୟ ଦର୍ପଣ-୧୦/୯୮)

ସଙ୍କର ଅଳଙ୍କାର ତିନି ପ୍ରକାରର ଅଟେ-

**(କ) ଅଙ୍ଗାଙ୍ଗୀଭାବ ସଙ୍କର** - ଯେଉଁଠାରେ ଅଳଙ୍କାରମାନଙ୍କ ମଧ୍ୟରୁ କେତେକ ଅଙ୍ଗ (ଅର୍ଥାତ୍ ଉପକାରୀ) ଏବଂ କେତେକ ଅଙ୍ଗୀ (ଅର୍ଥାତ୍ ଉପକାର୍ଯ୍ୟ) ଭାବରେ ରହିଥାନ୍ତି ସେଠାରେ ଅଙ୍ଗାଙ୍ଗୀଭାବ ସଙ୍କର ହୁଏ ।

**(ଖ) ଶବ୍ଦ ଅର୍ଥାଶ୍ରିତ ସଙ୍କର**- ଯେଉଁଠାରେ ଏକମାତ୍ର ଆଶ୍ରୟରେ (ଅର୍ଥାତ୍ ଶବ୍ଦ ବା ଅର୍ଥରେ) ଅନେକ ଅଳଙ୍କାର ଅବସ୍ଥାନ କରନ୍ତି ସେଠାରେ ଶବ୍ଦ ଅର୍ଥାଶ୍ରିତ ସଙ୍କର ହୁଏ । ଯଥା- ଚନ୍ଦ୍ରକୁ କହେ କୁମାର ମାରକୁ କି

ଏହି ନିକଟେ ଲସାଇବି
ଥିବ ଜୀବ ଜୀବ ବଲ୍ଲଭୀ ଲଭିବାଯାଏ
ଯାଏ କି ଭାଗ୍ୟ ଦିଶାଇବି
ଚନ୍ଦ୍ରମା
ରହସ୍ୟେ ରସେ ରସାଇବି
ନ ବସାଇ ତାକୁ ପଲଙ୍କେ ପଲଙ୍କେ
ଉରୁ ଉପରେ ବସାଇବି । (ପ୍ରେମ ସୁଧାନିଧି)

**(ଗ) ସନ୍ଦେହ ସଙ୍କର** - ଗୋଟିଏ ପଦରେ ବିଭିନ୍ନ ଅଳଙ୍କାର ମଧ୍ୟରେ ସନ୍ଦେହ ନ ରହିଲେ ସନ୍ଦେହ ସଙ୍କର ଅଳଙ୍କାର ହୁଏ ।

ସଙ୍କର ଅଳଙ୍କାରର ଉଦାହରଣ-
''ବନର କେଉଁ ପ୍ରଦେଶ ଅଦିତି ପ୍ରକାର
ବସ୍ତକ ଅନୁଭାବରେ ଶିଖୀ ଶୋଭାକର ।
ବରୁଣ ଦେବ ବଲ୍ଲଭ ଉଦୟ କରିଛି
ବହୁ ସୁମନ ତୋଷ କର ହୋଇଅଛି । (ବୈ.ବି. ୩/୬-୭)

ଏହି ଉଦାହରଣରେ ବନର ଏକ ଅଂଶ ଅଦିତି ପରି ଶୋଭା ପାଉଛି । ତେଣୁ ଏଠାରେ ଉପମା ଅଳଙ୍କାର ହୋଇଛି । ଏହି ଉପମାର ସାଧକ ରୂପେ ବସ୍ତକାଦି ଶବ୍ଦ ପ୍ରଯୁକ୍ତ । ଏହି ବସ୍ତକ (ବାଳକ, ଗିରିମଲ୍ଲୀ) ଶିଖୀ (ଅଗ୍ନି, ଦ୍ରୁମ) ବରୁଣ (ବରୁଣ ଦେବତା, ବୃକ୍ଷ ବିଶେଷ), ଦେବ ବଲ୍ଲଭ (ଇନ୍ଦ୍ର, କେଶର ବୃକ୍ଷ), ସୁମନା (ଦେବତା, ପୁଷ୍ପ) - ଏହିପରି ଦୁଇ ଦୁଇ ଗୋଟି ଅର୍ଥର ଦ୍ୟୋତକ ହେତୁ ଶ୍ଳେଷ ଅଳଙ୍କାର ହେଇଛି । ଏହି ଅଳଙ୍କାର ଦ୍ୱୟ କ୍ଷୀର ନୀର ନ୍ୟାୟରେ ସାକ୍ଷେପ ରୂପରେ ରହିଥିବାରୁ ସଙ୍କର ଅଳଙ୍କାର ହୋଇଛି ।

ଭଞ୍ଜ ସାହିତ୍ୟରେ ଉଭୟ ଅଳଙ୍କାରର ଅନେକ ଦୃଷ୍ଟାନ୍ତ ରହିଛି । ଉଭୟ ଅଳଙ୍କାରର ପ୍ରୟୋଗରେ ଉପେନ୍ଦ୍ର ଭଞ୍ଜ ବାସ୍ତବିକ୍ ନିଜର ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ।

ଠଠଠ

# ଷଷ୍ଠ ପରିଚ୍ଛେଦ

## ଶ୍ରେଷ୍ଠ ଆଳଙ୍କାରିକ କାବ୍ୟକାର : ଉପେନ୍ଦ୍ର ଭଞ୍ଜ

ମଧ୍ୟଯୁଗୀୟ କବିମାନଙ୍କ ମଧ୍ୟରେ ଉପେନ୍ଦ୍ର ଥିଲେ ଶ୍ରେଷ୍ଠ ଆଳଙ୍କାରିକ କବି । ମଧ୍ୟଯୁଗୀୟ ପ୍ରମୁଖ କାବ୍ୟକାରମାନେ ହେଉଛନ୍ତି ଅର୍ଜ୍ଜୁନ ଦାସ, ବିଷ୍ଣୁଦାସ, ହରିହର ନରେନ୍ଦ୍ର, ଶିଶୁଶଙ୍କର ଦାସ, ଦେବଦୁର୍ଲ୍ଲଭ ଦାସ, ନରସିଂହ ସେଣ, ପ୍ରତାପ ରାୟ, ଧନଞ୍ଜୟ ଭଞ୍ଜ, ଲୋକନାଥ ବିଦ୍ୟାଧର, ଦୀନକୃଷ୍ଣ ଦାସ, ଭୂପତି ପଣ୍ଡିତ, ଅଭିମନ୍ୟୁ ସାମନ୍ତସିଂହାର, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ବ୍ରଜନାଥ ବଡ଼ଜେନା, କବିସୂର୍ଯ୍ୟ ବଳଦେବ ରଥ, ଯଦୁମଣି ମହାପାତ୍ର । ଏହି ସମସ୍ତ କବିଙ୍କୁ ଉପେନ୍ଦ୍ର ଅଳଙ୍କାର ପ୍ରୟୋଗରେ ଅତିକ୍ରମ କରିଯାଇଛନ୍ତି । ଉପେନ୍ଦ୍ର ଥିଲେ ଶବ୍ଦ କବି, ଅର୍ଥ କବି ଅଳଙ୍କାର କବି । ସେ ନିଜେ ଶବ୍ଦସାଗର ଏବଂ ପାରିହେବା ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି-

''ତରଣି କୁଳର ସାର ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସାଗର ପାର ।''

ଉପେନ୍ଦ୍ର କାବ୍ୟ ଭାରତୀରେ ବିଭିନ୍ନ ଅଳଙ୍କାରର ବିନ୍ୟାସ ଯଥାର୍ଥରେ ଏକ ବିସ୍ମୟ । ସମସ୍ତ ଅଳଙ୍କାର ଶାସ୍ତ୍ର ଅଧ୍ୟୟନ କରି ଉପେନ୍ଦ୍ର ଯଥାର୍ଥରେ ଥିଲେ ତତ୍ତ୍ୱଦର୍ଶୀ ବିଦ୍ୱାନ । ରୀତି କାବ୍ୟାଦର୍ଶରେ ଅନୁପ୍ରାଣିତ ହୋଇ ଉପେନ୍ଦ୍ର ବ୍ୟାପକ ଅଳଙ୍କାର ପ୍ରୟୋଗରେ ବ୍ରତୀ ହୋଇଥିଲେ । ଉପେନ୍ଦ୍ର ସ୍ୱୟଂ ଘୋଷଣା କରିଛନ୍ତି-

''ମୂର୍ତ୍ତିମନ୍ତ କରି ମୃଦୁଗୀତ ବିସ୍ତରଇ
ଏଣୁ କରି ଥିବ ଅଳଙ୍କାର ଯୁକ୍ତ ହୋଇ ଯେ
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରଙ୍କୁ ଆନନ୍ଦ କରିବ ହେ ।'' (ଲାବଣ୍ୟବତୀ-୧/୭-୮)

ଉପେନ୍ଦ୍ର ତାଙ୍କର ବିଭିନ୍ନ କାବ୍ୟର ଛାନ୍ଦଗୁଡ଼ିକରେ ବିଭିନ୍ନ ଅଳଙ୍କାରର ପରିବେଷଣର କଥା ଉଲ୍ଲେଖ କରିଛନ୍ତି । ତାଙ୍କର ବହୁଲୋକପ୍ରିୟ କାବ୍ୟ 'ଲାବଣ୍ୟବତୀ'ର ଷଷ୍ଠ ଛାନ୍ଦରେ ଲେଖିଛନ୍ତି-

''ଏଠାରୁ ଏ ଛାନ୍ଦ ସମ୍ପୂର୍ଣ୍ଣ ଏତେ ଲକ୍ଷଣେ ଯୁକ୍ତ
ଶ୍ଳେଷରେ ଅଭଙ୍ଗ ସଭଙ୍ଗ ଭଙ୍ଗାଭଙ୍ଗ ହିଁ ବ୍ୟକ୍ତ ।

ଛ' ବିଧି ଯମକ ଆଶୟ ରୂପକରେ ଦୀପକ
ବହିର୍ଲପି ଅନ୍ତର୍ଲପିକା ଘେନି କର୍ଣ୍ଣ ରୋଚକ । (ଲାବଣ୍ୟବତୀ-୬/୫୪-୫୫)

'ସୁଭଦ୍ରା ପରିଣୟ' କାବ୍ୟଟି ଉପେନ୍ଦ୍ରଙ୍କର ଅନ୍ୟତମ ରସାଳ ଓ ବୁଧବୋଧକ କାବ୍ୟ । ଏହି କାବ୍ୟଟିର ପ୍ରଥମ ଛାନ୍ଦରେ କବି ଲେଖିଛନ୍ତି-

''ସୁଜ୍ଞଜନେ ଶୁଣ ଏ ଗୀତରେ ଦେଇ ମତି
ସରଳ ପଦମାନଙ୍କେ ମୋହିବ ଏ ଶ୍ରୁତି ଯେ ।

ସହିତ ଶ୍ଳେଷରୂପକ ଯମକ ହୋଇବ
ସିଂହାବଲୋକନ ଛଳ ବିରୋଧା ହିଁ ଥିବ ଯେ ।

ସଚିତ୍ର ହୋଇବ ଛାନ୍ଦବନ୍ଦୀ ଅନୁପ୍ରାସେ
ସ୍ଫୁଟ ଆଶ୍ରୟରେ ପୁନରୁକ୍ତି ବଦାଭାଷେ ଯେ ।

ସାର୍ଥହେବ ଦତ୍ତାକ୍ଷର ଚ୍ୟୁତାକ୍ଷର କାହିଁ
ସୁମତି ହୋଇବ ଦତ୍ତ ଚ୍ୟୁତାକ୍ଷର ଥାଇ ଯେ ।'' (ସୁଭଦ୍ରା ପରିଣୟ ୧/୧୫-୧୮)

ଉପେନ୍ଦ୍ର କାବ୍ୟମାନସର ଅନ୍ୟତମ ମହିମ୍ନ କୃତି ହେଉଛି 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' । ଏହି କାବ୍ୟର ବିଭିନ୍ନ ଛାନ୍ଦମାନଙ୍କରେ କବି ଉପେନ୍ଦ୍ର ବିବିଧ ଅଳଙ୍କାରର ସୂଚନା ଦେଇଛନ୍ତି । ଯଥା-

''ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ସେହି ଘେନିମ ଏ ଛାନ୍ଦ ।
ବ୍ୟସ୍ତ ଅଳଙ୍କାର । ମଣ୍ଡନବିଧି ନିର୍ଦ୍ଦୋଷ ବିଗ୍ରହ ।
ଉତ୍ପ୍ରେକ୍ଷା ଉପମା ରୂପକ ତିନି
ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଘେନି
ଦତ୍ତଚ୍ୟୁତାକ୍ଷର ଉଦୟ କାହିଁ
ବୁଝ ସଂଖ୍ୟାବାନ ଆୟତ୍ତ ନାହିଁ ।'' (କୋ.ବ୍ର.ସୁ-୧୨/୧-୨)

ଉପେନ୍ଦ୍ର ଥିଲେ ବିଚକ୍ଷଣ ଶବ୍ଦ କବି । ତେଣୁ ଶବ୍ଦ ବିଚକ୍ଷଣ କୋବିଦମାନେ ତାଙ୍କ କାବ୍ୟର ଛାନ୍ଦଗୁଡ଼ିକୁ ବିବେଚନା କରିବା ଅଭିପ୍ରାୟରେ କବି ଲେଖିଛନ୍ତି-

"ନାନା ଶବଦରେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଛାନ୍ଦ ବିବେଚନା । (କୋ.ବ୍ର.ସୁ. ୩/୧)

ଉପେନ୍ଦ୍ରଙ୍କର ଆଳଙ୍କାରିକ ମାନସିକତା 'ପ୍ରେମସୁଧାନିଧି' କାବ୍ୟରେ ପ୍ରତିଫଳିତ ହୋଇଛି । କାବ୍ୟଟିର ଷୋହଳ ଛାନ୍ଦରେ କବି ଲେଖିଛନ୍ତି-

"କବି ବିନା କେ ବୁଝିବ ଏଥି କଷ୍ଟ ଯେତେ
ପ୍ରଥମେ ଆଦ୍ୟଯମକ ଘେନ ଶୁଦ୍ଧଚିତ୍ତେ ।

ଦ୍ୱିତୀୟ ଅବନା ମଧ୍ୟ ଯମକ ତୃତୀୟ
ଛେକାନୁପ୍ରାସରେ ପୁଣି ଅତି ରମଣୀୟ ।

ଚତୁର୍ଥେ ଅଦ୍ଭୁତ ବିରୋଧାଭାସ ପଞ୍ଚମେ
ଷଷ୍ଠେ ରୂପକ ବୃତ୍ତି ଅନୁପ୍ରାସ ସପ୍ତମେ ।

ଅଷ୍ଟମରେ ମନୋରମ ସିଂହାବଲୋକନ
ନବମେ ପ୍ରାନ୍ତ ଯମକ ମାସନ ରଞ୍ଜନ ।

ଦଶମେ ତ୍ରିଭଙ୍ଗୀ ଏକାଦଶରେ ରୁଚିର
ଆଦ୍ୟପ୍ରାନ୍ତ ଯମକ ଚିତ୍ତକୁ ବଶ କର ।

ଦ୍ୱାଦଶେ ଆଶ୍ରୟ ଯୋଡ଼ି ଯମକ ତ୍ରିଦଶେ
ଚତୁର୍ଦ୍ଦଶେ ଦୃଷ୍ଟାନ୍ତର ଅତ୍ୟନ୍ତ ସରସେ ।

ଅନୁଲୋମ ପ୍ରତିଲୋମ ପଞ୍ଚଦଶେ ଘେନ
ଷଷ୍ଠଦଶ ଛାନ୍ଦେ ଅଛି ଏତେକ ବିଧାନ ।

ପୁନରୁକ୍ତି ବଦାଭାଷ ଜନ ମନୋହର
ଦତ୍ତାକ୍ଷର ଚ୍ୟୁତାକ୍ଷର ଦତ୍ତଚ୍ୟୁତାକ୍ଷର ।

ଏକାକ୍ଷର ସରୋଷ୍ଠକ ନିରୋଷ୍ଠକ ଘେନି
ମହାଯମକ ସର୍ବଯମକ ଏହୁ ବେନି ।

ଯମକ ପ୍ରଧାନ କରି ଯେଣୁ କଲି ଗୀତ
ଶ୍ଳେଷ ଛାନ୍ଦ ନ ବିରଚି କଲି ସମାପତ ।" (ପ୍ରେମସୁଧାନିଧି-୧୬ ଛାନ୍ଦ)

(୧) 'ପ୍ରେମସୁଧାନିଧି' ଷୋହଳ ଛାନ୍ଦବିଶିଷ୍ଟ କାବ୍ୟ । ସମଗ୍ର କାବ୍ୟଟି ଅଳଙ୍କାରଯୁକ୍ତ । 'ପ୍ରେମସୁଧାନିଧି' କାବ୍ୟର ପ୍ରଥମ ଛାନ୍ଦଟି ଆଦ୍ୟଯମକରେ ରଚିତ । ଯଥା-

କୁମୁଦ କୁମୁଦ ବିଧୂ ଯଶ ଉଦିତ
ଜନକ ଜନକ ତୋଷ କରେ ବିଦିତ ।

ଅନନ୍ତ ଅନନ୍ତ ଯାହା ମହିମାମାନ
ଜଗତିରେ ଜଗତୀରେ ଲୀଳା ରଚନ ।

ସୀତା ଶିତାମ୍ବୁଜ ମୁଖ ମତ୍ତଭ୍ରମର
ରାମ ରାମ କଦଳୀକମ୍ପନେ ଶରୀର ।

x x x

ବିରହି ବିରହି ନେତ୍ର ଶୋଭା କଥନ
ଆଳୀ ଆଳିକରେ ହୋଇ ହରଷ ମନ ।

ଉପଇନ୍ଦ୍ର ଉପଇନ୍ଦ୍ର ଧ୍ୟାନେ ଏ ଛାନ୍ଦ
ରଚିତର ଚିତ୍ତ କରି ଅତି ଆନନ୍ଦ ।''

(୨) ସେହିପରି ଦ୍ୱିତୀୟ ଛାନ୍ଦଟି ଅବନା ନିୟମରେ ରଚିତ । ଯଥା -

''ନରବରଜ କରତ ଶ୍ରବଣ
ଅସମ ପରମ ରମ୍ୟ ଈକ୍ଷଣ ।

ମଦନ ମଦ ବରଧନକର
ସବଳଫରଳ ତରଳତର ।

ଦମ୍ଭଧରକ୍ଷକ । ବୟସ୍ଥଜନ ପ୍ରଳୟ ସର୍ଜକ ।''

(୩) ତୃତୀୟ ଛାନ୍ଦଟି ଛେକାନୁପ୍ରାସ ଓ ମଧ୍ୟଯମକ ଅଳଙ୍କାରପୂର୍ଣ୍ଣ । ଦୃଷ୍ଟାନ୍ତ ସ୍ୱରୂପ-

''ଚନ୍ଦ୍ରକୁ କହେ କୁମାର ମାରକୁ କି ଏହି ନିକଟେ ଲସାଇବି
ଥିବ ଜୀବ ଜୀବବଲ୍ଲଭୀ ଲଭିବା ଯାଏ କି ଭାଗ୍ୟ ଦିଶାଇବି ।
ଚନ୍ଦ୍ରମା । ରହସ୍ୟେ ରସେ ରସାଇବି ।
ନବସାଇ ତାକୁ ପଲକେ ପଲଙ୍କେ ଉରୁ ଉପରେ ବସାଇବି ।''

(୪) ଚତୁର୍ଥ ଛାନ୍ଦଟି ଅଦ୍ଭୁତୋପମାଯୁକ୍ତ । ଜଗତରେ ପ୍ରଚଳିତ ଘଟଣାର ବିପରୀତ ବର୍ଣ୍ଣନାକୁ ଅଦ୍ଭୁତ ଉପମା କୁହାଯାଏ । ଯଥା-

''ସର୍ବମତରେ ସନମତ ଏମନ୍ତ ପର୍ବତ ପରେ ଜାତ ଲତା
ଲତାରୁ ଏବେ ପର୍ବତ ଜାତହେଲା ରହିଁ କମ୍ପିବେ ଉର୍ଦ୍ଧ୍ୱରେତା ।

ହାହା ଶୋଭିତା । ଦେଖି କେ ନୋହିବ ଲୋଭିତା
କରୀପରେ ହରି ହରି ପରେ କରୀ ଚଢ଼ାଇଲା ଏବେ ବନିତା ।

ଫଳ ଚୁମ୍ବଇ ଭ୍ରମର ବୋଲି ଆଜ୍ଞି ଯାଏ ତ ଶ୍ରବଣ ନଥିଲା
ଶ୍ରୀଫଳ ଯୁଗଳୁଁ ମଧୁର ମଧୁକୁ ଏବେ ସୁନ୍ଦରୀ ପିଆଇଲା ।

କୋକ ଯୁଗ୍ମର । ରାତ୍ରିରେ ବିଚ୍ଛେଦ ହୁଅଇ
ଏ କି ଚମତ୍କାର ହରି ବୋଲିବାର ଆନକଲା ନାରୀ ବଡାଇ ।''

(୫) 'ପ୍ରେମସୁଧାନିଧି' କାବ୍ୟର ପଞ୍ଚମଛାନ୍ଦଟି ବିରୋଧାଭାଷ ଅଳଙ୍କାର ଯୁକ୍ତ । ଦୃଷ୍ଟାନ୍ତ ସ୍ୱରୂପ-

''ଶୁଭ ଯୋଗରେ ସରିଲା ବନ୍ଦାପନା ଦିନ
ନ ସରିଲା ଦିନକାନ୍ତ ଅତ୍ୟନ୍ତ ଉଚ୍ଛନ୍ନ ଯେ ।

ବରବର୍ଣ୍ଣନୀ ଲୀଳାରେ ନୋହିଲା ଲାଳସ
ବରବର୍ଣ୍ଣନୀ ଲୀଳାରେ ହୋଇ ଅତି ବଶ ଯେ ।

ଏକାନ୍ତେ ମିତ୍ର ସଙ୍ଗତେ କ୍ଷଣେ ନ ବସିଲା
ଏକାନ୍ତେ ମିତ୍ରରେ କେତେ ସ୍ତୁତି ପ୍ରକାଶିଲା ଯେ ।

ପ୍ରିୟ ସ୍ନେହ ଘେନି ଚନ୍ଦ୍ରେ ଅନାଦର ତାର
ପ୍ରିୟା ସ୍ନେହ ଘେନି ଚନ୍ଦ୍ରେ ଆଦର ଅପାର ଯେ ।'' x x x

ପ୍ରିୟ ସରସ୍ୱତୀ ଶ୍ରୁତି ସୁଖ ବୃଦ୍ଧିକଲା
ବିକାଶ କାଶ ହାସକୁ ବାଳା ପ୍ରକାଶିଲା ଯେ ।

ରତି ନିନ୍ଦା କରି ରତି ଇଚ୍ଛା କଲା ପୁଂସ
କହେ ଉପେନ୍ଦ୍ର ଭଞ୍ଜ ବୀରବର ରସ ଯେ ।''

(୬) ଷଷ୍ଠ ଛାନ୍ଦଟି ରୂପକ ଅଳଙ୍କାର ଯୁକ୍ତ । କିୟଦଂଶ ଉଦାହରଣ-

''ବଧୂମୁଖ ବିଧୁହାସୀ ପୀୟୂଷ ।
ଚାହିଁ ଚକ୍ଷୁ ଚକୋର ହେଲା ତୋଷ ।

ହୃଦ କୁମୁଦ ପ୍ରମୋଦ ବଢ଼ିଲା ।
ଲାଜ ଅନ୍ଧାରେ ବିପତ୍ତି ପଡ଼ିଲା ।

ପୁଂସ ଭୋଖି ଭ୍ରମର ମତ୍ତଭୋଳ ।
ମୁଖକମଳ ନେତ୍ର ନୀଳୋତ୍ପଳ ।

ଚୁମ୍ବି ମହା ଆନନ୍ଦକୁ ପାଇଲା ।
ଓଷ୍ଠ ବନ୍ଧୁକରୁ ମଧୁ ପିଇଲା ।

(୭) ରେଖିରାଗରେ ରଚିତ ସପ୍ତମ ଛାନ୍ଦଟି ଅନୁପ୍ରାସ ଅଳଙ୍କାର ଯୁକ୍ତ । ଯେପରି-

''ରସିକ ବିଚାର କରେ ଦୀପଦାନ କାର୍ତ୍ତିକରେ
ପ୍ରୟାଗ ସ୍ନାନ ମକରେ ଯେହ୍ନୁ ନକରେ
ମିଶେ କି ସେ ଆଲୋକରେ ଉତ୍ତମ ରାମା ଅଙ୍କରେ
ଘେନି ବସେ ପଲ୍ୟଙ୍କରେ, କି ହେମ କରେ
ପୂର୍ବେ ସେବିଥିଲେ ଶଙ୍କରେ, ସେ ଫଳୁଁ ଧରି ଉରଜ ଶ୍ରୀଫଳ କରେ ।
ଯେ ଝାସିଥାଇ ସାଗରେ ଶିବରାତ୍ରି ଉଜାଗରେ
ବଞ୍ଚେ କୈଳାସ ନଗରେ, ବିହିଯୋଗରେ
ସେ ସିନା ଲେଖା ନାଗରେ ପୁହାଇ ବାଳା ସଙ୍ଗରେ
ନିଶି ବସାଇ ଆଗରେ, ଅନୁରାଗରେ
ପ୍ରଶଂସା ସେ ସର୍ବନାଗରେ,
ଘାରି ନୁହଇ ବିରହ ଉରଗାଗରେ ।''

(୮) 'ପ୍ରେମସୁଧାନିଧି' କାବ୍ୟର ଅଷ୍ଟମ ଛାନ୍ଦଟି ବଙ୍ଗଳାଶ୍ରୀ ରାଗରେ ରଚିତ । ସମଗ୍ର ଛାନ୍ଦଟି ସିଂହାବଲୋକନ ଶୃଙ୍ଖଳା ଅଳଙ୍କାର ଯୁକ୍ତ ।

(କ) ଛାନ୍ଦଟିର ପ୍ରଥମ ପାଦ ହେଉଛି ଦୁଇ ଅକ୍ଷର ଶୃଙ୍ଖଳା:
''ସରସ ଗତି-ସଙ୍ଗତି ନେତ୍ରଦିନ ଅନ୍ତରେ ଲଭିନାଗର
ଗରକଣ୍ଠ-ପର ପରମ କଷ୍ଟକୁ ମନରୁ କଲା ଅନ୍ତର ।
ତରଳାକ୍ଷୀ ବିନା-ଘେନିଲା ମୋତେ ତ ନାହିଁ ଆନେ ପ୍ରତିକାର
କରଣ ବଶେ ବିଦେଶ କରିବାକୁ ଆଜ୍ଞାଦେଲେ ନରେଶ୍ୱର ।''

(ଖ) ଛାନ୍ଦଟିର ଦ୍ୱିତୀୟ ପାଦ ହେଉଛି ତିନି ଅକ୍ଷର ଶୃଙ୍ଖଳା:
''କରୀ ବିଜିତ ଗମନାକୁ ଛାଡ଼ିବା ଛାଡ଼ିବା ପରି ଜୀବନ
ଜୀବନଜନେତ୍ରେ ପୂର୍ଣ୍ଣ ନ କରିବୁ ମୋ ଛାର ପାଇଁ ଭୁବନ ।
ଭୁବନତ୍ରୟ ମୋହିରେ ପୁଣ୍ୟବିନା ଲଭି କି ତୋ ଉଗତିକି
ଗତିକି ଏ ଉତ୍ତାରୁ ଧାତା ହରୁଛି ଦେଇ ଇନ୍ଦ୍ର ସମ୍ପତ୍ତିକି ।''

(ଗ) ଛାନ୍ଦଟିର ପଞ୍ଚମ ପାଦ ହେଉଛି ଚାରିଅକ୍ଷର ଶୃଙ୍ଖଳା:
''ସହି ବସିବାର ଘୋଷୁଥିବି ଯାହା ହସୁ ଯେଉଁ ପ୍ରଭାତରେ
ପ୍ରଭାତରେ ନେତ୍ର ପବିତ୍ର କରିବି ଦେଖି କାହା ଆନନରେ ।
ଆନ ନରେଶ ସୁତା ନ ଭାବେ ଲବେ ହୃଦେ ଥିବି ଆଉଜାଇ
ଆଉଯାଇ ଆସି ରସାଇବା ଭାଗ୍ୟ ଭାଳେ କରମରେ ନାହିଁ ।''

(ଘ) ଅଷ୍ଟମ ପାଦଟି ପାଞ୍ଚ ଅକ୍ଷର ଶୃଙ୍ଖଳା; ଯଥା-

''ଦେହ ତ ଶିରୀଷ କୋମଳ ତହିଁରେ ଦାରୁଣ ପଞ୍ଚ ବିଶିଖ
ପଞ୍ଚ ବିଶିଖ ତୀକ୍ଷ୍ଣ କରି ବିନ୍ଧିବ ତାପିବ ଶୀତ-ମୟୂଖ ।
ଶୀତ ମୟୂଖ ଚନ୍ଦନ ଯେ ହୋଇବ ଶୀତ ଉପଚରସଖୀ
ପଚର ସଖୀଙ୍କି ଅଣ ଆୟତ୍ତରେ ଯାଉଛି ରାଜୀବମୁଖୀ ।''

(ଙ) ଛାନ୍ଦଟିର ଏଗାର ପଦ ଛଅଅକ୍ଷର ଶୃଙ୍ଖଳା-

''କାମିନୀ କରକ ବହ୍ନଦଶା ନ ବଜାଇବି ରସେରସନା
ବିରସେ ରସ ନା ବିଳମ୍ବ କରିବି କିମ୍ବା ମୁଁ କାଳ ବସନା ।
ମୁଁ କାଳବଶ ନା ଆନ ଘେନି ହେବି କି ଅପରାଧୀ-ନବୀନା
ପରାଧୀନ-ବିନା ତୋର ନ ଜାଣଇଁ କିଛି କୁଟିଳ ନୟନା ।''

(ଚ) ବାର ପଦଟି ସାତ ଅକ୍ଷର ଶୃଙ୍ଖଳା-

''କୁଟିଳ ନୟନାଶି କଲେ ମେଲାଣି ହେବେ ମଙ୍ଗଳଶଉରି
ମଙ୍ଗଳଶଉରି ଅବଲୁ କି ହତ ମୋ ସଦାଶିବ ଗଉରି
ସଦାଶିବ ଗଉରୀର କୃପାରୁ ମୋ ବଲ୍ଲରୀ ଚନ୍ଦ୍ରମାନନୀ
ଲଭିଚନ୍ଦ୍ରମାନନୀକି ଅକର୍ମରୁ ହଜାଉଛି ରସିକିନି ।

(ଛ) ତ୍ରୟୋଦଶ ପଦଟି ଆଠ ଅକ୍ଷର ଶୃଙ୍ଖଳା-

''ଯାଉଛି ରସି କି ନୀତିରେ ପୋତୁ ମୋ ବିବେକ ତ ମୃଗବର
ବେକତମୃଗବରନେତ୍ରୀ ତୋ ଠାରେ ହୋଇଲା ପ୍ରୀତି ମୋହର ।
ଇଲାପ୍ରୀତି ମୋ ହରଣ ଯେ ନୋହୁକରେ ସତତଚଣ୍ଡୀକବଚ
ସତତ ଚଣ୍ଡୀକବଚ ତୁ ନ ଭେଦେ କୁସୁମ କଳମ୍ବପାଞ୍ଚ ।

(୯) କାବ୍ୟଟିର ନବମ ଛାନ୍ଦ ପ୍ରାନ୍ତଯମକ ଅଳଙ୍କାର ବିମଣ୍ଡିତ-

ମାଳବେ ଲୋକନ ହିମରତୁ କରି
ଏକାଳେ ବିଦେଶ ତ ଲୋକ ନକରି ଯେ ।
ବରିବ ନାହିଁ କୁନ୍ଦେ ରସିକବର
କାନ୍ତ ମୋ ଏହିଭାବେ ରସିକବର ଯେ ।
କିମ୍ବା ଶଙ୍କର ବୋଲି ସଦାଶିବଙ୍କୁ
ନକଲେ ସେବା କଲେ ସଦାଶିବଙ୍କୁ ଯେ ।

(୧୦) କାବ୍ୟଟିର ଦଶମଛାନ୍ଦ ତ୍ରିଭଙ୍ଗ ବା ତ୍ରିବୃତ୍ତଯମକ ଯୁକ୍ତ ହୋଇ ବେଶ୍ ମଞ୍ଜୁଳ । ଯେପରି-

''ରାମାଶିଶିରେ ଘୋର ନିଶିରେ ଦୁଃଖ ରାଶିରେ ଭାସି
ବସି ଏକାନ୍ତ ମାନସେ କାନ୍ତ ସ୍ୱରୂପ କାନ୍ତ ଘୋଷି

ରହି ବିଦେଶ କି ହୃଦଦେଶ ଦେଲା ସନ୍ଦେଶ ନାହିଁ
କେଉଁ ସୁନ୍ଦରୀ ମନ୍ଦ ଉଦରୀ ପ୍ରୀତି ଆଦରି ସେହି
ନବଯୁବତୀ ସେ ରସବତୀ ସୁଗୁଣବତୀ ସେ ତ
ସେ ଅନୁସରି କି ମୋହ ସରି ଏଣୁ ବିସ୍ମରି ସତ ।
ବିନ୍ଧିବ ଶର ବିଷମ ଶର ଏ ଅବସର କାହିଁ
ଜାଣେ ଚିତ୍ତର ମହାକାତର କର ମନ୍ତର ସେହି ।''

(୧୧) 'ପ୍ରେମସୁଧାନିଧି' କାବ୍ୟର ଏକାଦଶ ଛାନ୍ଦଟି ଆଦ୍ୟ-ପ୍ରାନ୍ତ ଯମକ ଅଳଙ୍କାର ଦ୍ୱାରା ଶୋଭିତ । ଯେପରି-

''ବସନ୍ତରେ ବିରହୀ ଅବଶ, ବସନ୍ତ ଦୂତଭାଷୀରେ ବଶ
ବସଇ ଉଠଇ ପିକକୁ କହଇ ଯୁଗ ସମ ରଜନୀ ବିବସ, ହେ କୋକିଳ ।
ଜୀବବନ୍ଧୁ ବୋଲୁଁ ବୋଲୁଁ ଜୀବ, ଜୀବଧବପୁରକୁ କି ଯିବ
ଜୀବଞ୍ଜୀବ ନେତ୍ରୀ ଲାଗି ଗଲା ବୋଲି ସତେ ଏ ଭାଗ୍ୟ କି ଅରଜିବ, ହେ କୋକିଳ ।
ବନଜାକ୍ଷୀ ମୋ ଜୀବଜୀବନ, ବନ ପ୍ରାୟେ ତୋ ବିନା ଭବନ
ବନ ନ ରହଇ ଦଣ୍ଡେ ନୟନରୁ କରି କରି ତା ଭାବ ଭାବନ, ହେ କୋକିଳ ।

(୧୨) ଦ୍ୱାଦଶ ଛାନ୍ଦଟି ଆଶୟ ଅଳଙ୍କାର ଯୁକ୍ତ । ଏଠାରେ କିୟଦଂଶ ଉଦାହରଣ-

''ଅତି ପରମାଦ ପଡ଼ିଲା କାହିଁକି ରାତ୍ରରେ ନ ଆସିଲା ନିଦ୍ରା
ମୋର ଛଇଳାମଣି ସବୁ ଫନ୍ଦା ଉତ୍ତର କୁରୁପ୍ରାପତଜନ ଭୋଗହେଲେ କରୁଥାନ୍ତି
ନିନ୍ଦା, ହେ ମଧୁପ ।
ଏତେ ଭାଗ୍ୟ ସେ ଦିଶେ ଦିଶେ
କାହିଁ ପାଇଁ ମୋ ଅଙ୍ଗରେ ନ ମିଶେ ।
ନଖଦନ୍ତଘାତ ଏବେ ଚିତ୍ତେଇଲା ପରାୟେ ମନକୁ ଆସେ ହେ, ମଧୁପ ।

(୧୩)ତ୍ରୟୋଦଶ ଛାନ୍ଦଟିରେ ଯୋଡ଼ିଯମକର ସମାବେଶ । ଦୃଷ୍ଟାନ୍ତ ସ୍ୱରୂପ-
''ଘେନି ଘନ କାଳ କାଳ ମଣି ବିଦ୍ୟୁଜ୍ଜାଳ ଜ୍ୱାଳ ଅଗ୍ନି ବୃଷ୍ଟି ମହୋଜ୍ଜ୍ୱଳଜଳ
ରସିକ ବିକଳ କଳନକି ବୋଲେ ଚଳ ଚଳ ପିୟାପାଶେ ଖତ ମାଳମାଳ ହେ ।
ଜଳଧର । ଦମ୍ଭକୁ କିମ୍ପା କଟାଳ ଟାଳ । ଦୁଃଖ ଅସମ୍ଭାଳଭାଳ ହୃଦ କି ସୁଶୀଳ
ଶିଳ ହେଲା ଅଛି ନୋହି ଫାଳ ଫାଳ ହେ, ଜଳଧର ।''

(୧୪) ଚତୁର୍ଦ୍ଦଶ ଛାନ୍ଦ ଦୃଷ୍ଟାନ୍ତ ଅଳଙ୍କାର ଯୁକ୍ତ-
''ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର
ଦିଶୁନାହିଁ କିଛି କାହିଁ ଆନେ ପ୍ରତିକାର
ନୂଆ ଅନ୍ଧପ୍ରାୟ ହୋଇ
ଅନୁକ୍ଷଣେ ଆକୁଳ ବଢୁଛି ପ୍ରାଣ ସହି ।

ଦୂରେ ଥିଲେ ପାଶେ ଅଛି ଏହା ଥିବୁ ଘେନି
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।''
ଯେତେଦୂରେ ପତ୍ର ପଡ଼ିଥିଲେରେ ନବୀନା
ଚିହ୍ନା କି ନୁହଇ ଆନେ ବୃକ୍ଷନାମ ବିନା
ବନ୍ଧୁ ତେମନ୍ତ ମୁଁ ତୋର
ସବୁଠାରେ କୁହାଉଛି ସୁନ୍ଦରୀ କୋୟର ।
ଯେଣେ ଅନାଇଲେ ଇନ୍ଦ୍ରଜାଲ ପ୍ରାୟେ ଦିଶୁ
ମୁକୁର ବିମ୍ବ ପରାୟେ ପାଶକୁ ନ ଆସୁ
ଏଡ଼େ ହଟ କାହିଁପାଇଁ
ମୋହ ଜାଣିବାରେ ମୁଁ ତ ଦୋଷ କରିନାହିଁ ।''

(୧୫) କାବ୍ୟଟିର ପଞ୍ଚଦଶ ଛାନ୍ଦଟି ଲୋମବିଲୋମ ଅଳଙ୍କାର ଯୁକ୍ତ । ଯେପରି-

''ରବର ବିହେ କଷ୍ଟ ସୁକୀର ତୋ ସରୋସ
ରସଦା ଦରଦ ତୁହି ନାଶ ପ୍ରାଣେ ରସ ।
ରସାଳସୀ ତରଳାଇ ନତନୁ ତୁରିତ
ରମ୍ୟ ରହସ୍ୟ ବେଶର କହ ମୋ ସପତ ।
ରଖ ଶୁକରଙ୍କା ଦେଉ ଖେଦେ ଚିରୁ ମହୀ
ରସିକା କୁଞ୍ଜର ଦାସ ତ ତୁ ସାହା ନାହିଁ ।
ରଦନହୀର କରକ ତୁଳ କସ ସାର
ରଦ ବାସେ ରଭସେ ରଖ ରମା ତୁ ତାର ।''

(୧୬) ଷୋଡ଼ଶ ଛାନ୍ଦ ପୁନରୁକ୍ତିବଦାଭାଷ ଅଳଙ୍କାର ଦ୍ୱାରା ଯୁକ୍ତ । ଯଥା-

''ପତିକାନ୍ତ ପ୍ରିୟବଚନକୁ କର୍ଣ୍ଣେ ଶୁଣି
କୋପମାନ ନାଶକଲା ରାମା-ଶିରୋମଣି ।
ହେମ କନକ ଗାତ୍ର ତା ପୁଲକିତ ହୋଇ
ପଦ୍ମକମଳ ବିଜିତ ନେତ୍ରେ ଢ଼ାଳି ଚାହିଁ ।
ଗଜକୁଞ୍ଜର ଗମନା ସ୍ନେହେ କଲା କୋଳ
ଚନ୍ଦ୍ର ବିଧୁଠାରୁ ହେଲା ତନୁ ତା ଶୀତଳ ।
ମଦନ ବିଷମ ଶର ମନମଥେ ହେଲା
ଘନ ଜୀମୂତ କେଶୀକି କୋଳେ ବସାଇଲା ।''
ପୁନଶ୍ଚ 'ପ୍ରେମସୁଧାନିଧି' କାବ୍ୟରେ ଉପେନ୍ଦ୍ର ଲେଖିଛନ୍ତି-

"ଏହ୍ନେ ପ୍ରବଳା ଦୁଃଖ ଦୁର୍ବଳା ହୋଇ ଅବଳା ମଣି
ପଦ ଶୃଙ୍ଖଳା କଟୀ ମେଖଳା ଆଦି ଶୃଙ୍ଖଳା ମଣି ।
ସେ ଯୋଗ ଭଙ୍ଗୀ ବିଶେଷ ଭଙ୍ଗୀ ଶେଷ ତ୍ରିଭଙ୍ଗୀ ଗୀତ
ଶ୍ରୀରଘୁବୀର ଧ୍ୟାନରେ ବୀରବର କବିର ଗୀତ ।" (ପ୍ରେ,ସୁ.୧୦/୨୦)

କବିଙ୍କର ଶ୍ରେଷ୍ଠ କାବ୍ୟ କୃତି 'ବୈଦେହୀଶ ବିଳାସ' । 'ବ' ଆଦ୍ୟ ନିୟମରେ ରଚିତ ବାଉନ ଛାନ୍ଦ ବିଶିଷ୍ଟ ଏହି କାବ୍ୟରେ କବି ବିବିଧ ଅଳଙ୍କାର ସମ୍ପର୍କରେ ଉଲ୍ଲେଖ କରିଛନ୍ତି-

ବିରଳେ ଆଦ୍ୟଯମକେ ବିଦ୍ୟକେ
ବିଭୂଷିତ ଧ୍ୱନି ପ୍ରାନ୍ତ ଯମକେ ।
ବିଶ୍ରାମ ଯମକ ଆଦ୍ୟ ପ୍ରାନ୍ତରେ
ବିଶୁଦ୍ଧ ରୂପକ ବିଂଶ ପଦରେ । (ବୈ.ବି-୧୨/୨୦)

ସେହିପରି କବି ଉପେନ୍ଦ୍ର ଭଞ୍ଜ 'ବୈଦେହୀଶ ବିଳାଶ' କାବ୍ୟର ବିଭିନ୍ନ ଛାନ୍ଦରେ ଲେଖିଛନ୍ତି-

"ବୁଧେ ରୂପକ ଶ୍ଳେଷ ମିଶା
ବୁଝ କବି ରଚନା ଭାଷା ।" (ବୈ.ବି-୨୨/୬୩)

"ବିହି ଲେଖିଦେଲେ ତାକୁ ଭାଷା ଶ୍ଳେଷରେ ।" (ବୈ.ବି.୨୩/୫୭)

"ବ୍ୟକ୍ତ ଭଙ୍ଗାଭଙ୍ଗ ଦନ୍ତାକ୍ଷର ଯେ ଚ୍ୟୁତ ଦନ୍ତାକ୍ଷର ମଣ୍ଡିତ ।" (ବୈ.ବି.୧୧/୧୬)

"ବଳି ନାହିଁ ବଡ଼ରଙ୍ଗେ ଖେଳ ସଭଙ୍ଗ ଅଭଙ୍ଗେ
ଦନ୍ତଚ୍ୟୁତ ଭକ୍ଷରେ ଅତି ଘନେ ସେ ।" (ବୈ.ବି.୪୭/୧)

"ବେଗେମିଶି ଗୋମୂତ୍ର ସର୍ବଯମକ ଶୃଙ୍ଖଳା ଛନ୍ଦ ମଞ୍ଜୁଳେ ।" (ବୈ.ବି.୪୯/୧୨)

"ବିହିତ ଏ ସରୂପକ ଶ୍ଳେଷ ରୀତି ପୁଣ ।" (ବୈ.ବି.୫୦/୧୭)

"ବିଚାରଇ ମାଳଯମକରେ କବି ମନେ ।" (ବୈ.ବି ୧୯/୧)

"ବୋଧେ ଶୃଙ୍ଖଳାରେ ରଘୁନାଥ ସୀତାମତି ।" (ବୈ.ବି ୧୯/ )

"ବୋଲନ୍ତି ରାମ ସିଂହାବଲୋକନେ ଅବଳା ।" (ବୈ.ବି ୧୯/ )

"ବ୍ୟାଘ୍ରଗତିରେ ସଧୀରେ କହନ୍ତି ବୀର ସେ ।" (ବୈ.ବି-୧୯/୧୦)

"ବସନ୍ତ ବସନ ବଶ ମହା ଯମକରେ ।" (ବୈ.ବି.୧୯/୧୩)

"ବାକ୍ୟ ସମ୍ବୋଧନେ ଭାସି ସର୍ବଯମକରେ ଯେ ।" (ବୈ.ବି.୧୯/୧୫)

"ବୋଲନ୍ତି ଗୋମୂତ୍ର ଛନ୍ଦେ ହସ ହସ ହୋଇ ।" (ବୈ.ବି. ୧୯/୧୮)

"ବସାଇ ଜାନୁରେ ଅନ୍ତର୍ଲିପିଏ ଭାଷିଲେ ।" (ବୈ.ବି.୧୯/୨୦)

"ବହିର୍ଲିପି କହି ବେନି ବେନି ବର୍ଣ୍ଣ ଲେଖି ।" (ବୈ.ବି.୧୯/       )

"ବକ୍ରୋକ୍ତି ପ୍ରକାଶ କରି ଚତୁରୀ ରତନ ।" (ବୈ.ବି. ୧୯/୩୪)

"ବିଦ୍ୟ ପ୍ରାନ୍ତ ଯମକେ କହିବା ନେତ୍ର ଦାନ ।" (ବୈ.ବି.୧୯/୩୯)

ଉପେନ୍ଦ୍ର ଥିଲେ ବିଚିତ୍ର କବିତ୍ୱର ଅଧିକାରୀ । ତେଣୁ ବିଭିନ୍ନ କାବ୍ୟରେ ଅଳଙ୍କାର ସୁବିନ୍ୟାସ କରି କବି ବୀରବର ଉପେନ୍ଦ୍ର ଅପୂର୍ବ ସିଦ୍ଧି ଲାଭ କରିଛନ୍ତି । ତାଙ୍କର ଅନ୍ୟାନ୍ୟ କାବ୍ୟ ଗୁଡ଼ିକରେ ସେ ବିଭିନ୍ନ ଅଳଙ୍କାର ସମ୍ପର୍କରେ ନିମ୍ନମତେ ଉପସ୍ଥାପନ କରିଛନ୍ତି-

"ସଭଙ୍ଗ ଶ୍ଳେଷରେ ବିଚାର କରି ଚିତ୍ତେ କୋବିଦେ ।" (ସୁ.ପ-୫/୬୧)

"ଚିହ୍ନ ଏ ରସ ଅପହ୍ନବାଲଂକାର
ଚୁମ୍ବକ ପୁଣି କିଳ କିଞ୍ଚିତ କର ଯେ ।" (ରସପଞ୍ଚକ-ଚକାର ଛାନ୍ଦ/୮)

"ଚାରୁମାନିନୀ ବିପ୍ରଲୟ ଶୃଙ୍ଗାରେ
ଚିହ୍ନିତ ଆକ୍ଷେପଳଙ୍କାର ବେଭାରେ ଯେ ।" (ରସପଞ୍ଚକ-ଚକାର ଛାନ୍ଦ /୧୨)

"ଚାରୁ ହରଷ ସଞ୍ଚାରିକା ଭାବରେ
ଲେଖା ହୋଇଛି ପୁଣି ସୂକ୍ଷ୍ମାଳଙ୍କାରେ । (ରସପଞ୍ଚକ-ଚକାରଛାନ୍ଦ/୧୭)

"ଏ ଅନ୍ତର୍ଲିପି ହୋଇଛି ଅତି ସୁରୁଚିର ।" (ଚି.କା.ବ. ୩/୨୦)

"ବୁଝ ଏ ଅନ୍ତର୍ଲିପିକ ମାନସ ମୋହିବ ।" (ଚି.କା.ବ. ୩/୪୭)

"ସହିତ ଶ୍ଳେଷ ରୂପକ ଯମକ ହୋଇବ ।
ସିଂହାବଲୋକନ ଛଳ ବିରୋଧା ହିଁ ଥିବ ଯେ ।
ସଚିତ୍ର ହୋଇବ ଛାନ୍ଦବନ୍ଦୀ ଅନୁପ୍ରାସେ
ସ୍ଫୁଟ ଆଶ୍ରୟରେ ପୁନରୁକ୍ତିବଦାଭାଷେ ଯେ ।
ସାର୍ଥ ହେବ ଦତ୍ତାକ୍ଷର ଚ୍ୟୁତାକ୍ଷର କାହିଁ
ସୁମତି ମୋହିବ ଦତ୍ତ ଚ୍ୟୁତାକ୍ଷର ଥାଇ ଯେ ।" (ସୁ.ପ- ୫ମ ଚାନ୍ଦ)

"ବିରଳେ ଆଦ୍ୟ ଯମକେ ବିଦ୍ୟକ । ବିଭୂଷିତ ଧ୍ୱନି ପ୍ରାନ୍ତ ଯମକ ।
ବିଶ୍ରାମ ଯମକ ଆଦ୍ୟ ପ୍ରାନ୍ତରେ । ବିଶୁଦ୍ଧ ରୂପକ ବିଂଶ ପଦରେ ।
ବୀରବର କହି
ବାଳିଶେ ବିସ୍ମୟ ବୁଧକୁ ମୋହି । "(ବୈ.ବି/ଦ୍ୱାଦଶ ଛାନ୍ଦ/୨୦)

"ଏ ଅନ୍ତର୍ଲିପିକା ସାର ବୁଝିବ ବିଚାରି
କୋବିଦଙ୍କୁ କହୁଛି ବିନୟ ଭାବ କରି ।" (ଚି.କା.ବ. ୩/୧୦୩)

''ଭେଟେ କବି ଗୀତ କରି ତ୍ରିବିଧରେ
ପ୍ରାନ୍ତ ଯମକ ଶୃଙ୍ଖଳା ଗୋମୂତ୍ରରେ ।'' (ଲାବଣ୍ୟବତୀ, ୭/୩)

''କି ସୁନ୍ଦର! ଛାନ୍ଦ ହୋଇଲା ଶେଷ । ରାମ ରାମ ପ୍ରତି ଅଭଙ୍ଗ ଶ୍ଳେଷ ।''
(ଲାବଣ୍ୟବତୀ-୧୦/୩୪)

''ଅନ୍ତର୍ଲିପିରେ କି ମନ୍ତର ଏଥି ରସିକ ଅଛି କି ଲିହି ।'' (ଲାବଣ୍ୟବତୀ. ୨୫/୨୧)

''ଯାହା ଗୁଣ ରତ୍ନାଳଙ୍କାର ହେଲା
ମଣ୍ଡନ ଲୋକମାନେ ସେ କଲା ।'' (ଲାବଣ୍ୟବତୀ. ୪୮/୫୯)

''ଏ ବହିର୍ଲିପିକା ବେଦ ଅକ୍ଷରେ ବିଚର
ଚିତ୍ତ ରୁଚି ତ ଅତ୍ୟନ୍ତ ପଣ୍ଡିତ ବୃନ୍ଦର ।'' (ଚି.କା.ବ.୩/୯୦)

''ଏ ଛାନ୍ଦେ ଧ୍ୱନିକାକୁ ଉକ୍ତି ରୂପକ ।'' (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୨୩/୩୦)

''ଆଶ୍ଳେଷ ଧ୍ୱନି ଶ୍ଳେଷ ଛଳେ ବିରୋଧ ରୂପକ ଉତ୍ସାହ ।''
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୨୬/୬୭)

''ଅଳଙ୍କାର ଅଳଙ୍କାର ଦୁଇ ପ୍ରକାର ସେ ।'' (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୪/୩୩)

''ସଭଙ୍ଗ ଅଭଙ୍ଗ ରୂପକକୁ ଧାୟୀ ।'' (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୨୮/୪)

''ରୂପକ ଯମକ ବ୍ୟାପକ ବଳେ
କବି କବିତ୍ୱରେ ରକ୍ଷା ପାଇଲେ ।'' (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୮/୨୭)

''କୁରଙ୍ଗରେ କରି ସୁଧାଂଶୁ ଏବେନି ନାମଯୁକ୍ତ ନାମ ସୁମରି
କହେ ଉପଇନ୍ଦ୍ର ଭଞ୍ଜ କବି ବୀରବର ପଦରେ ଯେ ମାଧୁରୀ ।
ଏ ଛାନ୍ଦେ । ଧ୍ୱନି କାକୁ-ଉକ୍ତି ରୂପକ
ଶ୍ଳେଷ ଲୁପ୍ତ ବର୍ଣ୍ଣ ଚ୍ୟୁତଦତ୍ତାକ୍ଷର ଅନ୍ତର୍ଲିପିକା ଆଦି ତକ ।''
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୨୩/୩୦)

''ଆଶ୍ଳେଷ ଧ୍ୱନି ଶ୍ଳେଷଛଳ ବିରୋଧ ରୂପକ ଉତ୍ସାହ ।''
(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୨୬/୬୭)

କବି ଉପେନ୍ଦ୍ରଙ୍କ ଭାଷା ହେଉଛି ଅଳଙ୍କାର । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ କବି ଉପେନ୍ଦ୍ର ନାୟିକାର ଆଚରଣ ସହିତ ବିଭିନ୍ନ ଅଳଙ୍କାରକୁ ସମନ୍ୱୟ କରିପାରିଛନ୍ତି । ଏହା ହେଉଛି କବିଙ୍କର ବାହାଦୂରୀ । କବି ଲେଖିଛନ୍ତି-

''ଆଶ୍ଳେଷ ଶ୍ଳେଷ ସ୍ୱରୂପ ରୂପକ ବ୍ୟାପିତ
ଚୁମ୍ବନ ଯମକ ଆଶା ଆଶ୍ରୟ ଉଦିତ ଯେ ।

ଦିବ୍ୟବର୍ଣ୍ଣ ଦର୍ଶନ ପ୍ରସାର ହୋଇଗଲା
ଲକ୍ଷଣ ସହିତ ହୋଇ ଅଳଙ୍କାର ମେଳା ଯେ ।
ନାନା ବନ୍ଧ ବିଖ୍ୟାତ ଶୃଙ୍ଖଳା ଧ୍ୱନି ଘେନି
ବକ୍ରୋକ୍ତି ଜନ୍ମିବ ମେଳ ହୋଇଲେ ସଜନୀ ଯେ ।
ଛଳ ବ୍ୟକତ ତହିଁରେ ମଦନ ଜୟରେ
ବିରୋଧା ପ୍ରକାଶି ବାଳା ଚୁମ୍ବନ ଦେବାରେ ଯେ ।
ପୁନରୁକ୍ତି ବଦାଭାଷ ଆଶ୍ୱାସ ବଚନ
ରସ ପଣ୍ଡିତରେ ଯାହା ହୁଅଇ ରଚନ ଯେ ।

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ୩୪/୪୪-୪୬)

କବିଙ୍କର ଅନ୍ୟତମ ସରସ ଓ ମଞ୍ଜୁଳ କୃତି ହେଉଛି 'ରସିକ ହାରାବଳୀ' । ଏହି କାବ୍ୟରେ କବି କେତେକ ଅଳଙ୍କାରର ସୂଚନା ଦେଇଛନ୍ତି । କବିଙ୍କ ଭାଷାରେ-

''ଉପଇନ୍ଦ୍ର ଭଞ୍ଜ ବୀରବର ବିରଚିତ ଅତି ତୋଷ ଚିତ୍ତରେ
ରସିକ ହାରାବଳୀ ନାମ ରଚିତ ବୋଲିବାର ଏହୁ ଗୀତରେ ।
ପଦ ସଂଖ୍ୟାରେ । ତିନିଶ ପଞ୍ଚଷଠି ଜାଣ
ରୂପକ ଯମକ ଆଶ୍ରୟ ବିରୋଧ ଶ୍ଳେଷ ଛଳେ ଗୀତ ନିପୁଣ ।''

(ରସିକହାରାବଳୀ- ୧୫/୨୦)

* କବିଙ୍କର 'ପ୍ରେମସୁଧାନିଧି' କାବ୍ୟ ଏକ ଦୁର୍ଲଭ ରଚନା । ଏହି ଗ୍ରନ୍ଥ ସମ୍ପର୍କରେ କବିଗୁରୁ ଉପେନ୍ଦ୍ର ଲେଖିଛନ୍ତି-

'ପ୍ରେମସୁଧାନିଧି ଯମକେସ୍ଥିତ ।'

ସୁତରାଂ 'ପ୍ରେମସୁଧାନିଧି' ଏକ ଯମକ ପ୍ରଧାନ କାବ୍ୟ । ଏହି କାବ୍ୟରେ ଆଦ୍ୟଯମକ, ମଧ୍ୟଯମକ, ପ୍ରାନ୍ତଯମକ, ଆଦ୍ୟପ୍ରାନ୍ତ ଯମକ, ଯୋଡ଼ିଯମକ, ତ୍ରିଭଙ୍ଗ ଯମକ ଇତ୍ୟାଦି ବିନ୍ୟାସ କରାଯାଇଛି । ଏହା ଷୋହଳ ଛାନ୍ଦ ବିଶିଷ୍ଟ କାବ୍ୟ । କାବ୍ୟଟିର ଷୋହଳଗୋଟି ଛାନ୍ଦରେ କେଉଁ କେଉଁ ଅଳଙ୍କାର ପ୍ରୟୋଗ କରାଯାଇଛି, ତାହା ଏଠାରେ ଉଲ୍ଲେଖ କରାଗଲା-

| | | |
|---|---|---|
| ୧ମ ଛାନ୍ଦ | - | ଆଦ୍ୟଯମକ |
| ୨ୟ ଛାନ୍ଦ | - | ଅବନା, ମଧ୍ୟଯମକ |
| ୩ୟ ଛାନ୍ଦ | - | ଛେକାନୁପ୍ରାସ |
| ୪ର୍ଥ ଛାନ୍ଦ | - | ଅଦ୍ଭୁତୋପମା |
| ୫ମ ଛାନ୍ଦ | - | ବିରୋଧାଭାସ |

| | | |
|---|---|---|
| ୬ଷ୍ଠ ଛାନ୍ଦ | - | ରୂପକ |
| ୭ମ ଛାନ୍ଦ | - | ଅନୁପ୍ରାସ |
| ୮ମ ଛାନ୍ଦ | - | ସିଂହାବଲୋକନ |
| ୯ମ ଛାନ୍ଦ | - | ପ୍ରାନ୍ତଯମକ |
| ୧୦ମ ଛାନ୍ଦ | - | ତ୍ରିଭଙ୍ଗ |
| ୧୧ଶ ଛାନ୍ଦ | - | ଆଦ୍ୟପ୍ରାନ୍ତ ଯମକ |
| ୧୨ଶ ଛାନ୍ଦ | - | ଆଶୟ |
| ୧୩ଶ ଛାନ୍ଦ | - | ଯୋଡ଼ି ଯମକ |
| ୧୪ଶ ଛାନ୍ଦ | - | ଦୃଷ୍ଟାନ୍ତ |
| ୧୫ଶ ଛାନ୍ଦ | - | ଅନୁଲୋମ ପ୍ରତିଲୋମ |
| ୧୬ଶ ଛାନ୍ଦ | - | ପୁନରୁକ୍ତ ବଦାଭାସ, ଦତ୍ତାକ୍ଷର, ଚ୍ୟୁତାକ୍ଷର, ଦତ୍ତଚ୍ୟୁତାକ୍ଷର, ଏକାକ୍ଷର, ସରୋଷ୍ଟକ, ନିରୋଷ୍ଟକ, ମହାଯମକ, ସର୍ବଯମକ । |

ଆଳଙ୍କାରିକ ଉପେନ୍ଦ୍ର ଛାନ୍ଦ ଗୀତ ରଚନାରେ ଯେପରି ସିଦ୍ଧହସ୍ତ ଥିଲେ, ସେହିପରି ଚିତ୍ରକାବ୍ୟ ରଚନାରେ ମଧ ବେଶ୍ ପାରଙ୍ଗମତା ପ୍ରଦର୍ଶନ କରିଥିଲେ । କବି ଲେଖିଛନ୍ତି-

* ଏତେ ପ୍ରକାରେ କରି ଛାନ୍ଦ ଗୀତ । ଚିତ୍ର କବିତ୍ୱେ ବଳାଇଲି ଚିତ୍ତ ।।
ଚିତ୍ର ବୋଲି କହି ଏତେ କଥାକୁ । ଏକେକେ ମୋହି ପାରନ୍ତି ମନକୁ ।।
ଛାନ୍ଦ ବନ୍ଧ ହୋଇ ବେନି ପ୍ରକାର । କେକେତେ ଛନ୍ଦ କେତେ ବନ୍ଧସର ।।
ଶାର୍ଦ୍ଦୂଳ କ୍ରୀଡ଼ିତ ମଣ୍ଡୂକପ୍ଳୁତି । ଲୋମ ବିଲୋମ ତୁରଙ୍ଗମ ଗତି ।।
ବହି ର୍ଲିପିକା ଜାଣ ଜାତି ପାଞ୍ଚ । ଷଟ ପ୍ରକାରେ ଅନ୍ତର୍ଲିପି ସଞ୍ଚ ।।
ପ୍ରଶ୍ନ ଉତ୍ତର ଅଜା-ମେଷ ଯୁଦ୍ଧ । ଯମକ ରୀତି ପଦଛେଦ ସିଦ୍ଧ ।।
ସିଂହାବଲୋକନ ଶୃଙ୍ଖଳା ଦୁଇ । ଗୋମୂତ୍ର ପଦ୍ମ ମତ୍ସ୍ୟ ଛନ୍ଦ ହୋଇ ।।
ଜଳାନ୍ଧ୍ର ଶକଟ ପଦ୍ମଚକ୍ର ହିଁ । ବ୍ୟୁହକଛନ୍ଦ ଗଣନାରେ କେହି ।।
ବର୍ଣ୍ଣ ବହୁତ କୋଷ୍ଠୀରେ ସଂକ୍ଷେପ । ପ୍ରାସାଦ କଠିନ ଅର୍ଥ ସ୍ୱରୂପ ।।
ଅବୃତ୍ତ ଶେଷ ବହୁବିଧ ଗତି । ନାନାଦେଶର ଭାଷାମାନ ସ୍ଥିତି ।।
ଲେଖି ଲେଖି ଅର୍ଥ କେଉଁ ପ୍ରକାଶ । ଦେଖି ଜାଣି ମୂର୍ଖ ପଣ୍ଡିତ ତୋଷ ।।
ବନ୍ଧବୋଲିଟି ଏମାନଙ୍କୁ କହି । ଏତେ ଲକ୍ଷଣମାନ ଥାଇ ଯହିଁ ।।
ଅମ୍ବୁଜ ଚନ୍ଦ୍ରବନ୍ଧ ବହୁବିଧି । କମ୍ବୁ ଶମ୍ଭୁ ଗଦା ଶୂଳ ପ୍ରସିଦ୍ଧି ।।
ରଥବନ୍ଧ ଅଛି ତିନି ବିଧାନ । ଚନ୍ଦ୍ର ସୂର୍ଯ୍ୟ ଚତୁଷ୍ଚକ୍ର ସ୍ୟନ୍ଦନ ।।

ପରଶୁ ଖଡ଼ଗ ହାର କବାଟ । ସର୍ବତୋଭଦ୍ର ସୁକଙ୍କଣ ଅଟ ।।
କଛପ ପ୍ରାସାଦ ନାଗ ଗବାକ୍ଷ । ମୁରଜଲତା ବେନିମସ୍ୟ ଅକ୍ଷ ।।
ବୀଣା କୁଳିଶ ବହିତ୍ର ଶକଟ । ଗୁଚ୍ଛଶର ଫଡ଼ି ଧନୁ କୁକ୍‌କୁଟ ।।
ଛୁରିକା କୁଟିଳ ଅସି ଜଗତି । ସର୍ପ ଯୁଗଳ ହିଁ ଚଳତି ।।'' (ଚି.କା.ବ)
ଉପେନ୍ଦ୍ର ପୁନଶ୍ଚ ଲେଖିଛନ୍ତି -
ଏଥୁ ଅନନ୍ତେ ମେଧାବୀ ସୁବୁଦ୍ଧି । ବୁଝ ଚିତ୍ର ପ୍ରବନ୍ଧ ବନ୍ଧବିଧି ।।
ଛନ୍ଦମଞ୍ଜରୀ ଛନ୍ଦ ରତ୍ନାକର । ଯେତେ ବିଦଗ୍ଧ ମଣ୍ଡନ ବିଚାର ।।
ଶିକ୍ଷାଥିଲା ଜନ ଦେଖ ଏ ପୋଥି । ହେବ ନୋହିଲେ ସିନା ଏଥି ମତି ।।

କବି ଉପେନ୍ଦ୍ରଙ୍କ ଦ୍ୱାରା ବିରଚିତ କତିପୟ ଚିତ୍ରାଳଙ୍କାରକୁ ଏଥିରେ ସଂଯୋଗ କରାଯାଇଛି । (ଶେଷ ପୃଷ୍ଠାରେ ସଂଯୋଜିତ) ।

ଉପେନ୍ଦ୍ର ଥିଲେ ଜଣେ ଅସାଧାରଣ ଓ ଅପ୍ରତିଦ୍ୱନ୍ଦୀ ଆଲଙ୍କାରିକ କବି । ଅଳଙ୍କାର ପ୍ରୟୋଗରେ ସେ ପ୍ରାୟ ସମସ୍ତ ଭାରତୀୟ କବିମାନଙ୍କୁ ଅତିକ୍ରମ କରିଯାଇଛନ୍ତି । କବି ଉପେନ୍ଦ୍ରଙ୍କର ପ୍ରତ୍ୟେକ କାବ୍ୟ ଅଳଙ୍କାରଯୁକ୍ତ । ସମୀକ୍ଷକମାନେ ନିର୍ଦ୍ଧାରଣ କରିଛନ୍ତି ଯେ ଉପେନ୍ଦ୍ରଙ୍କର 'ଲାବଣ୍ୟବତୀ' କାବ୍ୟର ସମୁଦାୟ ୨୩୬୧ ପଦ ମଧ୍ୟରୁ ୧୨୪୧ ପଦ ଅଳଙ୍କାରଯୁକ୍ତ । ଏଥିରେ ଶବ୍ଦାଳଙ୍କାର ହେଉଛି ୨୬୬ ପଦ ଏବଂ ଅର୍ଥାଳଙ୍କାର ହେଉଛି ୯୩୫ ପଦ । ତାଙ୍କର ପ୍ରସିଦ୍ଧ କାବ୍ୟ 'ବୈଦେହୀଶ ବିଳାସ' ର ପଦସଂଖ୍ୟା ୨୭୨୪ ମଧ୍ୟରୁ ଶବ୍ଦାଳଙ୍କାର ୧୧୩୦ ପଦ ଏବଂ ଅର୍ଥାଳଙ୍କାର ୧୨୦୫ ପଦ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ପଦସଂଖ୍ୟା ୧୪୭୦ । ଏଥିରୁ ୬୪୨ ପଦ ଶବ୍ଦାଳଙ୍କାର ଏବଂ ୭୧୩ ପଦ ଅର୍ଥାଳଙ୍କାର । 'ସୁଭଦ୍ରା ପରିଣୟ' କାବ୍ୟର ପଦସଂଖ୍ୟା ୭୩୭ ରୁ ଶବ୍ଦାଳଙ୍କାର ହେଉଛି ୧୬୯ ଏବଂ ୩୬୨ ଟି ପଦ ଅର୍ଥାଳଙ୍କାର । 'ପ୍ରେମସୁଧାନିଧି' କାବ୍ୟର ୩୯୫ ପଦ ମଧ୍ୟରେ ଶବ୍ଦାଳଙ୍କାର ହେଉଛି ୨୩୪ ଏବଂ ଅର୍ଥାଳଙ୍କାର ୨୨୮ । 'ରସଲେଖା' କାବ୍ୟର ପଦସଂଖ୍ୟା ୭୨୬ । ଏଥିରେ ୯୧ ଟି ଶବ୍ଦାଳଙ୍କାର ଏବଂ ୨୨୨ଟି ଅର୍ଥାଳଙ୍କାର ରହିଛି । 'ରସିକ ହାରାବଳୀ' କାବ୍ୟର ୩୮୭ ପଦ ମଧ୍ୟରୁ ଶବ୍ଦାଳଙ୍କାର ହେଉଛି ୧୪୨ ଏବଂ ଅର୍ଥାଳଙ୍କାର ୧୬୩ ।

ଉପେନ୍ଦ୍ର ଯଥାର୍ଥରେ ଥିଲେ ଶବ୍ଦ କବି, ଅର୍ଥକବି ଓ ଅଳଙ୍କାର କବି । ସେ ଶବ୍ଦର ଅପୂର୍ବ ଯାଦୁକର ନିଶ୍ଚୟ । ତେଣୁ B.C Mazumdar ଯଥାର୍ଥରେ ଲେଖିଛନ୍ତି- "Upendra Bhanja really speaking is a mighty literary actrobat who has shown his great skill in verbal jugglery. In the art of aliteterative composition he is second to none and it is his example which has been followed and immitated in this direction by his contemporaries and successors."

ooo

# ପରିଶିଷ୍ଟ

ଏଥୁଅନ୍ତେ ଅନ୍ତେ ସଂଖ୍ୟାବାନଗଣ ହୋଇକରି ସାବଧାନ
ଦ୍ୱାରାବତୀପୁରେ ଚତୁର ଚତୁରେ କହିବା ବନ୍ଧ ବିଧାନ ।

## ଅଟାଳୀ ବନ୍ଧ

| | | | | | | | | | | | | |
|---|---|---|---|---|---|---|---|---|---|---|---|---|
| | | | | | କ୍ଷ | ତ | ର | | | | | |
| | | | | | ରୂ | ପ | କି | | | | | |
| | | | | ସୁ | ଷ | ମା | ଦ | ବ୍ୟ | | | | |
| | | | ର | ସ | କେ | ଉ | ପୁ | ଷ୍ଟ | ର | | | |
| | | କ୍ଷ | ଷ | ଶ୍ରୀ | ଭ | ଦ | ବୀ | ର | ଟ | କ | | |
| | | | ର | ବା | ଣ | ରୂ | ବ | କା | ର | | | |
| | | | | ରେ | ଅ | ଣ | କେ | ବୀ | | | | |
| | | | ହ୍ମ | ନ | ପ | ସ୍ଥା | ଯ୍ଛ | ଳ | ଗ | | | |
| | | ଶା | ତ୍ର | ଡ | ରେ | ମ | ଟା | ଧ | ସ | ନ୍ଦୋ | | |
| | | | ଗଁ | କ | ଶୋ | ଖ | କା | ହା | ର | | | |
| | | | | ଥ୍ୟ | ଘ | ବ | ବ | ସ୍ତା | | | | |
| | | | ସ | କ | ରେ | ଭ | ଜ | ଲେ | ତ | | | |
| | | ଲେ | ର | ମ୍ୟ | ନା | ଣ | ଭ | ଲ | ର | ଙ୍କ | | |
| | ସ | ର | ସ | ଉ | କ୍ଷୁ | କ୍ଷେ | ଙ୍କ | ରେ | ବା | ହା | କ | |
| ହା | ରେ | ଟା | ଇ | ଲେ | ଯ | ମ | ମ | ଥ୍ରୀ | ଲୁ | ଉ | ଠି | କ |
| ଜ | ଯୁ | କ୍ତ | ଷ୍ଟ | ସୁ | ବ | ବ୍ୟୋ | କେ | ଶ | ଶୁ | ଡ | ରୂ | ତ |

ପ୍ରଭାତେ        ଅଟାଳିପରେ ନିଦ୍ରା ତେଜି କେ ପ୍ରିୟ ପ୍ରିୟାକୁ କୋଳେ ।
ବସାଇ ମାନସ ରସାଇ ଏ ଗୀତ ବିରଚି ଗାଇଲା ଭୋଳେ ।
ଜୟ କୃଷ୍ଣ ସୁବିବ୍ୟୋକେ ଶିଶୁତ୍ୱନ ତାହା ଭେଟାଇଲେ ଯମ ।
ମଞ୍ଚାରୁ ଉଠି କଂସର ସଉଛକେ କରେ କାହା କଲେ ରମ୍ୟ ।
ନାଶ ଭକ୍ତର କିସ କରେ ଭଜିଲେ ତଥ୍ୟଭାବ ବିସ୍ତାରକ ।
ଶୋଭା କାହା ରଣ ହତରେ ସନ୍ଦୋହ ନୃପସ୍ଥାୟକ ।

ତର୍କରସ କେଉଁ ପୁଷ୍କର ସୁଷମା ଦିବ୍ୟରୂପ କି କ୍ଷିତିର ।
ଏ ଅଙ୍କବନ୍ଧ ହରି ଯଶ ମଧ୍ୟରେ ଅନ୍ତର୍ଲିପି ଶିବ ନାମେ ।
ମଧ୍ୟରେ ବେନିପାରଶ୍ୱ ମେଷଯୁଦ୍ଧେ ହୋଇଛି ଲୋମ ବିଲୋମେ ।

## ସୂର୍ଯ୍ୟରଥ ବନ୍ଧ



ଭାବି ସେ ଭାବିନୀ ଭାନ ବିଷ୍ଣୁ ସ୍ତୁତି କାବ୍ୟ କବିନାମ ପାଶେ ।
ସୂର୍ଯ୍ୟମଣ୍ଡଳ ରଥେ କହେ ବକ୍ରରେ ଚକ୍ରବନ୍ଧ ରଖି ତୋଷେ ।
ଇନ କବିବନ୍ଦ୍ୟ ମାନସ ପାରଗ ସମ କେ ଆଉ ବିଶୋକ ।
ସୁର ସୁପବିତ୍ର ଇନ୍ଦ୍ର ଭ୍ରାତ ଲୋକ ହିତ ତମ ନିଶାଦକ ।
ସୁଷମ ରତ ଦିବି ବାନ୍ଧବ ପଦହାତ ରଞ୍ଜିତ ସୁମନ ।
ବିନୟୀ ଦ୍ୱିଜବର ଚକ୍ର ଯାହାକୁ ହେ ହରି ସୁଖ ଦାଇନ ।
ବସନ୍ତ ହେଲା ନାଦେ କହେ କୋକିଳ ନବପଲ୍ଲବିତ ବନ ।
ଚମ୍ପା ମାଧବୀ ଫୁଟିଲେ କି ଲାଇରେ ବନଜ କାନନ ଘନ ।

ଏ ଅନ୍ତେ ଶୁଣ ସୁମତି । ଶୂଳବନ୍ଧେ କହେ ଦୂତୀ ।
ହାରସାର ଭାରତାର । ତା କର କର ଧୀର ।

## ଶୂଳବନ୍ଧ



ଶୁଣି ସେ ପୁରୁଷ ଗଲା । ଖଡ୍ଗେ ବିନୟେ କହିଲା ।
ହରପର ଦର ହର । ହରଷଞ୍ଚପୁର ମୋର ।
କର ବୋଧ ଶୁଦ୍ଧମନ । ଧନ୍ ମୋ ନ ଘେନ ମାନ ।

## ଖଡ୍ଗବନ୍ଧ



## ମୁରଜ ବନ୍ଧ




ପ୍ରଶଂସି ତାହାକୁ ପୁଣି । ମୁରଜେ କହିଲା ବାଣୀ ।
ଅବଳା ରତି - ସରିତା । ପ୍ରବଳା ରତି - ସରିତା ।

ସୁଫଳେ ଅଭୀଷ୍ଟ କାର୍ଯ୍ୟ । ପୁଣି କହିଲା ମୁରଜ ।
କାମଦ ରତ ଦାସର । ପ୍ରମଦା ଶୁଭ ଦାସର ।

### ମୁରଜ ବନ୍ଧ



ବାଳାଯାଉଁ ଯାଉଁ ରସେ । [ ପରଶୁ ବନ୍ଧେ କେ ଭାଷେ ।
ପ୍ରୀତି ରତିରସ ବଶ । ତୋଷ ବସ୍ତ୍ର ଯଶ ଆସ ।
ଭାବ ଭାଷ ତ୍ରାସ ତ୍ରାହି । ରହି ରହି ଚାହିଁ ଚାହିଁ ।

## ପରଶୁ ବନ୍ଧ



ପୁଣ ସ୍ତନକୁ ପ୍ରଶଂସି । ପୁଚ୍ଛବନ୍ଧରେ କେ ଭାଷି ।
ଗିରିପରି ନାରିକେଳ । ତାଳଫଳ ତୁଳ ମୂଳ ।
ଚେଳ ସଞ୍ଚ ଘଞ୍ଚ ଉଚ । ଶ୍ରୀଫଳ ସଂପୁଟ କୁଚ ।

## ପୁଚ୍ଛ ବନ୍ଧ



ତୁ ତ ଶୋଭାସାର ଏକା ସଂସାରେ । ସଦା ପ୍ରଶଂସିତ ଚାରିମୁଖରେ ।
କେଶ ନବଘନ ଛପଦଞ୍ଜିତ । ହୋଇ ପାରୁ ସଦା ଅଷ୍ଟନିଧି ତ ।
ମୋତି କୁନ୍ଦଦୃଶ ଦଶନ ପନ୍ତି । ଦୁଃଖହାରୀ ମୋର ବାରଣଗତି ।
ନାହିଁତୋ ସଦୃଶ ଚଉଦପୁରେ । ପୁଣି ଦୟା ଅରହ ଷୋଳ ତୋରେ ।
ହେବେ ଶୂର ଅଠର ଦେଖିକରି । ହାସ ବିଂଶଭୁଜା ଦେଲେ ପ୍ରଚାରି ।
ତୋରେ ବାଇଶ କି ହେଲା ମଦନ । ମଧ୍ୟବର୍ଣ୍ଣ ବିଚାର କର ଧନ ।

## ଛତ୍ରବନ୍ଧ



ଦୂତୀ          ଜଗତୀବନ୍ଧେ କହେ ପୁଂସେ । ମୋ ସଖୀ ନିକି ଲଭ ଭାଗ୍ୟବଶେ ।
ସୁହୃଦୟା ଦୟାଳୀର ସୋଦୟା । ଭାବସିନ୍ଧୁ ସିନ୍ଧୁର ଗତି ପ୍ରିୟା ।
ବନ୍ଧୁ ବନ୍ଧୁକ ଅଧରୀ ନୃପଙ୍କା । କେଳି ଶାଳୀ ଆଳି ଉଚ୍ଚ ଉରଙ୍କା ।
ଶୋଭାପୂରିତା ଆନନ୍ଦ ସରିତି । ସ୍ୱର୍ଣ୍ଣଅଙ୍ଗୀ ପ୍ରିୟା ଭୃତ୍ୟ ତା ରୀତି ।

## ଜଗତୀବନ୍ଧ



ଯଖୀ ଆଗରେ ପ୍ରିୟା କୋପ ଜାଣି । ମହାଚକ୍ରେ କେ କହୁଅଛି ବାଣୀ ।
ଯରହସର ନିରୁଦ୍ଧନିଦାସ । ସଦା ନ ଧରୁ ଗୁମାନ ମାନସ ।
ଯନମାନ ମାନକାରୀ ନାରୀଶ । ସରି ନାରୀ କାହିଁଛି ଅସଦୃଶ ।
ଯଦୃଶ ଅଛି ଭାବି ସେତ ହାସ । ସହାତ ସେ ବିହେ ଶିକ୍ଷା ଯା ରୋଷ ।
ଯରୋଜାକ୍ଷା ସିନ୍ନା ନିଦାନୀ ଯଶ । ସଜନୀ ଦାନୀ ସୁରସ ହରଷ ।

## ମହାଚକ୍ର ବନ୍ଧ

ସ୍ତୁତି ମଧୁରରେ କେଉଁ ପୁରୁଷ । କହେ ଗବାକ୍ଷବନ୍ଧେ ବନ୍ଧୁପାଶ ।
ସତ ପ୍ରାପତ ଅନାଇ ଶଙ୍କର । ସୁଷମାପୁର ପ୍ରମୋଦଦା ମୋର ।
ବାଲ୍ଲା ଦେଇ ଭାବ କର ହରଷ । ଅନା ଶୀଘ୍ରେ ବସ ରସ ବରଷ ।
ସୁରସଦା ବନ୍ଧୁ ପଦ୍ମନୟନା । ହା ହା ହାସେ ତାର ତାପ ନାଶନା ।
ସଦା ସୁଖୀ ବାମା ଅତି ସୁସ୍ନେହା । ପ୍ରାସେ ମାର ଦେଖ ଶିରୀଷଦେହା ।
ତତ୍ତ୍ୱ ରସ ଭାବ ବର ବନୀତା । ନାଶ ମୋର କଷ୍ଟ ରତି ପଣ୍ଡିତା ।
ସର୍ବଦା ରହସ୍ୟ ବଶ ନବୀନା । ରସ ରସ ସଦା ସଖୀ ନାଶନା ।

## ଗବାକ୍ଷବନ୍ଧ

| | | | | | | | | | | |
|---|---|---|---|---|---|---|---|---|---|---|
| ସ | ତ | ପ୍ରା | ପ | ତ | ଅ | ନା | ଇ | ଶ | ଙ୍କ | ର |
| ଦା | | ସେ | | ତ୍ତ୍ୱ | | ଶ | | ର୍ବ | | ସ |
| ସୁ | ଷ | ମା | ପୁ | ର | ପ୍ର | ମୋ | ଦ | ଦା | ମୋ | ର |
| ଖୀ | | ର | | ସ | | ର | | ର | | ସ |
| ବା | ଲ୍ଲା | ଦେ | ଇ | ଭା | ବ | କ | ର | ହ | ର | ଷ |
| ମା | | ଖ | | ବ | | ଷ୍ଟ | | ସ୍ୟ | | ଦା |
| ଅ | ନା | ଶୀ | ଘ୍ରେ | ବ | ସ | ର | ସ | ବ | ର | ଷ |
| ତି | | ରୀ | | ର | | ତି | | ଶ | | ଖୀ |
| ସୁ | ର | ସ | ଦା | ବ | ନ୍ଧୁ | ପ | ଦ୍ମ | ନ | ୟ | ନା |
| ସ୍ନେ | | ଦେ | | ନୀ | | ଣ୍ଡି | | ବୀ | | ଶ |
| ହା | ହା | ହା | ସେ | ତା | ର | ତା | ପ | ନା | ଶ | ନା |

ପତି ବିନୟ ଶୁଣୁ ପ୍ରବିଦେହ । ସେହି ସ୍ୱସ୍ତି କବନ୍ଧେ କଲା ସ୍ନେହ ।
କରି ଦୟା ନ ମୁଞ୍ଚ ପର ଠିକ । କଲା ହରିସୁତ ଭୀତ ନିଦକ ।
କର ଚମ୍ପକ ଦାମକୁ ନାୟକ । କଣ୍ଠେ ବେଢ଼ାଇ ଶୀଘ୍ରେ ନାଶି ଶୋକ ।

## ସ୍ୱସ୍ତିକ ଚକ୍ରକେଳିବନ୍ଧ



କେଉଁ ବଇଷ୍ଣବ ଦର୍ଶନ ଅର୍ଥେ ପ୍ରସାଦେ
ଯାଇଁ ।   ସର୍ବତୋଭଦ୍ରବନ୍ଧେ ସ୍ତୁତିକରେ ବିଷ୍ଣୁଙ୍କୁ ଚାହିଁ ।   ହରସର ର'
ରହ ରତ ରସ ସରତର । ଶର ଧର ରଧରସ ରତ ରସ ସରତର ।

## ସର୍ବତୋଭଦ୍ର ବନ୍ଧ




ନାୟକ ଓଷ୍ଠ ସୁରଞ୍ଜନ ନବ ଅଞ୍ଜନ ଚାହିଁ । ସବୁମଧ୍ୟା ମଧ୍ୟା ଅଧୀର
ହଳ ବନ୍ଧରେ କହି ।   ହୁଁନା ସୁନାତନୁ ତାର ତାର ନୂତନାହି ସେହି । ସେଂ
ମା ପାଶରେ ସୁଖୀ ହୋଇ ଧୀରହି ବୀରହୀ ।

## ହଳବନ୍ଧ



ବିଳସୁଁ ପୁରେ ଦେଖିକରି ତହିଁ କେଉଁ ସଜ୍ଜନ । ଲଙ୍ଗଳବନ୍ଧରେ ଉତ୍‌ପ୍ରେକ୍ଷା କରେ ମନଭାବନ । ମହାମତ କାଦମ୍ବରୀରେ କାମପାଇଁ ସୁସମ । ସୁଷମ ମନରେ ହୋଏ ମରାଳବତ ସିତ ବଳରାମ ।

## ଲାଙ୍ଗଳବନ୍ଧ



ଚତୁର୍ଦ୍ଦଶୀ ବେଢ଼ା ଶିବ ଦରଶନେ କେତେ ଜନ ଥିଲେ ଆସି ।
ସ୍ୱଦୂତୀ ସଙ୍ଗତି ଶୋଭାବତୀ ଦେଖି        ବିମାନେ ପୁରୁଷ ଭାଷି ।
କର ରହି କହି ବାଣୀ ସ୍ଥିରମତେ ପ୍ରେମବତୀ ପରା ତୁହି ।
ତୋ ଶରଣ ମନେ ବିଭଙ୍ଗ ନ ଦିଅ ରେ ଅତି ବିନୟ ମୁହିଁ ।
ସେହି ମୁକ ମୁଞ୍ଚ ଭରସା କ୍ଷମାର ମୁଁ ଟେକ ତପ କରକ ।
ସ୍ତୋକ ସ୍ତୋକ ହସ ରଖିବା ସେବାରେ ଆଳୀ ରମଣୀହୀରକ ।

## ବିମାନ ବନ୍ଧ



ଶୁଣି ମାନଭଙ୍ଗେ ରଙ୍ଗେ ଅନାଇଲା ମନ୍ଦେ ହସି କୁନ୍ଦଦନ୍ତୀ ।
ଜାଣିଲା ଏ ବନ୍ଧେ ସଂସ୍କୃତ ବଙ୍ଗଳା ତେଲିଙ୍ଗ ଖୋଇଠା ରୀତି ।
ସ୍ୱପତି ଅଙ୍କେ ଅଙ୍କିତ ନଖକ୍ଷତ ଦେଖି ଖଣ୍ଡିତା ଯୁବତୀ ।
ସେ ଶଠନାୟକ ପଠନ ପୁସ୍ତକ ରଥବନ୍ଧରେ ବିନତି ।
ରସାରସ ରସ ନତନୁ ଶରରୁ ଏମାନ ଭାବିନି ଛାଡ଼ ।
ପରାଣ ତାରଣ ରେ ଧୀରା ଅପର ମୁଁ ଯେ ତୁ ଦରଦ ବଡ଼ ।
ରସରଙ୍ଗ ରଙ୍ଗୀ ରତ୍ନ ରମ୍ୟବେଶୀ କାଶୀବାସୀ କେଶୀଦ୍ୱେଷୀ ।
ସେବି ଲଭିଛି ଅଛି ଗୋ ଆନ ଆନ ମନ ଘେନ ଘନକେଶୀ ॥

## ରଥ ବନ୍ଧ





## ବୀଣା ବନ୍ଧ

କେଉଁ ଚତୁର ପ୍ରିୟା ଚିବୁକ ଧରି । ବୀଣା ବନ୍ଧେ କହୁଛି ବିନୟ କରି ।
ଅତି ଜ୍ୟୋତି ମୋତିଦନ୍ତୀ ଦରହାସା । ହୁଅ ସାହା ରସେ ତୋଷେ ରସା ରସା ।
ଭବ୍ୟ ସେବ୍ୟ ପ୍ରୀତିବତୀ ଚାହିଁ କହି । ତୁ ତ ଚିତ୍ତ ସୁଖୀ ରଖି ତୁହି ସହି ।
ମୋହି ତହିଁ ରତି ପତି ଦରହର । ଅଙ୍ଗେ ରଙ୍ଗେ ରଖ ତୁ ନଖର ଗାର ।

ବହିତ୍ରବନ୍ଧେ ପ୍ରୀତିନିଧି ପାଶ । କେ ପୁଂସ ବିନୟ କରେ ପ୍ରକାଶ ।
ରସିକା ପ୍ରସର ରସ ପ୍ରକାଶି । ରସି ତ୍ରାହି ଦେଅ ଅଦେହୀ ତ୍ରାସି ।
ରସ ସର ହତୁ ସନ୍ତୋଷଭର । ରକସ ତୋଷ ତୁ ହରଷ ସର ।
ରସାଳସି ତୁ ମୋତେ ନ ବିସର । ରସା ସୁରତ ରତ ତୁ ଦାସର ।



ରସ ବିନତେ ମୋତୁ ଶୀଳ ସାର । ରସଦା ତୁ ତର ତରସୁଂ ସାର ।
ତ୍ରାସେ ଯାହାର ପରତାପ । ସକଳ ଲୋକେ ଯେ ପ୍ରଦୀପ ।
ସନ୍ତୋଷି ନାଶି ଯେ ଅସୁର । ବରବହି ଭାବି ଯେ ଚିର ।
ଆଦ୍ୟ ଦ୍ୱିବର୍ଣ୍ଣ ପ୍ରାନ୍ତେ ନ୍ୟାସକରି । ଗ୍ରନ୍ଥକର୍ତ୍ତା ହରିସ୍ତୁତି ପ୍ରଚାରି ।

## କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଉପାସନା ପୀଠ:



(ନୟାଗଡ଼ ଜିଲ୍ଲା ଓଡ଼ଗାଁଠାରେ ବିରାଜିତ ଶ୍ରୀ ଶ୍ରୀ ରଘୁନାଥଜୀଉ)



(ନୟାଗଡ଼ ଜିଲ୍ଲା ଢେଙ୍କଣାଠାରେ ବିରାଜିତ ଶ୍ରୀ ଶ୍ରୀ ରଘୁନାଥଜୀଉ)

## ସହାୟକ ଗ୍ରନ୍ଥସୂଚୀ

୧. ନାଟ୍ୟଶାସ୍ତ୍ର- ଦ୍ୱିତୀୟ ଖଣ୍ଡ, ଭରତ ମୁନି
୨. ଅଳଙ୍କାର ଶାସ୍ତ୍ରର କ୍ରମବିକାଶ- ଗୌରୀ କୁମାର ବ୍ରହ୍ମା
୩. ଅଳଙ୍କାର ସାର- ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ
୪. ଅଳଙ୍କାର ଧାରଣା : ବିକାଶ ଔର ବିଶ୍ଳେଷଣ- ଡ. ଶୋଭାକାନ୍ତ ମିଶ୍ର
୫. ଅଳଙ୍କାର ବୋଧୋଦୟ- ସାର୍ ବାସୁଦେବ ସୁଢ଼ଳଦେବ
୬. ଅଳଙ୍କାର ତରଙ୍ଗିଣୀ- ପଣ୍ଡିତ କୁଳମଣି ଦାଶ
୭. ଅଳଙ୍କାର ମଞ୍ଜରୀ- ଶ୍ରୀଧର ଦାସ
୮. ଅଳଙ୍କାର ଶାସ୍ତ୍ର ପରିଚିତି- ଭାବଗ୍ରାହୀ ମିଶ୍ର ଓ ଶାନ୍ତିଲତା ମିଶ୍ର
୯. ଅଳଙ୍କାର ତତ୍ତ୍ୱ- ବାସୁଦେବ ସାହୁ
୧୦. ଅଳଙ୍କାର ଓ ଅଳଙ୍କାର- ବୈଷ୍ଣବ ଚରଣ ସାମଲ
୧୧. ଅଳଙ୍କାର ଶାସ୍ତ୍ର ପ୍ରବେଶ- ଅଭିନ୍ନ ଚନ୍ଦ୍ର ଦାଶ
୧୨. ଅଳଙ୍କାର ଓ ଅଳଙ୍କାର ତତ୍ତ୍ୱ- କ୍ଷେତ୍ରବାସୀ ନାୟକ ଓ ଲାବଣ୍ୟ ନାୟକ ।
୧୩. କବିସମ୍ରାଟ ଉପେନ୍ଦ୍ର ଭଞ୍ଜ- ଅନନ୍ତ ପଦ୍ମନାଭ ପଟ୍ଟନାୟକ
୧୪. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-ଉପେନ୍ଦ୍ର ଭଞ୍ଜ
୧୫. ଲାବଣ୍ୟବତୀ-ଉପେନ୍ଦ୍ର ଭଞ୍ଜ
୧୬. ବୈଦେହୀଶ ବିଳାସ-ଉପେନ୍ଦ୍ର ଭଞ୍ଜ
୧୭. ସୁଭଦ୍ରା ପରିଣୟ- ଉପେନ୍ଦ୍ର ଭଞ୍ଜ
୧୮. ରସିକ ହାରାବଳୀ- ଉପେନ୍ଦ୍ର ଭଞ୍ଜ
୧୯. ପ୍ରେମସୁଧାନିଧି-ଉପେନ୍ଦ୍ର ଭଞ୍ଜ
୨୦. ଚିତ୍ରକାବ୍ୟ ବନ୍ଧୋଦୟ-ଉପେନ୍ଦ୍ର ଭଞ୍ଜ
୨୧. ଅବନାରସ ତରଙ୍ଗ-ଉପେନ୍ଦ୍ର ଭଞ୍ଜ
୨୨. ସାହିତ୍ୟ ଦର୍ପଣ-ବିଶ୍ୱନାଥ କବିରାଜ
୨୩. ଯମକରାଜ ଚଉତିଶା-ଉପେନ୍ଦ୍ର ଭଞ୍ଜ

୨୪. ରସ ପଞ୍ଚକ- ଉପେନ୍ଦ୍ର ଭଞ୍ଜ
୨୫. ରସଲେଖା- ଉପେନ୍ଦ୍ର ଭଞ୍ଜ
୨୬. ଚିତ୍ରଲେଖା- ଉପେନ୍ଦ୍ର ଭଞ୍ଜ
୨୭. କାଳଜୟୀ ପ୍ରତିଭା : କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ- ପ୍ରେମାନନ୍ଦ ମହାପାତ୍ର
୨୮. ଉପେନ୍ଦ୍ର ଭଞ୍ଜ ଓ ସାରସ୍ୱତ ପୀଠ ମାଳିସାହି- ପ୍ରେମାନନ୍ଦ ମହାପାତ୍ର
୨୯. କବି ସମ୍ରାଟଙ୍କ କାବ୍ୟକୃତି- ବାଉରୀବନ୍ଧୁ ସାହୁ
୩୦. ବାଣୀବରପୁତ୍ର ମନସ୍ୱୀ ମହାକବି ଉପେନ୍ଦ୍ର- ପ୍ରଭାକର ଶତପଥୀ
୩୧. ଲାବଣ୍ୟବତୀର ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଅନୁଶୀଳନ- ବିଧୁପ୍ରଭା ରଥ
୩୨. ଉପେନ୍ଦ୍ର ଭଞ୍ଜ ଏକ ସମୀକ୍ଷା- ଜୟକୃଷ୍ଣ ମିଶ୍ର
୩୩. ଭଞ୍ଜ ସନ୍ଦର୍ଭ- ଶ୍ରୀଧର ଶତପଥୀ
୩୪. ଓଡ଼ିଆ ସାହିତ୍ୟର ମଧ୍ୟପର୍ବ- ସୁରେନ୍ଦ୍ର ମହାନ୍ତି
୩୫. ଓଡ଼ିଆ ସାହିତ୍ୟର କ୍ରମବିକାଶ- ସୁରେନ୍ଦ୍ର ମହାନ୍ତି
୩୬. ଓଡ଼ିଆ ସାହିତ୍ୟକୁ ନୟାଗଡ଼ ଜିଲ୍ଲାର ଅବଦାନ- ଡକ୍ଟର ପ୍ରେମାନନ୍ଦ ମହାପାତ୍ର
୩୭. ଓଡ଼ିଆ ସାହିତ୍ୟର ଇତିହାସ- ପଣ୍ଡିତ ବିନାୟକ ମିଶ୍ର
୩୮. ଓଡ଼ିଆ ସାହିତ୍ୟର ଇତିହାସ- ଡକ୍ଟର ବାଉରୀବନ୍ଧୁ କର
୩୯. ଭଞ୍ଜକବି ପରିଚୟ- ବିଚିତ୍ରାନନ୍ଦ ମହାନ୍ତି
୪୦. ସଙ୍ଗୀତମାଳା- ସଂକଳକ ଓ ଆଲୋଚକ- ଡକ୍ଟର ଶରତ ଚନ୍ଦ୍ର ରଥ

ODD



ଡକ୍ଟର ପ୍ରେମାନନ୍ଦ ମହାପାତ୍ର ସାଂପ୍ରତିକ ସମୟର ଜଣେ ପ୍ରତିଭାବାନ ସାରସ୍ୱତ ଗବେଷକ, ପ୍ରାବନ୍ଧିକ, ସମାଲୋଚକ, ସୁବକ୍ତା ଓ କବି । ସେ ଓଡ଼ିଶା ସରକାରଙ୍କ ଉଚ୍ଚଶିକ୍ଷା ବିଭାଗ ଅଧୀନରେ ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ସଫଳତାର ସହିତ ଅଧ୍ୟାପନା କରି ଆସୁଛନ୍ତି ।

ବିକ୍ରମଦେବ କଲେଜ ଜୟପୁର, ସରକାରୀ ମହାବିଦ୍ୟାଳୟ ଭବାନୀପାଟଣା, ସରକାରୀ ମହିଳା ମହାବିଦ୍ୟାଳୟ ଫୁଲବାଣୀ, ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟ ଭୁବନେଶ୍ୱର ଠାରେ ଅଧ୍ୟାପନା କରିଥିବା ସହ ସଂପ୍ରତି ରେଭେନ୍ସା ବିଶ୍ୱବିଦ୍ୟାଳୟ କଟକ ଠାରେ ଓଡ଼ିଆ ବିଭାଗର ପ୍ରାଧ୍ୟାପକ ଭାବରେ କାର୍ଯ୍ୟରତ । ଶ୍ରୀ ମହାପାତ୍ର 'ଓଡ଼ିଆ ସାହିତ୍ୟକୁ ନୟାଗଡ଼ ଜିଲ୍ଲାର ଅବଦାନ' ଶୀର୍ଷକ ସନ୍ଦର୍ଭ ପ୍ରସ୍ତୁତ କରି ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱରରୁ ପିଏଚ୍.ଡି. (Ph.D.) ଡିଗ୍ରୀ ଲାଭ କରିଛନ୍ତି । ଇତିମଧ୍ୟରେ 'ମନସ୍ୱୀ ସାଧକ: ପଣ୍ଡିତ ବିନାୟକ ମିଶ୍ର', 'ଉପେନ୍ଦ୍ର ଭଞ୍ଜ ଓ ସାରସ୍ୱତ ପୀଠ: ମାଳିସାହି', 'ନୟାଗଡ଼ ଜିଲ୍ଲାର କଥିତ ଭାଷା: ଏକ ସର୍ବେକ୍ଷଣ', 'କହେ ଟାଡ଼ିସରୁ ବାଇ', 'ଓଡ଼ିଶାର କଥିତ ଭାଷା ପରିକ୍ରମା', 'ଓଡ଼ିଆ ସାରସ୍ୱତ ସ୍ତବକ' ଶୀର୍ଷକ ଗବେଷଣାଧର୍ମୀ ପୁସ୍ତକ ପ୍ରକାଶିତ ହୋଇଛି ।

'ଭଞ୍ଜୀୟ ଅଳଙ୍କାର ମାନସ' ପୁସ୍ତକଟି ତାଙ୍କର ଅଧ୍ୟୟନ ଓ ଗବେଷଣାର ଫଳଶ୍ରୁତି । ପୁସ୍ତକଟି ଛାତ୍ରଛାତ୍ରୀ, ଗବେଷକ ଗବେଷିକା ଏବଂ ସୁଧୀ ପାଠକ ମହଲରେ ଆଦୃତି ଲାଭ କରିବ ବୋଲି ଆଶା କରାଯାଏ ।

- ପ୍ରକାଶକ


ISBN 978-93-85316-01-2

ଭଞ୍ଜୀୟ ଅଳଙ୍କାର ମାନସ

ଡକ୍ଟର ପ୍ରେମାନନ୍ଦ ମହାପାତ୍ର


KAVYALOKA
Nizigarh Kurukhi, Harirajpur
Jatni, Puri-752050

₹ ୧୫୦/-